# ଭାରତର ମୁନି ଋଷି

ଅଧ୍ୟାପକ ବ୍ରଜକିଶୋର ସାହୁ



# ଭାରତର ମୁନିଋଷି

ଶ୍ରୀ ବ୍ରଜକିଶୋର ସାହୁ



[illegible] ଷ୍ଟୁଡେଣ୍ଟସ୍ ଷ୍ଟୋର

# ଭାରତର ମୁନିଋଷି

ପ୍ରକାଶିକା :

**ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର**

କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର

ବାଲୁବଜାର, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୮୮

ମୁଦ୍ରଣ :

**କଲ୍ୟାଣୀ ପ୍ରିଣ୍ଟର୍ସ**

ପିଠାପୁର, କଟକ ୭୫୩୦୦୨

ମୂଲ୍ୟ :

**ସାଦା : ୨୩ ଟଙ୍କା**
**ବନ୍ଧାଇ : ୨୭ ଟଙ୍କା**

## BHARATARA MUNIRUSHI

**Sri Brajakishore Sahoo**

Publisher :

**Smt. Annapurna Mishra**

Cuttack Students' Store
Balu Bazar, Cuttack-753002

First Edition-1988

Price :

Popular : Rs. 23-00
Deluxe : Rs. 27-00

# ଦୁଇପଦ

'ଭାରତର ମୁନିଋଷି' ବହିଟି ପଢ଼ି ମୁଁ ସନ୍ତୋଷ ଲାଭ କଲି । 'କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍'ର ପ୍ରତିଷ୍ଠାତା ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ, ମୋ ନନା ୰ ଅନନ୍ତ ମିଶ୍ର ଏ ବହିଟିକୁ ପଢ଼ିଥିଲେ ଖୁସି ମଧ୍ୟ ହୋଇଥାନ୍ତେ । ତାଙ୍କର ପ୍ରିୟ ପୁସ୍ତକ ଥିଲା ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କ 'ଭାଗବତୀ କଥା', ଯାହାର ଅନୁବାଦର ବ୍ୟବସ୍ଥା କରି 'ଭାଗବତ କଥା' ନାମରେ ସେ ପ୍ରକାଶ ଆରମ୍ଭ କରିଥିଲେ । ଜାଣିତରେ ହେଉ ବା ଅଜାଣିତରେ ହେଉ 'ଭାଗବତ କଥା'ର ପାଠକ ପାଠିକାମାନଙ୍କ ପାଇଁ 'ଭାରତର ମୁନିଋଷି' ପୁସ୍ତକଟି ବ୍ରଜ ବାବୁଙ୍କ ଦ୍ୱାରା ଲେଖା ହୋଇଯାଇଛି ବୋଲି ମନେହୁଏ । ଶ୍ରୀ ବ୍ରଜ କିଶୋର ସାହୁ ଆଗରୁ 'ଭକ୍ତ ଓ ଜଗନ୍ନାଥ', 'ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ' 'ମହାମାନବ ବୁଦ୍ଧ' ପ୍ରଭୃତି ଜୀବନୀ ଲେଖି ସୁଧୀ ପାଠକମାନଙ୍କ ଦୃଷ୍ଟି ଆକର୍ଷଣ କରି ପାରିଥିଲେ କିନ୍ତୁ 'ଭାରତର ମୁନିଋଷି' ଏ ସମସ୍ତ ପୁସ୍ତକଠାରୁ ବ୍ୟତିକ୍ରମ—ଉଲ୍ଲେଖନୀୟ ଭାବରେ ଗୁଣାତ୍ମକ ଦୃଷ୍ଟିରୁ ଭିନ୍ନ !

ଭାରତୀୟ ସଂସ୍କୃତି ଓ ସଭ୍ୟତାର ଇତିହାସ ମୁନିଋଷିଙ୍କ ଜୀବନର ଇତିହାସ । ସତ୍ୟ, ତ୍ରେତା ଓ ଦ୍ୱାପର ଏ ତିନିଯୁଗର ମୁନିଋଷିଙ୍କ ଜୀବନ ଧର୍ମ ପ୍ରତିପାଳନ ପାଇଁ ଉତ୍ସର୍ଗୀକୃତ ହୋଇଥିଲା । ସେଥିପାଇଁ ଧର୍ମ ପ୍ରତିପାଳନରେ ପ୍ରତିବନ୍ଧକ ସୃଷ୍ଟି କରୁଥିବା ରାକ୍ଷସମାନଙ୍କୁ ନଷ୍ଟ କରିବାପାଇଁ ଅବତାରମାନେ ସଂସାରକୁ ଆସିଥିଲେ । ମୁନିଋଷିଙ୍କ ଆହ୍ୱାନ ଓ ଈଶ୍ୱରଙ୍କ ଅବତରଣ ମଧ୍ୟରେ ଯେତିକି ସମୟର ବ୍ୟବଧାନ ରହି ଯାଉଥିଲା, ସେହି ସମୟ ମଧ୍ୟରେ ଶହ ଶହ ମୁନିଋଷି ବଳି ପଡ଼ି ଯାଉଥିଲେ, ପବିତ୍ର ଯଜ୍ଞକୁଣ୍ଡ ଭାଙ୍ଗି ଯାଉଥିଲା, ସେମାନଙ୍କ ଆଶ୍ରମ ଉଜୁଡ଼ି ଯାଉଥିଲା । କିନ୍ତୁ ସବୁ ସତ୍ତ୍ୱେ ଧର୍ମର ନିଗୂଢ଼ ତତ୍ତ୍ୱର ବିଚାର, ଅନୁଶୀଳନ, ଅନୁସନ୍ଧାନ ଓ ପାଳନ କରିବାକୁ ସେମାନେ ପଶ୍ଚାତ୍‌ପଦ ହେଉ ନଥିଲେ ।

ଶ୍ରୀଯୁକ୍ତ ସାହୁ ତାଙ୍କରି ପୁସ୍ତକଟିରେ ସତ୍ୟ ଯୁଗର ସନକ ସନନ୍ଦନଙ୍କଠାରୁ ଆରମ୍ଭ କରି ମହର୍ଷି ଚ୍ୟବନଙ୍କ ଜୀବନୀ ଯାଏଁ ଲେଖିଛନ୍ତି । କଳିଯୁଗର ସାଧୁସନ୍ଥଙ୍କ କଥା ଏ ବହିର ବିଚାର ଅନ୍ତର୍ଭୁକ୍ତ ହୋଇନାହିଁ । ସେମାନଙ୍କ ମଧ୍ୟରୁ ପ୍ରସିଦ୍ଧ ଦୁଇଜଣ 'ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ' ଓ 'ମହାମାନବ ବୁଦ୍ଧଙ୍କ' ଜୀବନୀ ସେ ସ୍ୱତନ୍ତ୍ର ଭାବେ ଲେଖିଛନ୍ତି ଓ ଅନେକ ଭକ୍ତଙ୍କ କଥା ତାଙ୍କର 'ଭକ୍ତ ଓ ଜଗନ୍ନାଥ' ପୁସ୍ତକମାଳାରେ ସନ୍ନିବିଷ୍ଟ ହୋଇଛି ।

'ଭାରତର ମୁନିଋଷି'ରେ ବର୍ଣ୍ଣିତ ଋଷିଙ୍କ ମଧ୍ୟରୁ କେତେକ ଜ୍ଞାନୀ ଦାର୍ଶନିକ ରୂପେ, କେତେକ କର୍ମଯୋଗୀ ଭାବେ, କେତେକ ଭକ୍ତଭାବେ ଓ ଅନ୍ୟ କେତେକ

ସାଧକ ଓ ଅବତାରମାନଙ୍କ ସହଯୋଗୀଭାବେ କାର୍ଯ୍ୟ କରି ଯାଇଛନ୍ତି । କେତେକଙ୍କ ତତ୍ତ୍ୱ ଓ ଆତ୍ମାପରମାତ୍ମାର ସମ୍ପର୍କକୁ ଓ ସାଧନା ମାର୍ଗକୁ ନୂତନ ପରିଭାଷା ଦେବାକୁ ସକ୍ଷମ ହୋଇଛି, ଯେପରିକି ନାରଦଙ୍କ 'ଭକ୍ତିସୂତ୍ର', ବଶିଷ୍ଠଙ୍କ 'ଯୋଗବାଶିଷ୍ଠ' ଅଷ୍ଟାବକ୍ରଙ୍କ 'ସଂହିତା', ବାଲ୍ମୀକିଙ୍କ 'ରାମାୟଣ', ବ୍ୟାସଙ୍କ 'ମହାଭାରତ ଓ ଭାଗବତ' ।

'ଭାରତର ମୁନିଋଷି' ବହିଟି ଆଧୁନିକ ସମୟର ପାଠକପାଠିକାଙ୍କ ପାଇଁ ଧର୍ମସମ୍ମତ ଜୀବନଯାପନ କରିବାପାଇଁ ପ୍ରେରଣା ଦେବ ବୋଲି ଆଶା କରୁଛି । ଅରେ ଦେଶରେ, ସମାଜରେ, ପରିବାରରେ, ଧର୍ମର ପ୍ରତିଷ୍ଠା ହୋଇଗଲେ, ଆଉ ଅଧିକା କ'ଣ ଦରକାର !! କାରଣ ସକଳ ଅଭ୍ୟୁଦୟ ମୂଳରେ ଧର୍ମହିଁ ନିହିତ, ସେଥିପାଇଁ କେବେହେଲେ ଧର୍ମକୁ ନଷ୍ଟ କରିବାକୁ ଇଚ୍ଛା କରିବ ନାହିଁ ବୋଲି ମହାଭାରତରେ ବାରମ୍ବାର କୁହା ଯାଇଛି—

ଧର୍ମ ଏବ ହତୋହନ୍ତି
ଧର୍ମ ରକ୍ଷତ ରକ୍ଷିତଃ ।
ତସ୍ମାତ୍ ନ ହନ୍ତବ୍ୟୋ ଧର୍ମ
ମାନୋ ଧର୍ମେ ହତୋଃବଧିତ ॥

କୃଷ୍ଣ ପ୍ରସାଦ ମିଶ୍ର
ପ୍ରଫେସର୍, ଦର୍ଶନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର

ଦଶହରା
୧୯୯୮

# ସୂଚୀ

| ବିଷୟ | ପୃଷ୍ଠା |
|---|---|


●

# ସନକ—ସନନ୍ଦନ—ସନାତନ—ସନତ୍ କୁମାର

ସୃଷ୍ଟିର ପ୍ରାରମ୍ଭରେ ପିତାମହ ବ୍ରହ୍ମା ଯେତେବେଳେ ସୃଷ୍ଟି ରଚନା କରିବାକୁ ଇଚ୍ଛା ପ୍ରକାଶ କଲେ, ସେତେବେଳେ ତାଙ୍କ ସଂକଳ୍ପରୁ ଚାରିଜଣ କୁମାର ଉତ୍ପନ୍ନ ହୋଇଥିଲେ । ସେମାନେ ହେଉଛନ୍ତି ସନକ, ସନନ୍ଦନ, ସନାତନ ଓ ସନତ୍ କୁମାର । ସ୍ୱୟଂ ବ୍ରହ୍ମା ଏକ ସହସ୍ର ଦିବ୍ୟ ବର୍ଷ ତପସ୍ୟା କରିବା ପରେ ହୃଦୟରେ ଭଗବାନ ଶେଷଶାୟୀଙ୍କର ଦର୍ଶନ ପାଇଥିଲେ । ବ୍ରହ୍ମାଙ୍କ ଉପରେ ସନ୍ତୁଷ୍ଟ ହୋଇ ଭଗବାନ ଶେଷଶାୟୀ ତାଙ୍କୁ ଭାଗବତର ମୂଳଜ୍ଞାନ ପ୍ରଦାନ କରିଥିଲେ । ଜ୍ଞାନ ଲାଭ କରି ବ୍ରହ୍ମା ପ୍ରଥମେ ମାନସିକ ସୃଷ୍ଟି କାର୍ଯ୍ୟରେ ମନୋନିବେଶ କରିଥିଲେ । ସେତେବେଳେ ତାଙ୍କର ଚିତ୍ତ ଅତ୍ୟନ୍ତ ପବିତ୍ର ଓ ଭଗବତ୍ ତତ୍ତ୍ୱରେ ପରିପୂର୍ଣ୍ଣ ଥିଲା । ସେ ଶୁଦ୍ଧ ସତ୍ତ୍ୱଗୁଣରେ ମଣ୍ଡିତ ହୋଇଥିଲେ । ଫଳତଃ ତାଙ୍କଠାରୁ ଯେଉଁ ଚାରି କୁମାର ପ୍ରକଟ ହେଲେ ସେମାନେ ମଧ୍ୟ ଶୁଦ୍ଧ ସତ୍ତ୍ୱ ଗୁଣରେ ମଣ୍ଡିତ ହୋଇ ଦିବ୍ୟ ଭାବାପନ୍ନ ହୋଇଥିଲେ । ସେମାନଙ୍କ ମଧ୍ୟରେ ରଜ ଓ ତମୋଗୁଣ ଲେଶମାତ୍ର ନ ଥିଲା । ପ୍ରମାଦ, ନିଦ୍ରା, ଆଳସ୍ୟ ଆଦି ପ୍ରବୃତ୍ତିରୁ ସେମାନେ ମୁକ୍ତ ହୋଇଥିଲେ । ସୃଷ୍ଟି କାର୍ଯ୍ୟରେ ସେମାନଙ୍କର କୌଣସି ସ୍ପୃହା ମଧ୍ୟ ନ ଥିଲା । ତେଣୁ ପିତାମହ ବ୍ରହ୍ମା ସେମାନଙ୍କୁ ଯେତେବେଳେ ସୃଷ୍ଟି କରିବାକୁ କହିଲେ, ସେତେବେଳେ ସେମାନେ ସୃଷ୍ଟିକର୍ତ୍ତାଙ୍କର ଆଜ୍ଞାକୁ ସ୍ୱୀକାର କରି ନ ଥିଲେ । ପ୍ରକୃତରେ ବିଶ୍ୱରେ ଜ୍ଞାନ-ପରମ୍ପରାର ଧାରା ପ୍ରଚଳନ କରିବା ପାଇଁ ଭଗବାନ ବିଷ୍ଣୁ ଏହି ଚାରି କୁମାର ରୂପରେ ଅବତୀର୍ଣ୍ଣ ହୋଇଥିଲେ । ଭଗବାନଙ୍କର ନାମ ଓ ଗୁଣ କୀର୍ତ୍ତନ କରିବା ଏବଂ ଭଗବାନଙ୍କର ଲୀଳା ବର୍ଣ୍ଣନା ଓ ଶ୍ରବଣ କରିବା ସେମାନଙ୍କର ଜନ୍ମଜାତ ରୁଚି ଥିଲା । ଭଗବାନଙ୍କୁ ଛାଡ଼ି କ୍ଷଣକ ପାଇଁ ମଧ୍ୟ ସେମାନଙ୍କର ଚିତ୍ତ ସଂସାରର କୌଣସି ବିଷୟ ପ୍ରତି ଆସକ୍ତ ହେଉ ନ ଥିଲା । ସେମାନଙ୍କ ମୁଖରୁ ଅନବରତ "ହରିଃ ଶରଣାମ୍" ଏହି ମଙ୍ଗଳମୟ ମନ୍ତ୍ର ଉଚ୍ଚାରିତ ହେଉଥିଲା । ଅବିରାମ ଭାବରେ ଭଗବାନଙ୍କର ନାମ ଜପ କରିବା ଦ୍ୱାରା ସେମାନଙ୍କ ହୃଦୟରେ ଭଗବାନ ନିତ୍ୟ ନିବାସ କରୁଥିଲେ । ଶୁଦ୍ଧ ସତ୍ତ୍ୱଗୁଣରେ ପରିପୂର୍ଣ୍ଣ ହୋଇଥିବାରୁ ସେମାନଙ୍କ ଉପରେ କାଳର କୌଣସି ପ୍ରଭାବ ପଡ଼ି ନ ଥିଲା । ସେମାନେ ସର୍ବଦା ପଞ୍ଚବର୍ଷୀୟ ଅବସ୍ଥାରେ ଅବସ୍ଥାନ କରି ବିଚରଣ କରୁଥିଲେ । କ୍ଷୁଧା-ତୃଷା, ଶୀତତାପ, ନିଦ୍ରା-ଆଳସ୍ୟ-ଏସବୁ ମାୟା-ବିକାର ସେମାନଙ୍କୁ ସ୍ପର୍ଶ କରିପାରୁ ନ ଥିଲା । ବିରକ୍ତ, ମୁକ୍ତ ଭଗବଦ୍ ଭକ୍ତ ଓ ତପସ୍ୱୀମାନେ ନିବାସ କରୁଥିବା ଜନଲୋକ ସେମାନଙ୍କର ନିବାସ-ଧାମ ଥିଲା । ଜନଲୋକ ହେଉଛି ନିତ୍ୟ

ମୁକ୍ତ ମାନଙ୍କର ପବିତ୍ର ନିବାସସ୍ଥଳୀ । ସେଠାରେ ସର୍ବଦା ଭଗବାନଙ୍କର ଦିବ୍ୟଗୁଣ ଓ ମଙ୍ଗଳମୟ ଚରିତ୍ର କୀର୍ତ୍ତନ ଏବଂ ସତ୍‌ସଙ୍ଗ ଅନୁଷ୍ଠିତ ହୋଇଥାଏ । ସେହି ନିତ୍ୟ ମୁକ୍ତମାନଙ୍କ ମଧ୍ୟରୁ ଜଣେ ବକ୍ତାର ଭୂମିକା ଗ୍ରହଣ କରନ୍ତି ଓ ଅନ୍ୟମାନେ ତାହା ତନ୍ମୟ ହୋଇ ଶ୍ରବଣ କରନ୍ତି । ସନକାଦି ଋଷିକୁମାରଙ୍କର ଜୀବନ ଥିଲା ସତ୍‌ସଙ୍ଗମୟ । ସେମାନେ ସତ୍‌ସଙ୍ଗ ବିନା କ୍ଷଣେମାତ୍ର ରହିପାରୁ ନଥିଲେ । ମୁଖରେ ଭଗବତ୍ ନାମ ଜପ, ହୃଦୟରେ ଭଗବତ୍ ଧ୍ୟାନ, ବୁଦ୍ଧିରେ ବ୍ୟାପକ ଭଗବତ୍ ତତ୍ତ୍ୱର ଅବସ୍ଥିତି ଏବଂ ଶ୍ରବଣରେ ଭଗବଦ୍ ଗୁଣାନୁବାଦ, ଏହାହିଁ ଥିଲା ସେମାନଙ୍କର ପବିତ୍ର ଦୈନନ୍ଦିନୀ ।

ସବୁ ଲୋକକୁ ସେମାନେ ଅବାଧ ଗତିରେ ଗମନ କରୁଥିଲେ । ପଞ୍ଚବର୍ଷୀୟ ହେତୁ ସେମାନେ ଦିଗମ୍ବର ଥିଲେ । କିନ୍ତୁ ଅଧିକ ସମୟ ସେମାନେ ପାତାଳପୁରରେ ଭଗବାନ ଶେଷଙ୍କ ସମୀପରେ ଏବଂ କୈଳାସ ପର୍ବତରେ ଭଗବାନ ଶିବଙ୍କ ସମୀପରେ ଅବସ୍ଥାନ କରୁଥିଲେ । ଭଗବାନ ଶେଷ ଓ ଭଗବାନ ଶିବଙ୍କ ମୁଖରୁ ଭଗବାନ ବିଷ୍ଣୁଙ୍କ ଗୁଣ ଓ ଚରିତ ଯେତେ ଶୁଣିଲେ ମଧ୍ୟ ସେମାନଙ୍କର କେବେ ତୃପ୍ତି ଆସୁ ନ ଥିଲା । ତେଣୁ ଜନଲୋକରେ ସେମାନେ ଶ୍ରୋତାର ଭୂମିକା ଗ୍ରହଣ କରି ନିତ୍ୟମୁକ୍ତମାନଙ୍କ ମୁଖରୁ ସର୍ବଦା ହରିଙ୍କର ଗୁଣ ଓ ଚରିତ ବିଷୟ ଶ୍ରବଣ କରୁଥିଲେ । ବେଳେବେଳେ ସେମାନେ ପରମ ଅଧିକାରୀ ଭଗବତ୍ ଭକ୍ତମାନଙ୍କୁ କୃପା କରିବାପାଇଁ ପୃଥିବୀ ଉପରକୁ ଅବତରଣ କରୁଥିଲେ । ମହାରାଜା ପୃଥୁ ସେମାନଙ୍କଠାରୁ ତତ୍ତ୍ୱଜ୍ଞାନର ଉପଦେଶ ପ୍ରାପ୍ତ ହୋଇଥିଲେ । ଦେବର୍ଷି ନାରଦ ମଧ୍ୟ ସେମାନଙ୍କଠାରୁ ଶ୍ରୀମଦ୍‌ଭାଗବତ ଶ୍ରବଣ କରିଥିଲେ । ସେହିପରି ଆହୁରି ଅନେକ ଭାଗ୍ୟବାନ ବ୍ୟକ୍ତି କୁମାରମାନଙ୍କୁ ଦର୍ଶନ କରି ତଥା ତାଙ୍କ ମୁଖରୁ ଉପଦେଶାମୃତ ଶ୍ରବଣ କରି କୃତାର୍ଥ ହୋଇଥିଲେ । ଭଗବାନ ବିଷ୍ଣୁଙ୍କର ଦ୍ୱାର ରକ୍ଷକ ଜୟ ବିଜୟ କୁମାରମାନଙ୍କୁ ଅପମାନିତ କରିବାରୁ ବୈକୁଣ୍ଠରୁ ବିଚ୍ୟୁତ ହୋଇ ତିନିଜନ୍ମ ପର୍ଯ୍ୟନ୍ତ ଆସୁରୀ ଯୋନି ପ୍ରାପ୍ତ ହୋଇଥିଲେ ।

ସନକାଦି ଋଷି କୁମାର ଭକ୍ତିମାର୍ଗର ମୁଖ୍ୟାଚାର୍ଯ୍ୟ ଥିଲେ । ଜ୍ଞାନ, ବୈରାଗ୍ୟ, ନାମ-ଜପ, ଭଗବତ୍ ଚରିତ ଶ୍ରବଣ ଓ ସତ୍‌ସଙ୍ଗ ସେମାନଙ୍କର ମୁଖ୍ୟ ଆଦର୍ଶ ଥିଲା । ବାସ୍ତବରେ ସେମାନେ ଭଗବାନଙ୍କର ମହନୀୟ ଭକ୍ତ ଥିଲେ ।

---

# ଦେବର୍ଷି ନାରଦ

ନାରଦ ଥିଲେ ବ୍ରହ୍ମାଙ୍କର ମାନସପୁତ୍ର ଓ ମନ୍ତ୍ରଦ୍ରଷ୍ଟା ଋଷି । ଦେବଲୋକର ହୃଦକାଶ୍ମ ଋଷି ହୋଇଥିବାରୁ ତାଙ୍କୁ ଦେବର୍ଷି କୁହାଯାଏ । ଶ୍ରୀମଦ୍‌ଭାଗବତରେ ତାଙ୍କୁ ଭଗବାନଙ୍କର ତୃତୀୟ ଅବତାର ଭାବରେ ଗ୍ରହଣ କରାଯାଇଛି ।

"ନାର" ଶବ୍ଦର ଅର୍ଥ ଜଳ । ସର୍ବଦା ତର୍ପଣ ପାଇଁ ଭଗବାନଙ୍କୁ ଜଳଦାନ କରୁଥିବାରୁ ତାଙ୍କର ନାମ ନାରଦ ହୋଇଥିବା କେହି କେହି କହନ୍ତି । ସେ ଥିଲେ ଭଗବାନଙ୍କର ଜଣେ ପରମଭକ୍ତ । ନିଜର ସ୍ଥିତି ବିଷୟରେ ସେ ନିଜେ କହିଛନ୍ତି—"ପ୍ରଗାୟତଃ ସ୍ୱବୀର୍ଯ୍ୟାଣି ତୀର୍ଥପାଦଃ ପ୍ରିୟଶ୍ରବାଃ ।" ଆହୂତ ଇବ ମେ ଶୀଘ୍ରଂ ଦର୍ଶନଂ ଯାତି ଚେତସି ।"

(ଶ୍ରୀମଦ୍‌ଭାଗବତ ୧ । ୬ । ୩୪)

"ଯେତେବେଳେ ମୁଁ ସେହି ପରମପାବନ ଚରଣ ଉଦାରଶ୍ରବା ପ୍ରଭୁଙ୍କର ଗୁଣ କୀର୍ତ୍ତନ କରିବାକୁ ଆରମ୍ଭ କରେ, ସେତେବେଳେ ପ୍ରଭୁ ଅବିଳମ୍ବରେ ଆସି ମୋର ଚିତ୍ତସ୍ଥଳରେ ପ୍ରକଟ ହୁଅନ୍ତି ।" ନାରଦ ଥିଲେ ନିତ୍ୟ ପରିବ୍ରାଜକ । ବୀଣାର ମନୋହର ଝଙ୍କାର ସହିତ ଭଗବାନଙ୍କର ଗୁଣଗାନ କରି ତ୍ରିଭୁବନ ଭ୍ରମଣ କରିବା ତାଙ୍କର ପ୍ରଧାନ କର୍ମ ଥିଲା । ସେ ଥିଲେ କୀର୍ତ୍ତନର ପରମାଚାର୍ଯ୍ୟ, ଭାଗବତ ଧର୍ମର ପ୍ରଧାନ ଦ୍ୱାଦଶ ଆଚାର୍ଯ୍ୟ ମଧ୍ୟରେ ଅନ୍ୟତମ ଏବଂ ଭକ୍ତିସୂତ୍ରର ନିର୍ମାତା । ସମଗ୍ର ପୃଥିବୀରେ ଘର ଘର ବୁଲି ଲୋକ ଲୋକ ମଧ୍ୟରେ ଭକ୍ତିଭାବନା ସ୍ଥାପନ କରିବା ଥିଲା ତାଙ୍କର ଦିବ୍ୟ ପ୍ରତିଜ୍ଞା । ବାସ୍ତବରେ ସେ ଥିଲେ ଭକ୍ତିର ଏକ ମୂର୍ତ୍ତିମନ୍ତ ଅବତାର ।

ପୂର୍ବ କଳ୍ପରେ ନାରଦ ଏକ ଗନ୍ଧର୍ବ ରୂପରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ନାମ ଥିଲା ଉପବର୍ହଣ । ସେ ଅତ୍ୟନ୍ତ ସୁନ୍ଦର ଥିବାରୁ ବଡ଼ ଗର୍ବ କରୁଥିଲେ । ଥରେ ଭଗବାନଙ୍କର ଗୁଣ କୀର୍ତ୍ତନ କରିବାପାଇଁ ଗନ୍ଧର୍ବ ଓ କିନ୍ନରଗଣ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ନିକଟରେ ଏକତ୍ରିତ ହେଲେ । ଉପବର୍ହଣ ମଧ୍ୟ ନିଜର ସୌନ୍ଦର୍ଯ୍ୟମୟୀ ସ୍ତ୍ରୀମାନଙ୍କୁ ଧରି ସେମାନଙ୍କ ସହିତ ଗମନ କରିଥିଲେ । ଯେଉଁ ଦିବ୍ୟସ୍ଥଳୀରେ ଶୁଦ୍ଧ ଭକ୍ତିଭାବ ସହିତ ଭଗବାନଙ୍କର ମଙ୍ଗଳମୟ ଗୁଣଗାନ କରାଯାଇ ନିଜକୁ ତଥା ଅନ୍ୟମାନଙ୍କୁ ପବିତ୍ର କରାଯାଏ, ସେଠାକୁ ସ୍ତ୍ରୀମାନଙ୍କୁ ଧରି ଶୃଙ୍ଗାର-ଭାବରେ ଗମନ କରିବା ଓ କାମୀ ପୁରୁଷ ପରି ସ୍ତ୍ରୀ ସଙ୍ଗ କରିବା ଏକ ଗର୍ହିତ ଅପରାଧ ଥିଲା । ତେଣୁ ବ୍ରହ୍ମା ଉପବର୍ହଣଙ୍କର ଏପରି ପ୍ରମାଦ ଦେଖି ତାଙ୍କୁ ଶୂଦ୍ରଯୋନିରେ ଜନ୍ମଗ୍ରହଣ କରିବାକୁ ଅଭିଶାପ ଦେଲେ ।

ମହାପୁରୁଷମାନଙ୍କର କ୍ରୋଧ ମଧ୍ୟ ଜୀବର କଲ୍ୟାଣ ସାଧନ କରିଥାଏ । ବ୍ରହ୍ମା ଗନ୍ଧର୍ବ ଉପବର୍ହଣଙ୍କୁ ଯେଉଁ ଅଭିଶାପ ଦେଲେ ତାହା ତାହାଙ୍କୁ ମହନୀୟ ଗୌରବରେ ମଣ୍ଡିତ କରିଥିଲା । ବ୍ରହ୍ମାଙ୍କ ଅଭିଶାପ ଫଳରେ ସେ ସଦାଚାରୀ, ସଂଯମୀ ଓ ବେଦବିତ୍ ବ୍ରାହ୍ମଣମାନଙ୍କର ସେବା କରୁଥିବା ଜଣେ ଶୂଦ୍ରା ଦାସୀର ପୁତ୍ର ରୂପରେ ଉତ୍ପନ୍ନ ହୋଇଥିଲେ । ବ୍ରହ୍ମାଙ୍କର କୃପାହେତୁ ଅତି ବାଲ୍ୟକାଳରୁ ତାଙ୍କ ମଧ୍ୟରେ ଧୀରତା, ଗାମ୍ଭୀର୍ଯ୍ୟତା, ସରଳତା, ସମତା, ଶୀଳତା ଆଦି ସଦ୍‌ଗୁଣ ପରିସ୍ଫୁଟ ହୋଇଥିଲା । ଶୂଦ୍ରାଦାସୀର ଆଉ କେହି ନ ଥିବାରୁ ସେ ନିଜର ଏକମାତ୍ର ପୁତ୍ରକୁ ଅତ୍ୟନ୍ତ ସ୍ନେହ କରୁଥିଲା ।

ସେହି ପୁତ୍ର ଭବିଷ୍ୟତରେ ନାରଦ ନାମରେ ବିଶ୍ୱବିଖ୍ୟାତ ହୋଇ ଜଗତର ମଙ୍ଗଳ କାର୍ଯ୍ୟରେ ନିଜକୁ ଉତ୍ସର୍ଗ କରିଥିଲେ ।

ଯେତେବେଳେ ନାରଦଙ୍କୁ ପାଞ୍ଚବର୍ଷ ବୟସ, ସେହି ସମୟରେ ଏକ ଯୋଗୀଦଳ ବର୍ଷାଋତୁରେ ଚାତୁର୍ମାସ୍ୟ କରିବାପାଇଁ ଗୋଟିଏ ସ୍ଥାନରେ ଅବସ୍ଥାନ କଲେ, ନାରଦଙ୍କ ମାତା ସେହି ସାଧୁମାନଙ୍କର ସେବା କରିବାପାଇଁ ନିଯୁକ୍ତ ହୋଇଥିଲା । ମାତାଙ୍କ ସହିତ ମିଶି ନାରଦ ମଧ୍ୟ ସାଧୁଙ୍କର ସେବା ବଡ଼ ଆଗ୍ରହର ସହିତ କରିବାକୁ ଲାଗିଲେ । ସ୍ୱୟଂ ନାରଦ ବ୍ୟାସଦେବଙ୍କୁ କହିଛନ୍ତି—"ହେ ବ୍ୟାସ ! ସେହି ସମୟରେ ଯଦିବା ମୁଁ ବାଳକ ଥିଲି, ତଥାପି ମୋ ମଧ୍ୟରେ ଚଞ୍ଚଳତା ନ ଥିଲା । ମୁଁ ଜିତେନ୍ଦ୍ରିୟ ଥିଲି । ବାଲ୍ୟସୁଲଭ ଖେଳ କୌତୁକ ଛାଡ଼ି ମୁଁ ସାଧୁମାନଙ୍କର ସେବା କାର୍ଯ୍ୟରେ ମନୋନିବେଶ କରିଥିଲି । ସେହି ସାଧୁମାନେ ମଧ୍ୟ ମୋତେ ଅତ୍ୟନ୍ତ ସରଳ ଓ ସଦ୍‌ଗୁଣ ଯୁକ୍ତ ଦେଖି ମୋ ପ୍ରତି ବିଶେଷ କୃପାଦୃଷ୍ଟି ନିକ୍ଷେପ କରୁଥିଲେ । ସେମାନଙ୍କର ଅନୁମତି ନେଇ ମୁଁ ସେମାନଙ୍କ ଉଚ୍ଛିଷ୍ଟାନ୍ନ ଦିନରେ ଥରେ ମାତ୍ର ଭୋଜନ କରୁଥିଲି । ସେହି ପବିତ୍ର ଉଚ୍ଛିଷ୍ଟାନ୍ନ ଭୋଜନ କରି ମୋ ହୃଦୟର ସମସ୍ତ କଳୁଷ ଦୂର ହୋଇଗଲା, ମୋ ଚିତ୍ତ ଶୁଦ୍ଧ ହୋଇଗଲା । ସେହି ସାଧୁମାନେ ଭଗବାନଙ୍କ ବିଷୟରେ ଯେଉଁ ସବୁ ଚର୍ଚ୍ଚା କରୁଥିଲେ ତାହା ମୁଁ ଅତ୍ୟନ୍ତ ଆଗ୍ରହର ସହିତ ଶ୍ରବଣ କରୁଥିଲି ।"

ଚାତୁର୍ମାସ୍ୟ ସମାପ୍ତ କରି ସେହି ସାଧୁମାନେ ପ୍ରସ୍ଥାନୋଦ୍ୟତ ହେବା ସମୟରେ ବାଳକ ନାରଦଙ୍କର ଦୀନତା ଓ ନମ୍ରତା ଦେଖି ବିଶେଷ ଭାବରେ କୃପାବିଷ୍ଟ ହୋଇ ପଡ଼ିଲେ । ସେମାନେ ନାରଦଙ୍କୁ ଭଗବାନଙ୍କ ସ୍ୱରୂପ ଧ୍ୟାନ ଓ ନାମ ଜପ କରିବାକୁ ଉପଦେଶ ଦେଲେ । ସାଧୁମାନେ ଚାଲିଯିବାପରେ ନାରଦ-ମାତା ସେହି ଶୂଦ୍ରାଦାସୀ ନିଜର ମୁନିବ ବ୍ରାହ୍ମଣ ଦେବତାଙ୍କର ଗାଈ ଦୁହିଁବା ସମୟରେ ହଠାତ୍ ସର୍ପାଘାତରେ ମୃତ୍ୟୁ ବରଣ କଲା । ନାରଦ ମାତାଙ୍କର ମୃତ୍ୟୁରେ ବ୍ୟଥିତ ନ ହୋଇ ବରଂ ତାହାକୁ ଭଗବାନଙ୍କର କରୁଣା ବୋଲି ମନେ

କରିବାକୁ ଲାଗିଲେ । ମାତାଙ୍କର ସ୍ନେହ ହେତୁ ସେ କେଉଁଆଡ଼େ ଯାଇ ପାରୁ ନ ଥିଲେ । ମାତାଙ୍କର ବାତ୍ସଲ୍ୟ ତାଙ୍କ ପାଇଁ ଏକ ବନ୍ଧନ ଥିଲା । ଭଗବାନ ବିଷ୍ଣୁ କୃପାବିଷ୍ଟ ହୋଇ ସେହି ମାୟାବନ୍ଧନ ଛିନ୍ନ କରିଦେଲେ । ବର୍ତ୍ତମାନ ନାରଦ ପାଞ୍ଚବର୍ଷର ବାଳକ ହେଲେ ମଧ୍ୟ ନିଜର ଜୀବନ ପଥରେ ଏକମାତ୍ର ପଥିକ । ଭଗବାନଙ୍କ ଉପରେ ଭରସା ରଖି ସେ ଜଙ୍ଗଲ ପଥ ଦେଇ ଉତ୍ତରଦିଗକୁ ଯାତ୍ରା ଆରମ୍ଭ କଲେ । ଅନେକ ପଥ ଅତିକ୍ରମ କରିବା ପରେ ସେ ଅତ୍ୟନ୍ତ କ୍ଳାନ୍ତ ହୋଇ ପଡ଼ିଲେ ଏବଂ କ୍ଳାନ୍ତି ମେଣ୍ଟାଇବା ପାଇଁ ଜଙ୍ଗଲ ମଧ୍ୟରେ ଥିବା ଗୋଟିଏ ପୁଷ୍କରିଣୀରୁ ଜଳପାନ କରି ପୁଷ୍କରିଣୀ ତୀରବର୍ତ୍ତୀ ଗୋଟିଏ ପିପ୍‌ପଳ ବୃକ୍ଷ ମୂଳରେ ଉପବେଶନ କଲେ । ସେଠାରେ ବସି ସାଧୁମାନଙ୍କ ଉପଦେଶ ଅନୁସାରେ ସେ ଭଗବାନଙ୍କୁ ଧ୍ୟାନ କରିବାକୁ ଲାଗିଲେ । ଧ୍ୟାନ କରୁଥିବା ସମୟରେ ହଠାତ୍ ସେ ହୃଦୟରେ ଭଗବାନଙ୍କର ଦିବ୍ୟଜ୍ୟୋତି ଦର୍ଶନ ପାଇଲେ; କିନ୍ତୁ ପରକ୍ଷଣରେ ସେହି ଜ୍ୟୋତି ବିଦ୍ୟୁତ୍‌ପରି ଉଦ୍‌ଭାସିତ ହୋଇ ଅଦୃଶ୍ୟ ହୋଇଗଲା । ସେହି ଦିବ୍ୟଜ୍ୟୋତି ପୁନଃ ପୁନଃ ଦର୍ଶନ କରିବାକୁ ନାରଦ ଅତ୍ୟନ୍ତ ବ୍ୟାକୁଳ ହୋଇପଡ଼ିଲେ ଏବଂ ଗମ୍ଭୀର ଭାବରେ ଧ୍ୟାନ କରିବାକୁ ଲାଗିଲେ । ଏହି ସମୟରେ ଆକାଶବାଣୀ ହେଲା—"ହେ ନାରଦ ! ତୁମେ ଏହି ଜନ୍ମରେ ମୋର ଦର୍ଶନ ପାଇ ପାରିବ ନାହିଁ । ଚିତ୍ତ ସମ୍ପୂର୍ଣ୍ଣଭାବେ ନିର୍ମଳ ନ ହେଲେ ମୋର ଦର୍ଶନ ପାଇବା ଅସମ୍ଭବ । ମୁଁ କୃପାକରି ତୁମକୁ ଯେଉଁ ଜ୍ୟୋତି ଦେଖାଇଲି ତାହାଦ୍ୱାରା ତୁମର ଚିତ୍ତ ନିର୍ମଳ ହେବ ଏବଂ ତୁମେ ଅଧିକ ଭକ୍ତି କରିବାକୁ ସମର୍ଥ ହେବ ।"

ଭଗବାନଙ୍କର କରୁଣାପୂର୍ଣ୍ଣ ଗୁରୁଗମ୍ଭୀର ବାକ୍ୟ ଶ୍ରବଣ କରି ନାରଦ ଭୂମିରେ ମସ୍ତକ ସ୍ଥାପନ ପୂର୍ବକ ପ୍ରଭୁଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ ଏବଂ ପ୍ରଭୁଙ୍କର ଗୁଣଗାନ କରି ଅନ୍ୟତ୍ର ଗମନ କଲେ । ତାଙ୍କର ସାରାଜୀବନ ପ୍ରଭୁଙ୍କର ଗୁଣକୀର୍ତ୍ତନରେ ବ୍ୟୟିତ ହେଲା । ଶେଷରେ ନାମ ଜପ କରୁଥିବା ଅବସ୍ଥାରେ ସେ ନଶ୍ୱରଶରୀର ପରିତ୍ୟାଗ କଲେ ।

ସେହି କଳ୍ପରେ ତାଙ୍କର ଆଉ ପୁନର୍ଜନ୍ମ ହୋଇ ନ ଥିଲା । କଳ୍ପାନ୍ତରେ ସେ ବ୍ରହ୍ମାଙ୍କ ମଧ୍ୟରେ ପ୍ରବିଷ୍ଟ ହେଲେ ଏବଂ ସୃଷ୍ଟିର ପ୍ରାରମ୍ଭରେ ବ୍ରହ୍ମାଙ୍କ ମନରୁ ଜାତ ହୋଇ ବ୍ରହ୍ମାଙ୍କର ମାନସପୁତ୍ର ହେବାର ଗୌରବ ଅର୍ଜନ କଲେ । ସେ ଥିଲେ ଅତ୍ୟନ୍ତ ମେଧାବୀ, ପ୍ରତ୍ୟୁତ୍ପନ୍ନମତି, ବାଗ୍ମୀ, ସ୍ତୁତିଗାୟକ ଓ ସଙ୍ଗୀତଜ୍ଞ । ମହାଭାରତ ଅନୁସାରେ ସେ ବ୍ରହ୍ମାଙ୍କ ନିକଟରୁ ସଙ୍ଗୀତ ବିଦ୍ୟା ଶିକ୍ଷା କରିଥିଲେ । ସାମ, ଦାନ, ଦଣ୍ଡ, ଭେଦ ଆଦି ରାଜନୀତିର ସବୁ କଥା ତାଙ୍କୁ ଭଲ ଭାବରେ ଜଣାଥିଲା । ସେ ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ଧନୁର୍ବେଦ, ଇତିହାସ, ପୁରାଣ, ବ୍ୟାକରଣ, ଜ୍ୟୋତିଷଶାସ୍ତ୍ର, ଗଣିତଶାସ୍ତ୍ର, ବ୍ରହ୍ମ ବିଦ୍ୟା, ଭୂ ବିଦ୍ୟା, ନକ୍ଷତ୍ର ବିଦ୍ୟା, ସର୍ପ ଓ ଦେବଜ୍ଞାନ ବିଦ୍ୟା ଆଦି ସମସ୍ତ ବିଦ୍ୟାରେ ଅତ୍ୟନ୍ତ ପାରଙ୍ଗମ ଥିଲେ । ତାଙ୍କ ରଚିତ 'ନାରଦ ପଞ୍ଚରାତ୍ର' ଓ 'ନାରଦ ଭକ୍ତିସୂତ୍ର' ଭକ୍ତିତତ୍ତ୍ୱ ପ୍ରତିପାଦକ ଅମୂଲ୍ୟ ଗ୍ରନ୍ଥ ଭାବରେ ଏବେ ମଧ୍ୟ ସୁପ୍ରସିଦ୍ଧ ।

ନାରଦ ସନ୍ନ୍ୟାସୀ ଥିଲେ ମଧ୍ୟ ସାଂସାରିକ, ପାରିବାରିକ, ରାଜନୀତିକ, ଧାର୍ମିକ, ସବୁ ବିଷୟରେ ତାଙ୍କର ତୀକ୍ଷ୍ଣ ବୁଦ୍ଧି ଓ ଗଭୀର ଜ୍ଞାନ ଥିଲା । ନିଜର ଜ୍ଞାନକୁ ସେ ପ୍ରଗଲ୍‌ଭ ଭାବରେ କହି ପାରୁଥିଲେ । ସମ୍ବାଦ ଓ ପରାମର୍ଶ ଦାନ, ଯୁଦ୍ଧ ବିଗ୍ରହ ଓ ବିବାହାଦି ସଙ୍ଗଠନରେ ନାନାପ୍ରକାର ବାର୍ତ୍ତାଦାନ, ଦୀକ୍ଷାଦାନ ଏବଂ ନୀତିଶିକ୍ଷା ଦାନରେ ତାଙ୍କର କୃତିତ୍ୱ ଥିଲା ଅସାଧାରଣ । ସେଥିପାଇଁ ଭଗବାନ ବିଷ୍ଣୁ ଜଗତର ମଙ୍ଗଳପାଇଁ ଯାହା କିଛି କରିବାକୁ ଚାହାନ୍ତି, ତାହା କେବଳ ନାରଦଙ୍କ ଦ୍ୱାରାହିଁ ସମ୍ପନ୍ନ କରିଥାନ୍ତି ।

ପରମଭକ୍ତ ପ୍ରହ୍ଲାଦ ଯେତେବେଳେ ମାତା ଗର୍ଭରେ ଥିଲେ, ସେତେବେଳେ ସେହି ଗର୍ଭସ୍ଥ ବାଳକକୁ ଲକ୍ଷ୍ୟକରି ନାରଦ ଦୈତ୍ୟ ସାମ୍ରାଜ୍ଞୀଙ୍କୁ ଅନେକ ପ୍ରକାର ଉପଦେଶ ଦେଇଥିଲେ । ମାତା ଗର୍ଭରୁ ଜନ୍ମଲାଭ କରିବା ପରେ ମଧ୍ୟ ଦେବର୍ଷିଙ୍କର ଅପାର କରୁଣାରୁ ପ୍ରହ୍ଲାଦ ସେହି ସବୁ ଉପଦେଶ ବିସ୍ମୃତ ହୋଇ ନଥିଲେ । ଦେବର୍ଷିଙ୍କର ସେହି ଉପଦେଶ ହିଁ ପ୍ରହ୍ଲାଦଙ୍କୁ ପରମ ଭଗବଦ୍‌ଭକ୍ତ କରିପାରିଥିଲା ।

ବାଳଭକ୍ତ ଧ୍ରୁବ ବିମାତାଙ୍କର କଟୁବାକ୍ୟ ସହି ନ ପାରି ତପସ୍ୟା କରିବା ପାଇଁ ବନକୁ ଯାଇଥିବା ସମୟରେ ପଥ ମଧ୍ୟରେ ନାରଦଙ୍କୁ ଦର୍ଶନ କରିବାର ସୁଯୋଗ ପାଇଥିଲେ । ନାରଦ ତାଙ୍କୁ ମନ୍ତ୍ର ପ୍ରଦାନ କରି ଉପାସନାର ପଦ୍ଧତି ଶିକ୍ଷା ଦେଇଥିଲେ । ସେହି ମନ୍ତ୍ର ଅନୁସାରେ ଉପାସନା କରି ଅଭିମାନୀ ଧ୍ରୁବ କରୁଣାମୟ ଭଗବାନଙ୍କୁ ଦର୍ଶନ କରିବାର ପରମ ସୁଯୋଗ ଲାଭ କରିଥିଲେ ।

ପ୍ରଜାପତି ଦକ୍ଷଙ୍କର ହର୍ଯଶ୍ୱ ଆଦି ଦଶ ସହସ୍ର ପୁତ୍ର ପିତାଙ୍କର ଆଜ୍ଞାନୁସାରେ ସୃଷ୍ଟି ବିସ୍ତାର ପାଇଁ ଘୋର ତପସ୍ୟାରେ ମଗ୍ନ ରହିଥିଲେ । ନାରଦ ଦେଖିଲେ ଯେ ସେହି ଶୁଦ୍ଧ ହୃଦୟ ବାଳକ ଗଣ ଭଗବଦ୍ ପ୍ରାପ୍ତି ପାଇଁ ପ୍ରଧାନ ଅଧିକାରୀ । ତେଣୁ ଉପଦେଶ ଦେଇ ସେମାନଙ୍କୁ ସେ ଭକ୍ତି ତତ୍ତ୍ୱରେ ଅନୁପ୍ରାଣିତ କରିଦେଲେ । ଫଳରେ ସେହି ଦଶ ସହସ୍ର ବାଳକ ସୃଷ୍ଟି କାର୍ଯ୍ୟରେ ବିତୃଷ୍ଣ ହୋଇ ଭଗବଦ୍‌ଧ୍ୟାନରେ ନିମଗ୍ନ ରହିଲେ । ଦକ୍ଷ ପ୍ରଜାପତି ଏ ସମ୍ବାଦ ପାଇ ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ସୃଷ୍ଟି ବିସ୍ତାର ପାଇଁ ପୁନଶ୍ଚ ଦଶ ସହସ୍ର ପୁତ୍ର ଉତ୍ପନ୍ନ କଲେ । ଶବଳାଶ୍ୱ ଆଦି ସେହି ଦଶ ସହସ୍ର ଦକ୍ଷପୁତ୍ର ମଧ୍ୟ ନାରଦଙ୍କର ଉପଦେଶାନୁସାରେ ସଂସାର ପ୍ରତି ବିରକ୍ତିଭାବ ପ୍ରକାଶ କରି ଭଗବଦ୍ ମାର୍ଗରେ ଗତି କରିବାକୁ ଲାଗିଲେ । ଦକ୍ଷ ପ୍ରଜାପତି ଏ ସମ୍ବାଦ ପାଇ କ୍ରୋଧାନ୍ୱିତ ହୋଇ ପଡ଼ିଲେ ଏବଂ ନାରଦଙ୍କୁ ଅଭିଶାପ ଦେଲେ— "ତୁମେ କେଉଁଠାରେ ଦୁଇ ଘଡ଼ିରୁ ଅଧିକ ସମୟ ରହି ପାରିବ ନାହିଁ ।" ନାରଦ ସହାସ୍ୟ ବଦନରେ ଏହି ଅଭିଶାପ ଗ୍ରହଣ କରିନେଲେ । କାରଣ ଏହାକୁ ସେ ପ୍ରଭୁଙ୍କର ମଙ୍ଗଳମୟ ଇଚ୍ଛା ବୋଲି ଧାରଣା କରିଥିଲେ ।

ଏକଦା ନରହତ୍ୟାକାରୀ ପଥିକମାନଙ୍କୁ ଲୁଣ୍ଠନ କରୁଥିବା ମହାପାପୀ ରତ୍ନାକର ମଧ୍ୟ ନାରଦଙ୍କର ଉପଦେଶ କ୍ରମେ ରାମମନ୍ତ୍ର ଗ୍ରହଣ କରି ମହର୍ଷି ବାଲ୍ମୀକି ହେବାର ଗୌରବ ଅର୍ଜନ କରିଥିଲେ ଏବଂ ରାମାୟଣ ପରି ମହାକାବ୍ୟ ରଚନା କରିବାକୁ ସମର୍ଥ ହୋଇଥିଲେ ।

ନାରଦ ଥିଲେ ସମସ୍ତଙ୍କର ହିତାକାଂକ୍ଷୀ, ପରମ ହିତୈଷୀ । ଭାରତୀୟ ପୁରାଣ ଗ୍ରନ୍ଥରେ ସେ ହିଁ ଏକମାତ୍ର ଚରିତ୍ର, ଯାହାଙ୍କୁ ସମସ୍ତ ଦେବତା ଓ ଅସୁର ସମାନ ଭାବରେ ଆଦର କରୁଥିଲେ । ସମସ୍ତେ ତାଙ୍କୁ ନିଜର ହିତୈଷୀ ବୋଲି ମନେ କରୁଥିଲେ । ବାସ୍ତବରେ ତାଙ୍କର ଜୀବନ ସମସ୍ତଙ୍କର ମଙ୍ଗଳ ପାଇଁ ଉଦ୍ଦିଷ୍ଟ ଥିଲା । ସେଥିପାଇଁ ଭାରତରେ ଯେତେ ପୁରାଣ ରଚିତ ହୋଇଛି, ସବୁଥିରେ ନାରଦଙ୍କ ଚରିତ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । ନାରଦଙ୍କୁ ଛାଡ଼ି କୌଣସି ପୁରାଣ ରଚିତ ହୋଇନାହିଁ କି ହୋଇ ପାରିବ ନାହିଁ ।

ନାରଦଙ୍କ ଚରିତ୍ର ଏପରି ଏକ ଚରିତ୍ର, ଯେଉଁ ଚରିତ୍ରର ପ୍ରଶଂସା କରିବାପାଇଁ ସ୍ୱୟଂ ଭଗବାନ ମଧ୍ୟ ତତ୍ପର ହୋଇ ଉଠିଛନ୍ତି । ଅତେ ଭଗବାନ ଶ୍ରୀକୃଷ୍ଣ ନାରଦଙ୍କ ଗୁଣର ପ୍ରଶଂସା କରି ରାଜା ଉଗ୍ରସେନଙ୍କୁ କହିଥିଲେ—

''ଅହଂ ହି ସର୍ବଦା ସ୍ତୌମି ନାରଦଂ ଦେବଦର୍ଶନମ୍
ମହେନ୍ଦ୍ର ଗଦତେନୈବ ସ୍ତୋତ୍ରେଣ ଶୃଣୁ ତନ୍ନୃପ ।
ଉତ୍ସଙ୍ଗାଦ୍ ବ୍ରହ୍ମଣୋ ଜାତୋ ଯସ୍ୟାହନ୍ତା ନ ବଦ୍ୟତେ
ଅଗୁପ୍ତ ଶ୍ରୁତ ଚରିତ୍ରଂ ନାରଦଂ ତଂ ନମାମ୍ୟହମ୍ ।
ଅରତିଃ କ୍ରୋଧଚାପଲ୍ୟେ ଭୟଂ ନୈତାନି ଯସ୍ୟଚ
ଅଦୀର୍ଘ ସୂତ୍ରଂ ତଂ ଧୀରଂ ନାରଦଂ ପ୍ରଣମାମ୍ୟହମ୍ ।
କାମାଦ୍ ବା ଯଦି ବା ଲୋଭାଦ୍ ବାଚଂ ଯୋ ନାନ୍ୟଥା ବଦେତ୍
ଉପାସ୍ୟଂ ସର୍ବଜନ୍ତୂନାଂ ନାରଦଂ ତଂ ନମାମ୍ୟହମ୍ ।
ଅଧ୍ୟାତ୍ମଗତି ତତ୍ତ୍ୱଜ୍ଞଂ କ୍ଷାନଶକ୍ତିଂ ଜିତେନ୍ଦ୍ରିୟମ୍
ଋଜୁଂ ଯଥାର୍ଥ ବକ୍ତାରଂ ନାରଦଂ ତଂ ନମାମ୍ୟହମ୍ ।
ତେଜସା ଯଶସା ବୁଦ୍ଧ୍ୟା ନୟେନ ବିନୟେନ ଚ
ଜନ୍ମନା ତପସା ବୃଦ୍ଧଂ ନାରଦଂ ପ୍ରଣମାମ୍ୟହମ୍ ।
ସୁଖଶୀଳଂ ସୁସଂବେଷଂ ସୁଭୋଜଂ ଭାସ୍ୱରଂ ଶୁଚିମ୍
ସୁଚକ୍ଷୁଷଂ ସୁବାକ୍ୟଂ ଚ ନାରଦଂ ପ୍ରଣମାମ୍ୟହମ୍ ।

କଲ୍ୟାଣଂ କୁରୁତେ ବାଢ଼ଂ ପାପଂ ଯସ୍ମିନ୍ନ ବିଦ୍ୟତେ
ନ ପ୍ରୀୟତେ ପରୈଶ୍ୱର୍ୟୈନ ଯୋଽସୌଷ୍ଠଂ ନୌମି ନାରଦମ୍ ।

ବେଦସ୍ମୃତି ପୁରାଣୋକ୍ତଂ ଧର୍ମଂ ଯୋ ନିତ୍ୟମାସ୍ଥିତଃ
ପ୍ରିୟାପ୍ରିୟ ବିମୁକ୍ତଂ ତଂ ନାରଦଂ ପ୍ରଣମାମ୍ୟହମ୍ ।

ଅଶନାଦିଷ୍ୱଲିପ୍ତଂ ଚ ପଣ୍ଡିତଂ ନାଲସଂ ଦ୍ୱିଜମ୍
ବହୁଶ୍ରୁତଂ ଚିତ୍ରକଥଂ ନାରଦଂ ପ୍ରଣମାମ୍ୟହମ୍ ।

ନାର୍ଥେ କ୍ରୋଧେ ଚ କାମେ ଚ ଭୂତପୂର୍ବୋଽସ୍ୟ ବିଭ୍ରମଃ
ଯେନୈତେ ନାଶିତା ଦୋଷା ନାରଦଂ ତଂ ନମାମ୍ୟହମ୍ ।

ବୀତସମ୍ମୋହ ଦୋଷୋ ଯୋ ଦୃଢ଼ ଭକ୍ତିଶ୍ଚ ଶ୍ରେୟସି
ସୁନୟଂ ସତ୍ରପଂ ତଂ ଚ ନାରଦଂ ପ୍ରଣମାମ୍ୟହମ୍ ।

ଅସକ୍ତଃ ସର୍ବସଙ୍ଗେଷୁ ଯଃ ସକ୍ତାତ୍ମେବ ଲକ୍ଷ୍ୟତେ
ଅଦୀର୍ଘ ସଂଶୟୋ ବାଗ୍ମୀ ନାରଦଂ ପ୍ରଣମାମ୍ୟହମ୍ ।

ନାସୂୟତ୍ୟାଗମଂ କଞ୍ଚିତ୍ ତପଃ କୃତ୍ୟେନ ଜୀବତି
ଅବନ୍ଧ୍ୟ କାଲୋ ବଶ୍ୟାତ୍ମା ତମହଂ ନୌମି ନାରଦମ୍ ।

କୃତଶ୍ରମଂ କୃତପ୍ରଜ୍ଞଂ ନ ଚ ତୃପ୍ତଂ ସମାଧିତଃ
ନିତ୍ୟଯତ୍ନା ପ୍ରମତ୍ତଂ ଚ ନାରଦଂ ତଂ ନମାମ୍ୟହମ୍ ।

ନ ହୃଷ୍ୟତ୍ୟର୍ଥ ଲାଭେନ ଯୋଽଲାଭେ ନ ବ୍ୟଥତ୍ୟପି
ସ୍ଥିର ବୁଦ୍ଧି ରସକ୍ତାତ୍ମା ତମହଂ ନୌମି ନାରଦମ୍ ।

ତଂ ସର୍ବଗୁଣ ସମ୍ପନ୍ନଂ ଦକ୍ଷଂ ଶୁଚିମକାତରମ୍
କାଲଜ୍ଞଂ ଚ ନୟଜ୍ଞଂ ଚ ଶରଣଂ ଯାମି ନାରଦମ୍ ।

ଇମଂ ସ୍ତବଂ ନାରଦସ୍ୟ ନିତ୍ୟଂ ରାଜନ୍ ଜପାମ୍ୟହମ୍
ତେନ ମେ ପରମାଂ ପ୍ରୀତିଂ କରୋତି ମୁନିସତ୍ତମଃ ।

ଅନ୍ୟୋଽପି ଯଃ ଶୁଚିର୍ଭୂତ୍ୱା ନିତ୍ୟମେତାଂ ସ୍ତୁତିଂ ଜପେତ୍
ଅଚିରାତ୍ତସ୍ୟ ଦେବର୍ଷିଃ ପ୍ରସାଦଂ କୁରୁତେ ପରମ୍ ।

ଏତାନ୍ ଗୁଣାନ୍ନାରଦସ୍ୟ ତ୍ୱମପ୍ୟାକର୍ଣ୍ୟ ପାର୍ଥିବ
ଜପ ନିତ୍ୟଂ ସ୍ତବଂ ପୁଣ୍ୟଂ ପ୍ରୀତସ୍ତେ ଭବିତା ମୁନିଃ ।"

( ସ୍କନ୍ଦ ପୁରାଣ, ମାହେ, କୁମାରିକା, ୫୪ । ୨୭ । ୪୭ )

'ହେ ରାଜନ ! ଦେବରାଜ ଇନ୍ଦ୍ରଙ୍କ ଦ୍ୱାରା କରାଯାଇଥିବା ସ୍ତୋତ୍ର ଦ୍ୱାରା ମୁଁ ସର୍ବଦା ଦିବ୍ୟଦୃଷ୍ଟି ସମ୍ପନ୍ନ ନାରଦଙ୍କୁ ସ୍ତୁତି କରିଥାଏ । ଆପଣ ସେହି ସ୍ତୋତ୍ର ଶ୍ରବଣ କରନ୍ତୁ ।"

"ଯିଏ ବ୍ରହ୍ମାଙ୍କଠାରୁ ପ୍ରକଟ ହୋଇଛନ୍ତି, ଯାହାଙ୍କ ମନରେ ଅହଙ୍କାର ନ ଥାଏ, ଯାହାଙ୍କର ଶାସ୍ତ୍ର-ଜ୍ଞାନ ଓ ଚରିତ କାହାକୁ ଅଛପା ନାହିଁ, ସେହି ଦେବର୍ଷି ନାରଦଙ୍କୁ ମୁଁ ନମସ୍କାର କରୁଅଛୁ । ଯାହାଙ୍କଠାରେ ଅରତି (ଉଦ୍‌ବେଗ), କ୍ରୋଧ, ଚପଳତା ଓ ଭୟ ଲେଶ ମାତ୍ର ନ ଥାଏ, ଯିଏ ଧୀର ହୋଇ ମଧ୍ୟ ଦୀର୍ଘସୂତ୍ରୀ ନୁହନ୍ତି, ସେହି ନାରଦଙ୍କୁ ମୁଁ ପ୍ରଣାମ କରୁଅଛୁ । ଯିଏ କାମନା ଅଥବା ଲୋଭବଶ ହୋଇ ମିଥ୍ୟା କଥା ମୁହଁରେ ଧରନ୍ତି ନାହିଁ ଏବଂ ସମସ୍ତ ପ୍ରାଣୀ ଯାହାଙ୍କୁ ଉପାସନା କରନ୍ତି, ସେହି ନାରଦଙ୍କୁ ମୁଁ ନମସ୍କାର କରୁଅଛୁ । ଯିଏ ଅଧ୍ୟାତ୍ମଗତି ତତ୍ତ୍ୱଜ୍ଞ, ଜ୍ଞାନଶକ୍ତି ସମ୍ପନ୍ନ ତଥା ଜିତେନ୍ଦ୍ରିୟ ଅଟନ୍ତି, ଯାହାଙ୍କ ମଧ୍ୟରେ ସରଳତା ଭରପୂର ହୋଇ ରହିଅଛି ଏବଂ ଯିଏ ଯଥାର୍ଥ ବକ୍ତା ଭାବରେ ସୁପ୍ରସିଦ୍ଧ, ସେହି ନାରଦଙ୍କୁ ମୁଁ ପ୍ରଣାମ କରୁଅଛୁ । ଯିଏ ତେଜ, ଯଶ, ବୁଦ୍ଧି, ନ୍ୟାୟ, ବିନୟ, ଜନ୍ମ ତଥା ତପସ୍ୟା ସବୁ ଦୃଷ୍ଟିରୁ ମହାନ୍, ସେହି ନାରଦଙ୍କୁ ମୁଁ ନମସ୍କାର କରୁଅଛୁ । ଯାହାଙ୍କର ସ୍ୱଭାବ ସୁଖମୟ, ବେଶ ସୁନ୍ଦର ତଥା ଭୋଜନ ଉତ୍ତମ ଅଟେ ଏବଂ ଯିଏ ପ୍ରକାଶମାନ, ପବିତ୍ର, ଶୁଭଦୃଷ୍ଟି ସମ୍ପନ୍ନ ଓ ସୁବକ୍ତା ଅଟନ୍ତି, ସେହି ନାରଦଙ୍କୁ ମୁଁ ପ୍ରଣାମ କରୁଅଛୁ । ଯିଏ ଉତ୍ସାହ ପୂର୍ବକ ସମସ୍ତଙ୍କର କଲ୍ୟାଣ ସାଧନ କରନ୍ତି, ଯାହାଙ୍କ ମଧ୍ୟରେ ଲେଶମାତ୍ର ପାପ ନ ଥାଏ ତଥା ଯିଏ ପରୋପକାର କରିବା ପାଇଁ କେବେ ପଛଘୁଞ୍ଚା ଦିଅନ୍ତି ନାହିଁ, ସେହି ନାରଦଙ୍କୁ ମୁଁ ନମସ୍କାର କରୁଅଛୁ । ଯିଏ ସର୍ବଦା ବେଦ, ସ୍ମୃତି ଓ ପୁରାଣୋକ୍ତ ଧର୍ମକୁ ଆଶ୍ରୟ କରନ୍ତି ଏବଂ ଯିଏ ପ୍ରିୟ-ଅପ୍ରିୟ ରହିତ, ମୁଁ ସେହି ନାରଦଙ୍କୁ ପ୍ରଣାମ କରୁଅଛୁ । ଯିଏ ଖାଦ୍ୟ-ପାନୀୟ ଆଦି ଭୋଗରେ ଲିପ୍ତ ହୁଅନ୍ତି ନାହିଁ, ଯିଏ ପଣ୍ଡିତ, ଆଳସ୍ୟ ରହିତ ତଥା ବହୁଶ୍ରୁତ ବ୍ରାହ୍ମଣ ଅଟନ୍ତି ଏବଂ ଯାହାଙ୍କର ମୁଖରୁ ବିଚିତ୍ର କଥା ସବୁ ଶୁଣିବାକୁ ମିଳେ, ସେହି ନାରଦଙ୍କୁ ମୁଁ ପ୍ରଣାମ କରୁଅଛୁ । ଯାହାଙ୍କର ଅର୍ଥ, କାମ କିମ୍ବା କ୍ରୋଧ ହେତୁ କେବେ ଭ୍ରମଜାତ ହୋଇ ନାହିଁ ଏବଂ ଯିଏ ଏହି ଦୋଷକୁ ସମ୍ପୂର୍ଣ୍ଣ ରୂପେ ନାଶ କରି ଅଛନ୍ତି । ସେହି ନାରଦଙ୍କୁ ମୁଁ ପ୍ରଣାମ କରୁଅଛି । ଯାହାଙ୍କର ଅନ୍ତଃକରଣରୁ ସମ୍ମୋହ ରୂପ ଦୋଷ ଦୂର ହୋଇ ଯାଇଛି, କଲ୍ୟାଣମୟ ଭଗବାନ ଓ ଭାଗବତ ଧର୍ମରେ ଯାହାଙ୍କର ଦୃଢ଼ଭକ୍ତି, ଯାହାଙ୍କର ନୀତି ଅତ୍ୟନ୍ତ ଉତ୍ତମ ଏବଂ ଯିଏ ସଙ୍କୋଚୀ ସ୍ୱଭାବ, ସେହି ନାରଦଙ୍କୁ ମୁଁ ପ୍ରଣାମ କରୁଅଛୁ । ଯିଏ ସମସ୍ତ ସଙ୍ଗରୁ ରହିତ ହୋଇ ମଧ୍ୟ ସବୁଥିରେ ଆସକ୍ତ ଥିଲା ପରି ଜଣା ପଡ଼ନ୍ତି, ଯାହାଙ୍କର ମନ ସଂଶୟ ମୁକ୍ତ ଏବଂ ଯିଏ ଉତ୍ତମ ବକ୍ତା, ସେହି ନାରଦଙ୍କୁ ମୁଁ ନମସ୍କାର କରୁଅଛୁ । ଯିଏ କୌଣସି ଶାସ୍ତ୍ରରେ ଦୋଷ ଦୃଷ୍ଟି ରଖନ୍ତି ନାହିଁ, ତପସ୍ୟା ଯାହାଙ୍କର ଜୀବନ, ଭଗବଚ୍ଚିନ୍ତନ ବିନା ଯାହାଙ୍କର ସମୟ ଅନ୍ୟଥା ବ୍ୟୟ ହୁଏ ନାହିଁ ଏବଂ ଯିଏ ନିଜର ମନକୁ ସର୍ବଦା ବଶୀଭୂତ କରି ରଖିଥାନ୍ତି, ସେହି ନାରଦଙ୍କୁ ମୁଁ ପ୍ରଣାମ କରୁଅଛୁ । ଯିଏ ତପସ୍ୟା ପାଇଁ

ଭ୍ରମ କରିଥାନ୍ତି, ଯାହାଙ୍କର ବୁଦ୍ଧି ପବିତ୍ର ଓ ବଶୀଭୂତ, ଯିଏ ସମାଧିରେ କେବେ ତୃପ୍ତ ହୁଅନ୍ତି ନାହିଁ ଏବଂ ଯିଏ ନିଜ ପ୍ରଯତ୍ନରେ ସର୍ବଦା ସାବଧାନ ରହନ୍ତି, ସେହି ନାରଦଙ୍କୁ ମୁଁ ନମସ୍କାର କରୁଅଛି । ଯିଏ ଅର୍ଥଲାଭରେ ହର୍ଷ କିମ୍ବା ଅର୍ଥହାନିରେ କ୍ଳେଶ ଅନୁଭବ କରନ୍ତି ନାହିଁ । ଯାହାଙ୍କର ବୁଦ୍ଧି ସ୍ଥିର ଓ ଆତ୍ମା ଅନାସକ୍ତ, ସେହି ନାରଦଙ୍କୁ ମୁଁ ନମସ୍କାର କରୁଅଛି । ଯିଏ ସର୍ବଗୁଣ ସମ୍ପନ୍ନ, ଦକ୍ଷ, ପବିତ୍ର, କାତର ରହିତ, କାଳଜ୍ଞ ଓ ନୀତିଜ୍ଞ ଅଟନ୍ତି, ମୁଁ ସେହି ଦେବର୍ଷି ନାରଦଙ୍କର ଶରଣ ପଶୁଅଛି ।"

"ହେ ରାଜନ ! ନାରଦଙ୍କର ଏହି ସ୍ତୋତ୍ର ମୁଁ ପ୍ରତ୍ୟହ ଜପ କରୁଅଛି । ଏହାଦ୍ୱାରା ସେହି ମୁନିଶ୍ରେଷ୍ଠ ମୋତେ ଅଧିକ ପ୍ରେମ କରୁଅଛନ୍ତି । ଯଦି କେହି ବ୍ୟକ୍ତି ପବିତ୍ର ହୋଇ ପ୍ରତିଦିନ ଏହି ସ୍ତୁତି ପାଠ କରେ, ତେବେ ଦେବର୍ଷି ନାରଦ ତା' ଉପରେ ପ୍ରସନ୍ନ ହୋଇ ଅତିଶୀଘ୍ର ତାଙ୍କର କୃପା ପ୍ରସାଦ ବିତରଣ କରନ୍ତି । ଅତଏବ ହେ ରାଜନ୍ ! ଆପଣ ମଧ୍ୟ ନାରଦଙ୍କର ଏହି ସବୁ ଗୁଣ ଶ୍ରବଣ କରି ପ୍ରତିଦିନ ଏହି ସ୍ତୋତ୍ର ଜପ କରନ୍ତୁ । ତାହାହେଲେ ସେହି ମୁନି ଆପଣଙ୍କ ଉପରେ ପ୍ରସନ୍ନ ହେବେ ।"

ଭଗବାନ ଶ୍ରୀକୃଷ୍ଣ ପ୍ରତ୍ୟହ ଯେଉଁ ନାରଦଙ୍କର ସ୍ତୁତି ଗାନ କରନ୍ତି ଏବଂ ତାଙ୍କର ଗୁଣ କୀର୍ତ୍ତନ କରିବାରେ ଶତମୁଖ ହୋଇ ଉଠନ୍ତି, ସେହି ମହାନ୍ ଦେବର୍ଷିଙ୍କର ଜୀବନ ଚରିତ ଯେ କେତେ ମହନୀୟ, ତାହା ସହଜରେ ଅନୁମେୟ ।

---

# ରାଜର୍ଷି ମନୁ

ମନୁ ହେଉଛନ୍ତି ଭାରତ ବର୍ଷର ସର୍ବଶ୍ରେଷ୍ଠ ପ୍ରାତଃ ସ୍ମରଣୀୟ ମହାପୁରୁଷ । ବେଦରେ ତାଙ୍କୁ ଅଖିଳ ମାନବଜାତିର ପିତା ବୋଲି ବର୍ଣ୍ଣନା କରାଯାଇଛି । ସେ ସଂସାରର ପ୍ରଥମ ଯଜ୍ଞ କର୍ତ୍ତା ଓ ବ୍ରହ୍ମବର୍ତ୍ତ । ଭାରତ ବର୍ଷର ସର୍ବଶ୍ରେଷ୍ଠ ସଂହିତାକାର ଭାବରେ ମଧ୍ୟ ତାଙ୍କୁ ଗ୍ରହଣ କରାଯାଇଛି ।

ଯେତେବେଳେ ବ୍ରହ୍ମା ସୃଷ୍ଟିର ପ୍ରାରମ୍ଭରେ ଦେଖିଲେ ଯେ ତାଙ୍କର ମାନସିକ ସୃଷ୍ଟି ବୃଦ୍ଧି ଲାଭ କରୁ ନାହିଁ, ସେତେବେଳେ ସେ ନିଜ ଶରୀରରୁ ଗୋଟିଏ ଦମ୍ପତି ଉତ୍ପନ୍ନ କଲେ । ବ୍ରହ୍ମାଙ୍କର ଦକ୍ଷିଣ ଅଙ୍ଗରୁ ମନୁ ଓ ବାମ ଅଙ୍ଗରୁ ତାଙ୍କ ପତ୍ନୀ ଶତରୂପା ଉତ୍ପନ୍ନ ହୋଇଥିଲେ । ମନୁ ଓ ଶତରୂପା ଉତ୍ପନ୍ନ ହେବା ପରେ ବ୍ରହ୍ମା ସେମାନଙ୍କୁ ସୃଷ୍ଟି କରିବାକୁ ଆଦେଶ ଦେଲେ । କିନ୍ତୁ ସେହି ସମୟରେ ପୃଥିବୀ ଜଳମଗ୍ନ ହୋଇଥିଲା । ମନୁ ପ୍ରଜାବସ୍ତାର ପାଇଁ ବ୍ରହ୍ମାଙ୍କୁ ସ୍ଥଳଭାଗ ମାଗିବାରୁ ବ୍ରହ୍ମା ପୃଥିବୀର ଉଦ୍ଧାର ପାଇଁ ଭଗବାନ ବିଷ୍ଣୁଙ୍କୁ ପ୍ରାର୍ଥନା କଲେ । ବ୍ରହ୍ମାଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଭଗବାନ ବିଷ୍ଣୁ ବରାହ ରୂପ ଧାରଣ କରି ପୃଥିବୀ ଉଦ୍ଧାର କରିଥିଲେ । ପୃଥିବୀ ଉଦ୍ଧାର ହେବାପରେ ମନୁ ନିଜ ପତ୍ନୀ ସହିତ ତପସ୍ୟା କରିବାକୁ ଲାଗିଲେ । ତାଙ୍କ ତପସ୍ୟାରେ ଭଗବାନ ବିଷ୍ଣୁ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ତାଙ୍କୁ ଦର୍ଶନ ଦେଇ ପ୍ରଜା ଉତ୍ପନ୍ନ କରିବାକୁ ନିର୍ଦ୍ଦେଶ ଦେଲେ । ମନୁ ଭଗବାନଙ୍କ ନିର୍ଦ୍ଦେଶକୁ ଶିରୋଧାର୍ଯ୍ୟ କରି ପ୍ରଜା ଉତ୍ପନ୍ନ କରିବାକୁ ସ୍ୱୀକୃତ ହେଲେ; କାରଣ ତାଙ୍କ ମତାନୁସାରେ ସନ୍ତାନୋତ୍ପତ୍ତିର ମୁଖ୍ୟ ଉଦ୍ଦେଶ୍ୟ ଅତି ମହତ୍ । ତାଙ୍କର ମତ ଥିଲା, ପିତାମାତା ସନ୍ତାନୋତ୍ପତ୍ତି କରିବା ସମୟରେ କାମନା କରିବା ଉଚିତ ଯେ ସେମାନଙ୍କର ସନ୍ତାନ ଉତ୍ତମ ଗୁଣଯୁକ୍ତ ତଥା ଭଗବଦ୍ ଭକ୍ତ ହେଉ ଏବଂ ସୁକର୍ମ ଦ୍ୱାରା ପରଲୋକରେ ଥିବା ନିଜର ପୂର୍ବଜମାନଙ୍କୁ ମୁକ୍ତିର ଆଲୋକ ଦେଖାଉ । କାମନା ବାସନାଯୁକ୍ତ ହୋଇ ସ୍ତ୍ରୀ-ସେବନ କରିବା ଏକ ପ୍ରକାର ପାପ ଅଟେ; କାରଣ ବାସନାରୁ ଉତ୍ପନ୍ନ ସନ୍ତାନ ମଧ୍ୟରେ ବାସନା ହିଁ ଦୃଢ଼ ଭାବରେ ରହିଥାଏ । ତପସ୍ୟା ଓ ଭଗବଦ୍ ଭଜନ ଦ୍ୱାରା ଚିତ୍ତକୁ ନିର୍ମଳ କରିବା ପରେ ହିଁ ସନ୍ତାନୋତ୍ପତ୍ତି କରିବା ଉଚିତ । ମନୁ ତପସ୍ୟା ଦ୍ୱାରା ନିଜ ଚିତ୍ତକୁ ନିର୍ମଳ କରି ଭଗବଦ୍ ଦର୍ଶନ କରିବା ପରେ ହିଁ ପ୍ରଜାସୃଷ୍ଟି କରିବାକୁ ସମ୍ମତ ହୋଇଥିଲେ । ପ୍ରଥମେ ମନୁ ଓ ଶତରୂପାଙ୍କଠାରୁ ଦୁଇଜଣ ପୁତ୍ର ଓ ତିନିଜଣ କନ୍ୟା ଉତ୍ପନ୍ନ ହୋଇଥିଲେ । ପୁତ୍ର ଦୁଇଜଣଙ୍କର ନାମ ହେଉଛି ପ୍ରିୟବ୍ରତ ଓ ଉତ୍ତାନ ପାଦ ଏବଂ କନ୍ୟା ତିନି ଜଣଙ୍କର ନାମ ହେଉଛି ଆକୂତି, ଦେବହୂତି ଓ ପ୍ରସୂତି ।

ସୃଷ୍ଟିର ପ୍ରଥମ କଳ୍ପରେ ଏହି ସ୍ୱାୟଂଭୁବ ମନୁଙ୍କ ସନ୍ତାନମାନଙ୍କଠାରୁ ପୃଥିବୀର ମନୁଷ୍ୟ ବଂଶ ବୃଦ୍ଧି ଲାଭ କରିଥିଲା । ମନୁଙ୍କର ପ୍ରଥମ ପୁତ୍ର ପ୍ରିୟବ୍ରତ ଥିଲେ ପରମ ଭଗବଦ୍ ଭକ୍ତ । ସେ ଏହି ପୃଥିବୀକୁ ସପ୍ତଦ୍ୱୀପବତୀ କରିଥିଲେ । ମନୁଙ୍କର ଦ୍ୱିତୀୟ ପୁତ୍ର ଉତ୍ତାନ ପାଦଙ୍କଠାରୁ ଭକ୍ତ ଶ୍ରେଷ୍ଠ ଧ୍ରୁବ ଉତ୍ପନ୍ନ ହୋଇଥିଲେ । ପ୍ରଥମ କନ୍ୟା ଆକୂତି ମହର୍ଷି ରୁଚିଙ୍କୁ ବିବାହ କରିଥିଲେ ଏବଂ ସ୍ୱୟଂ ଭଗବାନ ଯଜ୍ଞ ରୂପରେ ତାଙ୍କ ଗର୍ଭରୁ ଅବତରିତ ହୋଇଥିଲେ । ଦ୍ୱିତୀୟ କନ୍ୟା ଦେବହୂତି ମହର୍ଷି କର୍ଦ୍ଦମଙ୍କୁ ବିବାହ କରିଥିଲେ ଏବଂ ତାଙ୍କଠାରୁ ଭଗବାନ କପିଳ ଅବତାରରେ ଜନ୍ମ ଗ୍ରହଣ କରିଥିଲେ ।

ତୃତୀୟ କନ୍ୟା ପ୍ରସୂତି ବ୍ରହ୍ମାଙ୍କର ମାନସ ପୁତ୍ର ଦକ୍ଷ ପ୍ରଜାପତିଙ୍କୁ ବିବାହ କରିଥିଲେ । ତାଙ୍କଠାରୁ ହିଁ ଜଗତରେ ମନୁଷ୍ୟ ସୃଷ୍ଟିର ସର୍ବାଧିକ ବିସ୍ତାର ହୋଇଥିଲା । ମନୁ ନିଜର ସନ୍ତାନମାନଙ୍କୁ କଲ୍ୟାଣ ମାର୍ଗରେ ପରିଚାଳିତ କରିବାପାଇଁ ଯେଉଁ "ମାନବ-ଧର୍ମଶାସ୍ତ୍ର" ଉପଦେଶ ଦେଇଥିଲେ ତାହା "ମନୁସ୍ମୃତି" ନାମରେ ଏବେ ମଧ୍ୟ ସର୍ବଶ୍ରେଷ୍ଠ ସ୍ମୃତି ଗ୍ରନ୍ଥ ଭାବରେ ସୁପ୍ରସିଦ୍ଧ ।

ମନ୍ୱନ୍ତର କାଳ ପର୍ଯ୍ୟନ୍ତ ରାଜ୍ୟ ଶାସନ କରି ମନୁ ମହାରାଜ ନିଜ ରାଜ୍ୟକୁ ପୁତ୍ରମାନଙ୍କ ହସ୍ତରେ ଅର୍ପଣ କଲେ ଏବଂ ସଂସାର ପ୍ରତି ବିରକ୍ତ ହୋଇ ପତ୍ନୀ ସହିତ ବନଗାମୀ ହେଲେ । ଦୀର୍ଘକାଳ ଅଖଣ୍ଡ ରାଜ୍ୟ ଶାସନ କରି ମନୁଙ୍କର ଏହି ଧାରଣା ହୋଇଥିଲା ଯେ ସଂସାରରେ ଯେତେ ବିଷୟ ଭୋଗ କଲେ ମଧ୍ୟ ସେଥିରେ ତୃପ୍ତି ଲାଭ କରିବା ଅସମ୍ଭବ । ବିଷୟାସକ୍ତିରୁ ମନକୁ ମୁକ୍ତ କରି ପାରିଲେ ହିଁ ପ୍ରକୃତ ଶାନ୍ତିପ୍ରାପ୍ତ ହୋଇଥାଏ । ତେଣୁ ସମସ୍ତ ବିଷୟ ଭୋଗ ପରିତ୍ୟାଗ କରି ସେ ବନକୁ ଗମନ କରିଥିଲେ । ବନରେ ପହଞ୍ଚି ଭଗବଦ୍ ପ୍ରାପ୍ତିପାଇଁ ସେ କଠୋର ତପସ୍ୟା କରିବାକୁ ଲାଗିଲେ । ନିରନ୍ତର ଭଗବାନଙ୍କର ଦ୍ୱାଦଶାକ୍ଷର ମନ୍ତ୍ର ଜପ କରି ସେ ନିଜର ମନପ୍ରାଣ ସମ୍ପୂର୍ଣ୍ଣ ଭାବେ ଭଗବଦ୍ ଧ୍ୟାନରେ ବିନିଯୋଗ କଲେ । କେବଳ ତାଙ୍କ ମନରେ ଏହି ଗୋଟିଏ କାମନା ଥିଲା ଯେ ସେ ନିଜ ଚର୍ମ ଚକ୍ଷୁରେ ହିଁ ସର୍ବେଶ୍ୱର, ସର୍ବମୟ ପ୍ରଭୁଙ୍କୁ ସାକ୍ଷାତ୍କାର କରିବେ ।

"ସେହି ଦୟାମୟ ପ୍ରଭୁ ଯଦ୍ୟପି ଅଖଣ୍ଡ, ଅନନ୍ତ ତଥା ନିରୁପାଧିସ୍ୱରୂପ ଅଟନ୍ତି, ତଥାପି ସେ ଭକ୍ତବତ୍ସଳ ହୋଇଥିବାରୁ ସର୍ବଦା ଭକ୍ତର ବଶୀଭୂତ ହୁଅନ୍ତି । ଭକ୍ତକୁ କୃପା କରିବାପାଇଁ ସେ ନାନାବିଧ ମଙ୍ଗଳମୟ ରୂପ ଧାରଣ କରନ୍ତି । ତେଣୁ ସେ ନିଶ୍ଚୟ ମୋ ପ୍ରତି ଦୟା କରିବେ ।" ମନୁ ଏପରି ଅବିଚଳ ବିଶ୍ୱାସ ପୋଷଣ କରି କଠୋର ତପସ୍ୟାରେ ନିମଗ୍ନ ରହିଲେ । ତାଙ୍କ ସହିତ ତାଙ୍କର ସାଧ୍ୱୀ ପତ୍ନୀ ଶତରୂପା ମଧ୍ୟ କଠୋର ତପସ୍ୟା କରିବାକୁ

ଲାଗିଲେ । ଦୀର୍ଘକାଳ ପର୍ଯ୍ୟନ୍ତ ସେମାନେ କେବଳ ଜଳପାନ କରି ତପସ୍ୟା କଲେ । ତାହାପରେ ସେମାନେ ଜଳମଧ୍ୟ ତ୍ୟାଗ କରିଦେଲେ । ସେହି ମହାନ ଦମ୍ପତି ଏକ ପାଦରେ ଛିଡ଼ା ହୋଇ ମନକୁ ଭଗବାନଙ୍କ ଚରଣାରବିନ୍ଦରେ ନିମଗ୍ନ କରି ଭଗବାନଙ୍କର କୃପାଲାଭ କରିବାକୁ ପ୍ରତୀକ୍ଷା କରି ରହିଲେ । ସ୍ୱୟଂ ବ୍ରହ୍ମା ଓ ଅନ୍ୟ ଦେବତାମାନେ ଅନେକଥର ଆସି ମନୁଙ୍କୁ ବରମାଗିବାକୁ ଅନୁରୋଧ କରିଲେ; କିନ୍ତୁ ମନୁ ନିଜ ସଂକଳ୍ପରେ ଅଟଳ ରହିଲେ । ନିଜର ଆରାଧ୍ୟ ଦେବତାଙ୍କୁ ଦର୍ଶନ ନ କଲା ପର୍ଯ୍ୟନ୍ତ ସେ ସାଧନାରୁ ବିରତ ହେବେ ନାହିଁ ବୋଲି ଦୃଢ଼ କଣ୍ଠରେ ଘୋଷଣା କଲେ । ତପସ୍ୟା କରି କରି ମନୁ ଓ ଶତରୂପାଙ୍କ ଶରୀର କଙ୍କାଳସାର ହୋଇଗଲା; ତଥାପି ମଧ୍ୟ ସେମାନେ ତପସ୍ୟାରୁ ବିରତ ହେଲେ ନାହିଁ । ସେମାନଙ୍କର ମୁଖମଣ୍ଡଳ ଥିଲା ସଦା ପ୍ରସନ୍ନ । ସେମାନେ ହୃଦୟରୁ ଦୁଃଖ ଓ ନିରାଶା ସମ୍ପୂର୍ଣ୍ଣ ପରିତ୍ୟାଗ କରିଥିଲେ ।

ମନୁ ଓ ଶତରୂପାଙ୍କର କଠୋର ତପସ୍ୟା ଭଗବାନ ବିଷ୍ଣୁଙ୍କ ଆସନକୁ ଥରାଇ ଦେଲା । ସେ ବୈକୁଣ୍ଠରୁ ଅବତରଣ କରି ସେହି ଆଦର୍ଶ ଦମ୍ପତିଙ୍କର ସାଧନାସ୍ଥଳୀରେ ଉପସ୍ଥିତ ହେଲେ । ସେମାନଙ୍କୁ ବରଦାନ କରିବାପାଇଁ ହଠାତ୍ ଗୁରୁଗମ୍ଭୀର ସ୍ୱରରେ ଦିବ୍ୟ ଆକାଶବାଣୀ ହେଲା । ସେହି ଆକାଶବାଣୀ କାନରେ ପଡ଼ିବା ମାତ୍ରେ ସେମାନଙ୍କର ଶରୀର ପୁଷ୍ଟ ହେବାକୁ ଲାଗିଲା, ପ୍ରାଣରେ ସତେଯେପରି ଅମୃତର ସଞ୍ଚାର ହେଲା ଏବଂ ଶରୀର ପୁଲକିତ ହୋଇ ଉଠିଲା । ମନୁ ସେହି ଆକାଶବାଣୀ ଉଦ୍ଦେଶ୍ୟରେ ଦଣ୍ଡ ପ୍ରଣାମ କରି ଶ୍ରଦ୍ଧାର ସହିତ କହିଲେ "ହେ ପ୍ରଭୋ ! ଯଦି ଆପଣ ଆମକୁ ଦୟା କରିଛନ୍ତି ତେବେ କୃପାକରି ଆମକୁ ଦର୍ଶନ ଦିଅନ୍ତୁ । ଶ୍ରୁତି ଆପଣଙ୍କର ଯେଉଁ ସୌନ୍ଦର୍ଯ୍ୟ ମାଧୁର୍ଯ୍ୟମୟ ରୂପକୁ ବାରମ୍ବାର ବର୍ଣ୍ଣନ କରିଛି । ଭଗବାନ ଶଙ୍କର ଆପଣଂକର ଯେଉଁ ରୂପକୁ ସର୍ବଦା ଧ୍ୟାନ କରନ୍ତି । ସେହି ମଙ୍ଗଳମୟ ରୂପଦର୍ଶନ କରିବାକୁ ଆମ ନେତ୍ର ଉତ୍ସୁକ ହୋଇ ସ୍ଥିରି ରହିଛି ।"

ଭକ୍ତବତ୍ସଳ ଭଗବାନ ମନୁଙ୍କ ପ୍ରାର୍ଥନା ଶୁଣି ଅବିଳମ୍ବରେ ତାଙ୍କ ନିକଟରେ ପ୍ରକଟ ହେଲେ । ପ୍ରଭୁଙ୍କର ନବୀନ-ଜଳଧର-ସୁନ୍ଦର ଶ୍ରୀଅଙ୍ଗର ଅପୂର୍ବ ଛଟାରେ ଚତୁର୍ଦ୍ଦିଗ ଆଲୋକିତ ହୋଇଗଲା । ମନୁ ସେହି ପୀତାମ୍ବରଧାରୀ, ସର୍ବାଭରଣଭୂଷିତ, ମୁନିମନୋହାରୀ ଦିବ୍ୟରୂପ ଦର୍ଶନ କରି ଆଶ୍ଚର୍ଯ୍ୟ ଚକିତ ହୋଇ ସ୍ତମ୍ଭୀଭୂତ ହୋଇଗଲେ । ଭଗବାନ ପ୍ରକଟ ହୋଇ ପୁନଶ୍ଚ ବର ମାଗିବାକୁ ମନୁଙ୍କୁ ଅନୁରୋଧ କଲେ । କିନ୍ତୁ ମନୁ ନିଷ୍ପଲକ ନେତ୍ରରେ ଭଗବାନଙ୍କର ସେହି ଦିବ୍ୟ ରୂପକୁ ଦର୍ଶନ କରୁଥିଲେ । ଯେତେ ଦେଖିଲେ ମଧ୍ୟ ତାଙ୍କର ନେତ୍ର ତୃପ୍ତ ହେଉ ନଥିଲା । ହୃଦୟ କହୁଥିଲା ସେହି ରୂପ ସଦାସର୍ବଦା ତାଙ୍କ ନେତ୍ର ଆଗରେ ରହିଥାନ୍ତା କି ? ଶେଷରେ ବଡ଼ ସଙ୍କୋଚର ସହିତ ମନୁ କହିଲେ – "ହେ ଦୟାମୟ ! ଆପଣତ

ଉଦାର ଚୂଡ଼ାମଣି । ଆପଣଙ୍କର ନିକଟରେ ଅଦେୟ ବା କ'ଣ ଅଛି ? କିନ୍ତୁ ମୋ ମନରେ ଯେଉଁ କାମନା ଜାତ ହୋଇଛି, ତାହା ପ୍ରକାଶ କରିବାକୁ ମୋତେ ବଡ଼ ସଙ୍କୋଚ ଲାଗୁଛି ।

ଭଗବାନ ନିଃସଙ୍କୋଚରେ ବର ପ୍ରାର୍ଥନା କରିବାକୁ କହିବାରୁ ମନୁ ମାଗିଲେ—"ହେ ଦୟାମୟ ! ମୋତେ ଆପଣଙ୍କ ପରି ପୁତ୍ର ପ୍ରାପ୍ତ ହେଉ ।"

ମନୁଙ୍କ କଥା ଶୁଣି ଭଗବାନ ହସିବାକୁ ଲାଗିଲେ । ରୂପ-ଶୀଳ-ଗୁଣରେ ଭଗବାନଙ୍କ ସଦୃଶ ଆଉ କେହି ଉତ୍ପନ୍ନ ହେବା କିପରି ସମ୍ଭବ ? ସେ ସ୍ୱୟଂ ମନୁଙ୍କରପୁତ୍ର ହେବାପାଇଁ ସ୍ୱୀକୃତ ଦେଲେ ।

ତତ୍‌ପରେ ଭଗବାନ ଶତରୂପାଙ୍କୁ ବର ପ୍ରାର୍ଥନା କରିବାକୁ କହିବାରୁ ଶତରୂପା କହିଲେ—"ମୋର ପତିଦେବ ଯେଉଁ ବର ପ୍ରାର୍ଥନା କଲେ, ସେହି ବର ମୋର ଅତ୍ୟନ୍ତ ପ୍ରିୟ, ହେ ପ୍ରଭୁ ! ! ଯେଉଁ ଭକ୍ତ ଆପଣଙ୍କର ପରମ ପ୍ରିୟ, ସେହି ଭକ୍ତକୁ ଆପଣ ଯେଉଁ ସୁଖ, ଯେଉଁ ଗତି; ଯେଉଁ ଭକ୍ତି, ଯେଉଁ ଜ୍ଞାନ ପ୍ରଦାନ କରନ୍ତି, ମୋତେ ତାହାହିଁ ପ୍ରାପ୍ତ ହେଉ ।"

ମନୁ ହାତଯୋଡ଼ି ଭଗବାନଙ୍କୁ ପୁନଃ ପ୍ରାର୍ଥନା କଲେ—"ହେ ଦୟାମୟ ! ମୋ ହୃଦୟ ସର୍ବଦା ଆପଣଙ୍କ ପ୍ରତି ବାତ୍ସଲ୍ୟ ଭାବରେ ପରିପୂର୍ଣ୍ଣ ହେଉ । ସଂସାରର ଲୋକମାନେ ପଛେ ମୋତେ ମୋହମୁଗ୍ଧ ଅଜ୍ଞାନୀ ବୋଲି ସମାଲୋଚନା କରନ୍ତୁ, ତଥାପି ଆପଣଙ୍କ ପ୍ରତି ମୋର ଅନୁରାଗ ଏପରି ବୃଦ୍ଧି ପାଉ, ଯଦ୍ଦ୍ୱାରା କି ଆପଣଙ୍କ ବିନା ମୋର ଜୀବନ ଧାରଣ ଅସମ୍ଭବ ହେଉ । ଯେପରି ମଣି ବିନା ସର୍ପ ଓ ଜଳ ବିନା ମତ୍ସ୍ୟ ବଞ୍ଚିପାରେ ନାହିଁ, ସେହିପରି ମୋର ଜୀବନ ଆପଣଙ୍କ ଉପରେ ଅବଲମ୍ବିତ ହେଉ ।

ଭଗବାନ ମନୁଙ୍କୁ ଆଶ୍ୱାସନା ବାକ୍ୟରେ ସନ୍ତୁଷ୍ଟ କରି ଅନ୍ତର୍ହିତ ହୋଇଗଲେ । ତ୍ରେତୟା ଯୁଗରେ ସେହି ମନୁ ଅଯୋଧ୍ୟା ନରେଶ ଦଶରଥ ରୂପରେ ଏବଂ ତାଙ୍କ ପତ୍ନୀ ଶତରୂପା କୌଶଲ୍ୟା ରୂପରେ ଜନ୍ମ ଗ୍ରହଣ କରିଥିଲେ । ଭଗବାନ ତାଙ୍କର ପ୍ରତିଶ୍ରୁତି ରକ୍ଷାକରି ଦଶରଥ ଓ କୌଶଲ୍ୟାଙ୍କ ପୁତ୍ର ଭାବରେ ରାମାବତାର ଧାରଣ କରିଥିଲେ । ଭଗବାନଙ୍କର ନିତ୍ୟ ଶକ୍ତି ମଧ୍ୟ ମିଥିଳା ରାଜକୁମାରୀ ରୂପରେ ପ୍ରକଟ ହୋଇ ଚକ୍ରବର୍ତ୍ତୀ ମହାରାଜା ଦଶରଥଙ୍କର ପୁତ୍ରବଧୂ ହୋଇଥିଲେ ।

ମନୁଙ୍କ ପ୍ରଣୀତ "ମନୁସ୍ମୃତି"ବା "ମନୁ ସଂହିତା" ସ୍ମୃତି ଗ୍ରନ୍ଥ ଭାବରେ ପୃଥିବୀରେ ଅଦ୍ୱିତୀୟ । ଏଥିରେ ବାରଟି ଅଧ୍ୟାୟରେ ଅଢ଼େଇ ହଜାରରୁ କିଛି ଅଧିକ ଶ୍ଳୋକ ଅଛି ।

ବ୍ୟକ୍ତିଗତ ଓ ଗୋଷ୍ଠିଗତ ଜୀବନରେ ପାଳନୀୟ ସାମାଜିକ, ନୈତିକ ଓ ରାଜନୈତିକ ଆଦର୍ଶ ନିୟମାବଳୀ ଏଥିରେ ଲିପିବଦ୍ଧ ହୋଇ ଅଛି । ସୁପ୍ରସିଦ୍ଧ ମାର୍କିନ ଲେଖକ ଯୋଗ୍ୟ ଏହି ପ୍ରସଙ୍ଗରେ ଲେଖିଛନ୍ତି—"ମନୁସ୍ମୃତି ସର୍ବପ୍ରଧାନ ପ୍ରାମାଣିକ ଗ୍ରନ୍ଥ । ଏହା ସୃଷ୍ଟିର ଆଦ୍ୟ କାଳରୁ ବ୍ରହ୍ମାଙ୍କ ଦାୟାଦ ମନୁଙ୍କ ଦ୍ୱାରା ପ୍ରଣୀତ ହୋଇଥିଲା ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ମୋ ଜାଣିବାରେ ଏହା ଅପେକ୍ଷା ଅଧିକ ମହତ୍ତ୍ୱ ପୂର୍ଣ୍ଣ କୌଣସି ପ୍ରାଚୀନ ଗ୍ରନ୍ଥ ନାହିଁ । ଜଣାପଡ଼େ କୌଣସି ପ୍ରାଚ୍ୟ ଗିରିଶୃଙ୍ଗରୁ 'ସୃଷ୍ଟିର ପ୍ରାରମ୍ଭିକ ପ୍ରଶାନ୍ତିରେ ଏହା ଉଚ୍ଚାରିତ ହୋଇଥିଲା । ପୂର୍ବଘାଟ ଓ ପଶ୍ଚିମଘାଟ ପର୍ବତ ଶ୍ରେଣୀର ମାଳଭୂମିରୁ ଏହି ଗ୍ରନ୍ଥ ପଢ଼ୁ ପଢ଼ୁ ମନ ଉନ୍ନିତ ହୋଇ ଯିବ । ମରୁଭୂମିର ପବନ ପରି ଏହାର ଛନ୍ଦ । ଗଙ୍ଗାର ଜୁଆର ପରି ଏହାର ଗତି ଓ ହିମାଳୟ ପର୍ବତ ପରି ସମାଲୋଚନାର ସୀମାତୀତ । ଏଥିରୁ ଯେଉଁ ଦୁର୍ଲ୍ଲଭ ଜ୍ଞାନର ଉତ୍ସ ବାହାରେ ତାହା ଆମକୁ ଅବାକ୍ କରିଦିଏ । ଏଥିରେ ବିଜ୍ଞାନ ସମ୍ମତ ସତ୍ୟ ନିହିତ ଅଛି । ଏଥିରେ ଭାରତୀୟ ଦାର୍ଶନିକ ଚିନ୍ତାଧାରା ପରିପୁଷ୍ଟ ହୋଇଅଛି । ଏଥିରେ ଯେଉଁ ରାଜନୀତି, ଧର୍ମନୀତି, ସମାଜନୀତି ଓ ଗାର୍ହସ୍ଥ୍ୟନୀତି ବର୍ଣ୍ଣିତ ହୋଇଅଛି, ତାହାରି ଆଦର୍ଶରେ ଆଜିକାଲିର ଦାର୍ଶନିକମାନେ ନୂତନ ତଥ୍ୟ ପ୍ରକାଶ କରୁଛନ୍ତି ।



# ରାଜର୍ଷି ପ୍ରିୟବ୍ରତ

ମହାରାଜ ପ୍ରିୟବ୍ରତ ଥିଲେ ସ୍ୱାୟଂଭୁବ ମନୁଙ୍କର ପ୍ରଥମ ପୁତ୍ର । ଜନ୍ମରୁ ହିଁ ସେ ଭଗବାନଙ୍କର ପରମଭକ୍ତ ଥିଲେ । ଭଗବାନଙ୍କର ଗୁଣଗାନ ତଥା ତାଙ୍କର ମଙ୍ଗଳ ଚରିତ ଶ୍ରବଣ ଛଡ଼ା ତାଙ୍କୁ ସଂସାରର ଆଉ କିଛି ଭଲ ଲାଗୁ ନ ଥିଲା । ଦେବର୍ଷି ନାରଦ କୃପା କରି ତାଙ୍କୁ ପରମାର୍ଥ ତତ୍ତ୍ୱ ଶିକ୍ଷା ଦେଇଥିଲେ । ଦେବର୍ଷିଙ୍କ ସହିତ ଗନ୍ଧମାଦନ ପର୍ବତ ଉପରେ ରହି ସେ ନିରନ୍ତର ଭଗବାନଙ୍କୁ ସ୍ମରଣ କରୁଥିଲେ ଏବଂ ଦେବର୍ଷିଙ୍କ ମୁଖରୁ ଭଗବାନଙ୍କର ପରମପାବନ ଲୀଳା ଚରିତ ଶ୍ରବଣ କରୁଥିଲେ । ଯେତେବେଳେ ମନୁ ତପସ୍ୟା କରିବାପାଇଁ ବନ ଗମନ କରିବାକୁ ଇଚ୍ଛା ପ୍ରକାଶ କଲେ, ସେତେବେଳେ ସେ ରାଜ୍ୟଶାସନର ଦାୟିତ୍ୱ ଅର୍ପଣ କରିବାପାଇଁ ପ୍ରିୟବ୍ରତଙ୍କୁ ଡକାଇ ପଠାଇଲେ । କିନ୍ତୁ ଯେଉଁ ପ୍ରିୟବ୍ରତଙ୍କର ମନ ପ୍ରାଣ ଭଗବାନଙ୍କ ପାଦପଦ୍ମରେ ଲୀନ ହୋଇ ଯାଇଛି ସେ କ'ଣ ବିଷୟାସକ୍ତ ହୋଇ ରାଜ୍ୟଶାସନ କରିବାକୁ ରାଜି ହୋଇଥାନ୍ତେ ? ସେ ସ୍ପଷ୍ଟଭାବେ ରାଜ୍ୟଶାସନ କରିବାକୁ ଅସ୍ୱୀକାର କଲେ ।

ଯେତେବେଳେ ଆମର ମନ ସଂସାର ପ୍ରତି ଆସକ୍ତ ହୋଇପଡ଼େ ତଥା ସଂସାରର ବିଷୟକୁ ସର୍ବଶ୍ରେଷ୍ଠ ସୁଖବୋଲି ମନେ କରି ତାହା ଭୋଗ କରି ବସେ, ସେତେବେଳେ ସେହି ବିଷୟ ସବୁ ଆମର ବନ୍ଧନର କାରଣ ହୋଇଥାଏ । କିନ୍ତୁ ପ୍ରକୃତ କଥା ହେଉଛି, ଏହି ସଂସାର ଭଗବାନଙ୍କର ସ୍ଥୂଳରୂପ ମାତ୍ର । ଏହା ଭଗବାନଙ୍କର ଲୀଳାକ୍ଷେତ୍ର । ଜୀବ ଭଗବାନଙ୍କର ଲୀଳାରେ ସହଯୋଗ କରିବାପାଇଁ ଏହି ଲୀଳାକ୍ଷେତ୍ରକୁ ଆସିଅଛି । ଏହି ଲୀଳାରେ ଯାହାର ଯାହା କର୍ତ୍ତବ୍ୟ, ତାହାକୁ ଭଗବାନଙ୍କର ସେବା ବୋଲି ମନେ କରି ଉତ୍ତମରୂପେ ସଂପାଦନ କରିବା ଉଚିତ । ଯିଏ ଭଗବାନଙ୍କର ପ୍ରସନ୍ନତା ପାଇଁ କର୍ମ କରେ, ନିରନ୍ତର ଭଗବାନଙ୍କୁ ସ୍ମରଣ କରେ ଏବଂ କର୍ମସମୂହରେ ଅହଂତ୍ୱ ପରିତ୍ୟାଗ କରି ସ୍ୱକର୍ମ ଦ୍ୱାରା ଭଗବାନଙ୍କର ନିଷ୍କାମ ପୂଜା କରେ, ସେ କେବେହେଲେ ମାୟାଜାଲରେ ପତିତ ହୁଏ ନାହିଁ । ତାହାର ସବୁ କର୍ମ ଭଗବାନଙ୍କର ସେବାପାଇଁ ଅର୍ପିତ ହୋଇଥାଏ । ଶେଷରେ ସେ ଭଗବଦ୍‌ତତ୍ତ୍ୱ ଉପଲବ୍ଧି କରି ଭଗବଦ୍ ସ୍ୱରୂପରେ ବିଲୀନ ହୋଇଯାଏ ।

ପ୍ରିୟବ୍ରତ ରାଜ୍ୟଶାସନ କରିବାକୁ ଅସ୍ୱୀକାର କରିବା ପରେ ତାଙ୍କୁ ଏହି କଥା ବୁଝାଇବା ପାଇଁ ସ୍ୱୟଂ ବ୍ରହ୍ମା ବ୍ରହ୍ମଲୋକରୁ ପୃଥିବୀକୁ ଅବତରଣ କଲେ । ଆକାଶ ମାର୍ଗରେ ହଂସବାହନ ସୃଷ୍ଟିକର୍ତ୍ତାଙ୍କୁ ଦେଖିଲା କ୍ଷଣି ନାରଦ ଓ ପ୍ରିୟବ୍ରତ ନିଜ ନିଜ ଆସନରୁ ଉଠି ପଡ଼ିଲେ ଏବଂ ତାଙ୍କୁ ପ୍ରଣାମ କରି ପୂଜାର୍ଚ୍ଚନା କରିବାକୁ ଲାଗିଲେ । ବ୍ରହ୍ମା କହିଲେ - "ପ୍ରିୟବ୍ରତ ! ଅପ୍ରମେୟ,

ସର୍ବେଶ୍ୱର ପ୍ରଭୁ ତୁମକୁ ଯେଉଁ କର୍ତ୍ତବ୍ୟ ଦେଇଛନ୍ତି, ସେଥିରେ ତୁମେ ଦୋଷ ଦୃଷ୍ଟି ରଖିବା ଉଚିତ ନୁହେଁ । ମୁଁ, ଶଙ୍କର ଓ ମହର୍ଷିଗଣ ବିବଶ ହୋଇ ସେହି ପ୍ରଭୁଙ୍କର ଆଦେଶ ପାଳନ କରୁଅଛୁ । କୌଣସି ଦେହଧାରୀ କେବେହେଲେ ତପସ୍ୟା, ବିଦ୍ୟା, ଯୋଗବଳ, ଅର୍ଥ କିମ୍ବା ଧର୍ମଦ୍ୱାରା ନିଜେ ଅଥବା ଅନ୍ୟର ସହାୟତାରେ ସେହି ସର୍ବ ସମର୍ଥ ପ୍ରଭୁଙ୍କର ବିଧାନକୁ ଅନ୍ୟଥା କରିପାରେ ନାହିଁ । ପ୍ରଭୁଙ୍କ ବିଧାନରେ ପ୍ରାପ୍ତ କର୍ତ୍ତବ୍ୟ ପାଳନ କରି ତୁମେ ପ୍ରଭୁଙ୍କୁ ପ୍ରସନ୍ନ କରିବା ଉଚିତ । ମୁକ୍ତ ପୁରୁଷ ମଧ୍ୟ ଅଭିମାନ ଶୂନ୍ୟ ହୋଇ ପ୍ରାରବ୍ଧ ଶେଷ ହେବା ପର୍ଯ୍ୟନ୍ତ ଦେହ ଧାରଣ କରିଥାନ୍ତି । ସଂସାର ସେମାନଙ୍କ ପାଇଁ ବନ୍ଧନର କାରଣ ହୋଇ ନ ଥାଏ କିମ୍ବା ସେମାନେ ପୁନର୍ଜନ୍ମ ପ୍ରାପ୍ତ ହୁଅନ୍ତି ନାହିଁ । ବନରେ ରହିଲେ ମଧ୍ୟ ଯେଉଁମାନେ କାମ, କ୍ରୋଧ, ଲୋଭ, ମୋହ, ମଦ, ମାତ୍ସର୍ଯ୍ୟ–ଏହି ଷଡ଼ରିପୁଦ୍ୱାରା ପ୍ରମତ୍ତ ହୁଅନ୍ତି, ସେମାନଙ୍କର ପତନ ହେବା ସ୍ୱାଭାବିକ । କିନ୍ତୁ ଯିଏ ସାବଧାନ, ଜିତେନ୍ଦ୍ରିୟ, ଆତ୍ମ ଚିନ୍ତନରତ ଓ ଭଗବଦାଶ୍ରୟୀ, ଗୃହସ୍ଥାଶ୍ରମ ତା'ର କ'ଣ ହାନି କରିବ ? ଯିଏ କାମାଦି ଷଡ଼ରିପୁଙ୍କୁ ଜୟ କରିବାକୁ ଇଚ୍ଛାକରେ, ସିଏ ପ୍ରଥମେ ଗୃହସ୍ଥାଶ୍ରମ ଗ୍ରହଣ କରିବା ଉଚିତ, କାରଣ ଗୃହସ୍ଥାଶ୍ରମହିଁ ଷଡ଼ରିପୁଙ୍କୁ ଜୟ କରିବାର ପ୍ରଧାନ ସ୍ଥଳ । ତୁମେ ତ ପଦ୍ମନାଭ ନାରାୟଣଙ୍କୁ ଆଶ୍ରୟ କରି କାମାଦି ଷଡ଼ରିପୁ ଜୟ କରିଛ; ତେଣୁ ତୁମର ଭୟ କରିବାର କ'ଣ ଅଛି ? ତୁମେ ବର୍ତ୍ତମାନ ଭଗବାନଙ୍କ ପ୍ରଦତ୍ତ ଭୋଗ ସମୂହ ଭୋଗକରି ଏବଂ ଆସକ୍ତି ରହିତ ହୋଇ ପ୍ରଜାପାଳନ ରୂପ ମହାନ୍ କର୍ତ୍ତବ୍ୟ ସମ୍ପାଦନ କର ।"

ବ୍ରହ୍ମାଙ୍କ ଉପଦେଶର ସାରତତ୍ତ୍ୱ ଉପଲବ୍ଧି କରି ପ୍ରିୟବ୍ରତ ରାଜ୍ୟଶାସନ କରିବାକୁ ସ୍ୱୀକୃତ ହେଲେ ଏବଂ ରାଜଧାନୀକୁ ଫେରି ଆସିଲେ । ସ୍ୱାୟଂଭୁବ ମନୁ ପ୍ରିୟବ୍ରତଙ୍କ ହସ୍ତରେ ରାଜ୍ୟ ଅର୍ପଣ କରି ବନକୁ ଗମନ କଲେ । ବିଶ୍ୱକର୍ମାଙ୍କ କନ୍ୟା ବର୍ହିଷ୍ମତୀଙ୍କ ସହିତ ପ୍ରିୟବ୍ରତଙ୍କର ବିବାହ ହେଲା ଏବଂ ଜଗତର ମଙ୍ଗଳ ପାଇଁ ସେ ରାଜ୍ୟ ଓ ଗୃହସ୍ଥାଶ୍ରମ ଗ୍ରହଣ କଲେ । ତାଙ୍କଠାରୁ ଦଶପୁତ୍ର ଓ ଏକ କନ୍ୟା ଉତ୍ପନ୍ନ ହେଲେ । ପ୍ରିୟବ୍ରତ ଥିଲେ ସଂପୂର୍ଣ୍ଣ ବ୍ରହ୍ମାଣ୍ଡର ସ୍ୱାମୀ । ଏକ ସମୟରେ ପୃଥିବୀର ଅର୍ଦ୍ଧ ଭାଗରେ ଦିନ ଓ ଅର୍ଦ୍ଧ ଭାଗରେ ରାତି ହେବା ତାଙ୍କର ପସନ୍ଦ ହେଲା ନାହିଁ । ତେଣୁ ସେ ନିଜର ଜ୍ୟୋତିର୍ମୟ ଦିବ୍ୟରଥ ଆରୋହଣ କରି ସୂର୍ଯ୍ୟରଥର ଗତି ସହିତ ସମାନ ବେଗରେ ପୃଥିବୀର ରାତ୍ରି ଭାଗରେ ଭ୍ରମଣ କରିବାକୁ ଲାଗିଲେ । ତାଙ୍କ ଜ୍ୟୋତିର୍ମୟ ରଥର ପ୍ରକାଶରେ ଅନ୍ଧକାର ଦୂର ହୋଇଗଲା ଏବଂ ସମ୍ପୂର୍ଣ୍ଣ ପୃଥିବୀରେ ଦିବାଲୋକ ପ୍ରତିଭାତ ହେଲା । ଏହିପରି ସେ ସାତରାତ୍ରି ଭ୍ରମଣ କରିଥିଲେ । କିନ୍ତୁ ଏହା ସୃଷ୍ଟିର ନିୟମ ବହିର୍ଭୂତ ହୋଇଥିବାରୁ ବ୍ରହ୍ମା ତାଙ୍କୁ ସେ କାର୍ଯ୍ୟରୁ ବାରଣ କଲେ । ତାଙ୍କ ରଥଚକ୍ରର ଆଘାତରେ ପୃଥିବୀରେ ସପ୍ତସମୁଦ୍ର ସୃଷ୍ଟି ହୋଇଥିଲା । ସେହି ସପ୍ତ ସମୁଦ୍ର ମଧ୍ୟରେ ସାତଟି ଦ୍ୱୀପ ସୃଷ୍ଟି ହେବାରୁ ପ୍ରିୟବ୍ରତ ତାଙ୍କର ସାତଜଣ ପୁତ୍ରଙ୍କୁ ଗୋଟିଏ ଗୋଟିଏ ଦ୍ୱୀପ ପ୍ରଦାନ

କରିଥିଲେ । ଆଗ୍ନୀଧ୍ର ଇଧ୍ମଜିହ୍ୱ, ଯଜ୍ଞବାହୁ, ହିରଣ୍ୟରେତା, ଘୃତପୃଷ୍ଠ, ମେଧାତିଥି ଓ ବୀତିହୋତ୍ର ଏହି ସପ୍ତପୁତ୍ର କ୍ରମାନ୍ୱୟରେ ଜମ୍ବୁଦ୍ୱୀପ, ପ୍ଲକ୍ଷଦ୍ୱୀପ, ଶାଲ୍ମଳିଦ୍ୱୀପ କୁଶଦ୍ୱୀପ, କ୍ରୌଞ୍ଚଦ୍ୱୀପ, ଶାକଦ୍ୱୀପ ଓ ପୁଷ୍କର ଦ୍ୱୀପର ଅଧିପତି ହୋଇଥିଲେ । କବି, ମହାବୀର ଓ ସବନ ଏହି ତିନିଜଣ ପୁତ୍ର ଆଜନ୍ମ ବ୍ରହ୍ମଚାରୀ ଥିଲେ । ତେଣୁ ସେମାନେ ଆତ୍ମବେତ୍ତା ହୋଇ ପରମହଂସ ହୋଇଗଲେ ।

ମହାରାଜା ପ୍ରିୟବ୍ରତଙ୍କର ଅଭାବ ବୋଲି କିଛି ନ ଥିଲା । ତାଙ୍କର ଥିଲା ସୁବୃହତ୍ ଅଖଣ୍ଡ ସାମ୍ରାଜ୍ୟ, ସମ୍ପୂର୍ଣ୍ଣ ଭୂମଣ୍ଡଳର ଐଶ୍ୱର୍ଯ୍ୟ ଏବଂ ପୁତ୍ର, ପୁତ୍ରୀ, ସ୍ତ୍ରୀ ଆଦି ସମସ୍ତ ସୁଖ । ଏପରିକି ସ୍ୱର୍ଗାଦି ଲୋକ ସମୂହର ଲୋକପାଳଗଣ ତାଙ୍କର ପରମ ମିତ୍ର ଥିଲେ । ଏସବୁ ସତ୍ତ୍ୱେ, ଭଗବାନଙ୍କର ପରମଭକ୍ତ ପ୍ରିୟବ୍ରତ କେବେହେଲେ ମୋହଗ୍ରସ୍ତ ହୋଇ ନ ଥିଲେ । ବରଂ, ନିଜକୁ ଗୃହାସକ୍ତ ଓ କାମ୍ୟାଶକ୍ତ ବୋଲି ମନେକରି ସେ ସର୍ବଦା ନିଜକୁ ଧିକ୍କାର କରୁଥିଲେ । ତେଣୁ ପୁତ୍ରମାନଙ୍କ ହସ୍ତରେ ରାଜ୍ୟ ଅର୍ପଣ କରି ତଥା ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟ ପରିତ୍ୟାଗ କରି ସେ ପୁନଶ୍ଚ ତପସ୍ୟା କରିବା ନିମନ୍ତେ ଗନ୍ଧମାର୍ଦ୍ଦନ ପର୍ବତ ଉପରେ ରହୁଥିବା ନାରଦଙ୍କ ନିକଟକୁ ଚାଲିଗଲେ । ତାଙ୍କର ଅବଶିଷ୍ଟ ଜୀବନ ଭଗବଦ୍ ଚିନ୍ତନ ଓ ଭଗବଦ୍ ଧ୍ୟାନରେ ବ୍ୟୟିତ ହୋଇଥିଲା । କର୍ମ, ପୁଣ୍ୟ ଓ ଯୋଗଦ୍ୱାରା ତାଙ୍କୁ ପୃଥିବୀ ଓ ସ୍ୱର୍ଗାଦିଲୋକର ସମସ୍ତ ଭୋଗ ପ୍ରାପ୍ତ ହୋଇଥିଲା । କିନ୍ତୁ ସେହି ପରମ ଭାଗବତ ସେ ସବୁକୁ ନରକର ଭୋଗ ବୋଲି ମନେ କରି ପରିତ୍ୟାଗ କରିଥିଲେ । ବାସ୍ତବରେ ଯେଉଁ ମହାପୁରୁଷଙ୍କର ଚିତ୍ତ ଭଗବାନ ଅନନ୍ତ ସୁଧାସିନ୍ଧୁରେ ନିମଗ୍ନ ହୋଇପାରେ, ସେ ହିଁ କେବଳ ଏପରି ମହାନ୍ ତ୍ୟାଗ କରି ପାରନ୍ତି ।

---

# ବ୍ରହ୍ମର୍ଷି ବଶିଷ୍ଠ

ସୃଷ୍ଟିର ପ୍ରଥମ କଳ୍ପରେ ବ୍ରହ୍ମର୍ଷି ବଶିଷ୍ଠ ଥିଲେ ବ୍ରହ୍ମାଙ୍କର ମାନସ ପୁତ୍ର । ପରେ ସେ ମିତ୍ରା ବରୁଣଙ୍କଠାରୁ ଉତ୍ପତ୍ତି ହୋଇଥିଲେ । ପୁନଶ୍ଚ ନିମିଙ୍କ ଶାପରେ ଦେହ ତ୍ୟାଗ କରି ସେ ଆଗ୍ନେୟ-ପୁତ୍ର ଭାବରେ ଜନ୍ମ ଗ୍ରହଣ କରିଥିଲେ । ସତୀ ଶିରୋମଣି ଭଗବତୀ ଅରୁନ୍ଧତୀ ଥିଲେ ତାଙ୍କର ଆଦର୍ଶ ପତ୍ନୀ । କଥିତ ଅଛି, ଦେଶବ୍ୟାପୀ ଦୁର୍ଭିକ୍ଷର କରାଳ କୋପରୁ ଜନସମାଜକୁ ରକ୍ଷା କରିବାପାଇଁ ସେ ମହାବିଭବଶାଳୀ କର୍ଦ୍ଦମ ଋଷିଙ୍କ କନ୍ୟା ଅରୁନ୍ଧତୀଙ୍କୁ ବିବାହ କରିଥିଲେ ଏବଂ ଜନସମାଜକୁ ଦୁର୍ଭିକ୍ଷ ହାତରୁ ଉଦ୍ଧାର କରିଥିଲେ ।

ସାଧନାରେ ସିଦ୍ଧିଲାଭ କରି ବ୍ରହ୍ମର୍ଷି ପଦ ଲାଭ କଲାପରେ ବ୍ରହ୍ମା ତାଙ୍କୁ ସୂର୍ଯ୍ୟବଂଶର ପୁରୋହିତ ହେବାପାଇଁ ଅନୁରୋଧ କରିଥିଲେ । କିନ୍ତୁ ବଶିଷ୍ଠ ପୁରୋହିତ କର୍ମ କରିବା ପାଇଁ ସ୍ପଷ୍ଟଭାବେ ମନା କରିଦେଲେ । କାରଣ ଶାସ୍ତ୍ରରେ ବ୍ରାହ୍ମଣମାନଙ୍କ ପକ୍ଷରେ ପୁରୋହିତ କର୍ମକୁ ଅତ୍ୟନ୍ତ ନିକୃଷ୍ଟ ବୋଲି ବର୍ଣ୍ଣନା କରାଯାଇଛି । ତା'ଛଡ଼ା ବଶିଷ୍ଠଙ୍କର ତ ଧନ ଲୋଭ ନ ଥିଲା କି ବିଷୟ ଭୋଗର କାମନା ନ ଥିଲା; ସେ କାହିଁକି ପୁରୋହିତ କର୍ମ କରିବାପାଇଁ ରାଜି ହୋଇଥାନ୍ତେ ? ପୁରୋହିତ କର୍ମ ପାଇଁ ବଶିଷ୍ଠଙ୍କର ଅନିଚ୍ଛାଭାବ ଦେଖି ବ୍ରହ୍ମା କହିଲେ— "ପ୍ରିୟପୁତ୍ର ! ଏହି ସୂର୍ଯ୍ୟବଂଶରେ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ରାମଚନ୍ଦ୍ର ଜନ୍ମଲାଭ କରିବେ । ତୁମେ ତାଙ୍କ ଗୁରୁର ଗୌରବଶାଳୀ ପଦ ପ୍ରାପ୍ତ ହୋଇ ନିଜର ଜୀବନକୁ କୃତାର୍ଥ କରି ପାରିବ । ତେଣୁ ଏହି ମହିମାମୟ ବଂଶର ପୁରୋହିତ ହେବା ପାଇଁ ତୁମେ ଆଉ ଅସ୍ୱୀକାର କର ନାହିଁ ।"

ବ୍ରହ୍ମାଙ୍କ ଆଜ୍ଞା ପାଳନ କରି ବଶିଷ୍ଠ ସୂର୍ଯ୍ୟବଂଶର ପୁରୋହିତ ହେବାପାଇଁ ସ୍ୱୀକୃତ ହେଲେ ।

ପ୍ରଥମେ ସେ ସମଷ୍ଟି ସୂର୍ଯ୍ୟବଂଶର ପୁରୋହିତ ହୋଇଥିଲେ । କିନ୍ତୁ ନିମିଙ୍କ ସହିତ ବିବାଦ ସେ ସମଷ୍ଟି ସୂର୍ଯ୍ୟବଂଶର ପୁରୋହିତ-କର୍ମ ପରିତ୍ୟାଗ କରି ସୂର୍ଯ୍ୟବଂଶର ଏକ ଶାଖା ଇକ୍ଷ୍ୱାକୁ ବଂଶର ପୌରୋହିତ୍ୟ କରିବାପାଇଁ ଅଯୋଧ୍ୟା ପୁରକୁ ଚାଲି ଆସିଲେ ଏବଂ ସେଠାରେ ଗୋଟିଏ ଆଶ୍ରମ ପ୍ରତିଷ୍ଠା କରି ସେହି ଆଶ୍ରମରେ ବସବାସ କରିବାକୁ ଲାଗିଲେ । ସେଠାରେ ସେ ଇକ୍ଷ୍ୱାକୁ ବଂଶର ପୁରୋହିତ ଭାବରେ ପ୍ରତିଷ୍ଠା ଅର୍ଜନ କରିଥିଲେ । ଯେତେବେଳେ ରାଜ୍ୟରେ ଅନାବୃଷ୍ଟି ହେଉଥିଲା, ସେତେବେଳେ ସେ ନିଜର ତପୋବଳରେ ବୃଷ୍ଟି କରାଇ ଲୋକମାନଙ୍କର

ଦୁର୍ଦ୍ଦଶା ଦୂର କରୁଥିଲେ । ଅଯୋଧ୍ୟାର ରାଜବଂଶକୁ ସେ କୌଣସି ସଙ୍କଟ ଆସିବାକୁ ଦେଉ ନ ଥିଲେ । ତାଙ୍କର ତପୋବଳ ହେତୁ ଅଯୋଧ୍ୟା ସମସ୍ତ ବିପଦରୁ ମୁକ୍ତ ହୋଇଥିଲା । ଯେତେବେଳେ ମହାରାଜା ଭଗୀରଥ କଠୋର ତପସ୍ୟା କରି ମଧ୍ୟ ଗଙ୍ଗାଙ୍କୁ ଭୂତଳକୁ ଆଣି ନ ପାରି ନିରାଶ ହୋଇ ପଡ଼ିଥିଲେ, ସେତେବେଳେ ବଶିଷ୍ଠ ହିଁ ତାଙ୍କୁ ମନ୍ତ୍ର ପ୍ରଦାନ କରି ପୁନଃ ପୁନଃ ତପସ୍ୟା କରିବାକୁ ଉତ୍ସାହିତ କରିଥିଲେ । ଯେତେବେଳେ ମହାରାଜା ଦିଲୀପଙ୍କର କୌଣସି ସନ୍ତାନ ହେଉ ନ ଥିଲା, ସେତେବେଳେ ବଶିଷ୍ଠହିଁ ତାଙ୍କୁ ନନ୍ଦିନୀ ଗାଈର ସେବା କରିବା ପାଇଁ ଉପଦେଶ ଦେଇଥିଲେ । ବଶିଷ୍ଠଙ୍କର ଉପଦେଶାନୁସାରେ ଦିଲୀପ ନନ୍ଦିନୀ ଗାଈର ସେବା କରି ଏକ ସର୍ବଗୁଣ ସମ୍ପନ୍ନ ସନ୍ତାନ ଲାଭ କରିଥିଲେ ।

ଥରେ ରାଜା ବିଶ୍ୱାମିତ୍ର ନିଜ ସେନାମାନଙ୍କ ସହିତ ବଶିଷ୍ଠଙ୍କର ଅତିଥି ହୋଇଥିଲେ । ବଶିଷ୍ଠଙ୍କ ଆଶ୍ରମରେ କାମଧେନୁ ନାମକ ଏକ ସର୍ବଅଭୀଷ୍ଟ ପୂରଣକାରିଣୀ ଧେନୁ ଅବସ୍ଥାନ କରୁଥିଲା । ସେହି କାମଧେନୁ ସହାୟତାରେ ବଶିଷ୍ଠ ନାନା ପ୍ରକାର ସୁମିଷ୍ଟ ଭୋଜନ ସାମଗ୍ରୀ ସୃଷ୍ଟି କରି ବିଶ୍ୱାମିତ୍ର ଓ ତାଙ୍କ ସେନାମାନଙ୍କର ସତ୍କାର କରିଥିଲେ । ବିଶ୍ୱାମିତ୍ର ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ କାମଧେନୁ ପରି ସର୍ବଗୁଣ ସମ୍ପନ୍ନ ଗାଈକୁ ନିଜ ରାଜ୍ୟକୁ ନେବା ପାଇଁ ଉଦ୍ୟତ ହେଲେ । କିନ୍ତୁ କୌଣସି ମୂଲ୍ୟ କିମ୍ବା ପଦାର୍ଥ ବଦଳରେ ବଶିଷ୍ଠ ଗାଈ ବିକ୍ରୀ କରିବାକୁ ରାଜି ହେଲେ ନାହିଁ । ଏହାଦେଖି ବିଶ୍ୱାମିତ୍ର ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ବଳପୂର୍ବକ ଗାଈ ହରଣ କରିବାକୁ ଉଦ୍ୟତ ହେଲେ । କିନ୍ତୁ ବଶିଷ୍ଠ ନିଜର ବ୍ରହ୍ମବଳ ସାହାଯ୍ୟରେ ଅପାର ସୈନ୍ୟ ସୃଷ୍ଟି କରି ବିଶ୍ୱାମିତ୍ରଙ୍କୁ ପରାଜିତ କରିଦେଲେ । ପରାଜିତ ହେବାପରେ ବିଶ୍ୱାମିତ୍ରଙ୍କର ଦ୍ୱେଷ ଓ କ୍ରୋଧ ଅଧିକ ବଢ଼ିବାକୁ ଲାଗିଲା । ବାହୁବଳ ଅପେକ୍ଷା ବ୍ରହ୍ମବଳ ଯେ ଅଧିକ, ଏହା ଉପଲବ୍ଧି କରି ସେ ତପସ୍ୟା କରିବାକୁ ମନସ୍ଥ କଲେ । ସେଠାରୁ ଫେରି ସେ କଠୋର ତପସ୍ୟା କରିବାକୁ ଲାଗିଲେ ଏବଂ ଭଗବାନ ଶଙ୍କରଙ୍କୁ ସନ୍ତୁଷ୍ଟ କରି ନାନା ପ୍ରକାର ଦିବ୍ୟାସ୍ତ୍ର ପ୍ରାପ୍ତ ହେଲେ । ସେହି ସମସ୍ତ ଦିବ୍ୟାସ୍ତ୍ର ଧରି ସେ ପୁନଶ୍ଚ ବଶିଷ୍ଠଙ୍କ ନିକଟକୁ ଆସିଲେ; କିନ୍ତୁ ବଶିଷ୍ଠଙ୍କର ବ୍ରହ୍ମଦଣ୍ଡ ଆଗରେ ସେ ସବୁ ଦିବ୍ୟାସ୍ତ୍ର ନିଷ୍ଫଳ ହୋଇଗଲା । ତେଣୁ ଉଗ୍ରତପ କରି ବ୍ରାହ୍ମଣତ୍ୱ ଲାଭ କରିବାକୁ ସେ ମନସ୍ଥ କଲେ ।

ଯେତେ ତପସ୍ୟା କଲେ ମଧ୍ୟ ବିଶ୍ୱାମିତ୍ରଙ୍କର ତପଶକ୍ତି ବଶିଷ୍ଠଙ୍କର ବ୍ରହ୍ମଶକ୍ତି ଆଗରେ ହାର ମାନିଲା । ତେଣୁ ସେ କ୍ରୋଧାନ୍ଧ ହୋଇ ବଶିଷ୍ଠଙ୍କର ଏକଶତପୁତ୍ରଙ୍କୁ ଅତି ନିର୍ମମଭାବରେ ହତ୍ୟାକଲେ । କିନ୍ତୁ ବଶିଷ୍ଠ ଥିଲେ କ୍ଷମାର ମୂର୍ତ୍ତିମନ୍ତ ଅବତାର । ନିଜର ପୁତ୍ରମାନଙ୍କୁ ହରାଇ ମଧ୍ୟ ସେ ବିଶ୍ୱାମିତ୍ରଙ୍କ ପ୍ରତି କ୍ରୋଧଭାବ ପ୍ରକାଶ କରି ନ ଥିଲେ । ଦିନେ ରାତ୍ରିକାଳରେ ବଶିଷ୍ଠଙ୍କୁ ହତ୍ୟା କରିବାପାଇଁ ବିଶ୍ୱାମିତ୍ର ଖଡ୍ଗ ହସ୍ତରେ ରାତ୍ରିର ଅନ୍ଧକାର ମଧ୍ୟରେ ଲୁଚି ଲୁଚି ଆସି

ବଶିଷ୍ଠଙ୍କ ଆଶ୍ରମ ନିକଟରେ ଉପସ୍ଥିତ ହେଲେ । ସେହି ସମୟରେ ସେ ବଶିଷ୍ଠ ଓ ଅରୁନ୍ଧତୀଙ୍କ ମଧ୍ୟରେ ହେଉଥିବା କଥୋପକଥନ ଶୁଣିବାକୁ ପାଇଲେ । ବଶିଷ୍ଠ କହୁଥିଲେ, "ଏପରି ସୁନ୍ଦର ଚାନ୍ଦନୀ ରାତିରେ ତପସ୍ୟା ଦ୍ୱାରା ଭଗବାନଙ୍କୁ ସନ୍ତୁଷ୍ଟ କରିବାର ପ୍ରଯତ୍ନ କେବଳ ବିଶ୍ୱାମିତ୍ରଙ୍କ ପରି ଭାଗ୍ୟବାନ ବ୍ୟକ୍ତି ହିଁ କରି ପାରନ୍ତି ।"

ଏକଥା ଶୁଣି ବିଶ୍ୱାମିତ୍ର ସ୍ତମ୍ଭୀଭୂତ ହୋଇଗଲେ । ଏକାନ୍ତରେ ଶତ୍ରୁର ପ୍ରଶଂସା କରୁଥିବା ମନୁଷ୍ୟ କ'ଣ ସାଧାରଣ ମାନବ ? ସେତ ମହାମାନବ ! ବଶିଷ୍ଠଙ୍କର ମହାନତା ଆଗରେ ବିଶ୍ୱାମିତ୍ରଙ୍କର ସମସ୍ତ କ୍ରୋଧ ଦୂର ହୋଇଗଲା । ବଶିଷ୍ଠଙ୍କର ଶତପୁତ୍ର ହତ୍ୟା କରିଥିବାରୁ ସେ ପଶ୍ଚାତ୍ତାପ କରିବାକୁ ଲାଗିଲେ । ଅବିଲମ୍ବେ ଖଡ଼୍ଗ ଦୂରକୁ ନିକ୍ଷେପ କରି ସେ ଆଶ୍ରମ ମଧ୍ୟରେ ପ୍ରବେଶ କଲେ ଏବଂ ବଶିଷ୍ଠଙ୍କ ପାଦତଳେ ପ୍ରଣାମ କରି ତାଙ୍କୁ ବ୍ରହ୍ମଜ୍ଞାନ ପ୍ରଦାନ କରିବାକୁ ଅନୁରୋଧ କଲେ । କିନ୍ତୁ ବଶିଷ୍ଠ କହିଲେ ଯେ କେବଳ ଅନନ୍ତ ଦେବହିଁ ତାଙ୍କୁ ବ୍ରହ୍ମଜ୍ଞାନ ଦେଇ ପାରିବେ । ତେଣୁ ଅନନ୍ତଦେବଙ୍କ ନିକଟକୁ ଯାଇ ବ୍ରହ୍ମଜ୍ଞାନ ପାଇଁ ପ୍ରାର୍ଥନା କରିବା ଉଚିତ ।

ବଶିଷ୍ଠଙ୍କର ଉପଦେଶାନୁସ ରେ ବିଶ୍ୱାମିତ୍ର ଅନନ୍ତଦେବଙ୍କ ନିକଟକୁ ଗମନ କଲେ । ସେଠାରେ ସେ ଦେଖିଲେ ଯେ ଅନନ୍ତଦେବ ସହସ୍ର ଫଣା ମେଲି ପୃଥିବୀକୁ ଧାରଣ କରି ଅଛନ୍ତି । ସେ ଅନନ୍ତଦେବଙ୍କୁ ବ୍ରହ୍ମଜ୍ଞାନ ପାଇଁ ନିବେଦନ କଲେ । ଅନନ୍ତଦେବ କହିଲେ— "ତୁମେ ଯଦି ନିଜ ହସ୍ତରେ ପୃଥିବୀକୁ ଅବିଚଳ ଭାବରେ ଧାରଣ କରି ପାରିବ, ତେବେ ମୁଁ ତୁମକୁ ବ୍ରହ୍ମଜ୍ଞାନ ପ୍ରଦାନ କରିବ ।" ବିଶ୍ୱାମିତ୍ର ପୃଥିବୀକୁ ଧାରଣ କରିବାପାଇଁ ହସ୍ତ ପ୍ରସାରଣ କଲେ । କିନ୍ତୁ ଅନନ୍ତଦେବ ପୃଥିବୀକୁ ତାଙ୍କ ହାତକୁ ବଢ଼ାଇ ଦେବାମାତ୍ରେ ତାଙ୍କ ହାତ ପୃଥିବୀର ଭାର ସମ୍ଭାଳି ପାରିଲା ନାହିଁ । ତେଣୁ ପୃଥିବୀ ଶୂନ୍ୟେ ଶୂନ୍ୟେ ଘୂରିବାକୁ ଲାଗିଲା । ଏହା ଫଳରେ ପୃଥିବୀର କୋଟି କୋଟି ଜୀବଜନ୍ତୁ 'ରକ୍ଷାକର' 'ରକ୍ଷାକର' ଶବ୍ଦରେ ଗଗନ ପବନ ନିନାଦିତ କରି ଦେଲେ । ନିଜେ ବିଶ୍ୱାମିତ୍ର ମଧ୍ୟ 'ରକ୍ଷାକର', 'ରକ୍ଷାକର' ଶବ୍ଦରେ ଅନନ୍ତ ଦେବଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ଅନନ୍ତଦେବ କହିଲେ —"ତୁମେ ଯଦି ଜୀବନରେ କେବେ ସତ୍ସଙ୍ଗ ଲାଭ କରିଥାଅ, ତେବେ ତାହା ସ୍ମରଣକର ।" ବିଶ୍ୱାମିତ୍ର ବଶିଷ୍ଠଙ୍କର ନାମ ସ୍ମରଣ କରିବା ମାତ୍ରେ ପୃଥିବୀ ତାଙ୍କ ହସ୍ତରେ ସ୍ଥିର ହେଲା ।

ଏହାଦେଖି ଅନନ୍ତଦେବ କହିଲେ—"ଯାହାଙ୍କ ନାମ ସ୍ମରଣ କରିବାମାତ୍ରେ ପୃଥିବୀ ମହାପ୍ରଳୟରୁ ଉଦ୍ଧାର ପାଇଲା, ତାଙ୍କ ଛଡ଼ା ତୁମକୁ ଆଉ କିଏ ବ୍ରହ୍ମଜ୍ଞାନ ଦେଇ ପାରିବ ? ତୁମେ ତାଙ୍କ ନିକଟକୁ ହିଁ ଫେରିଯାଅ ।"

ଅନନ୍ତର ବିଶ୍ୱାମିତ୍ର ବଶିଷ୍ଠଙ୍କ ନିକଟକୁ ଫେରି ଆସି ତାଙ୍କ ପାଦତଳେ ଲୁଣ୍ଠିତ ହୋଇ ପଡ଼ିଲେ । ବଶିଷ୍ଠ ବିଶ୍ୱାମିତ୍ରଙ୍କ ହାତଧରି କହିଲେ – "ଉଠ, ବ୍ରହ୍ମର୍ଷି, ଉଠ ।"

ସେହିଦିନଠାରୁ ବିଶ୍ୱାମିତ୍ର ବ୍ରହ୍ମର୍ଷି ପଦ ଲାଭକରି ବ୍ରହ୍ମଜ୍ଞାନର ଅଧିକାରୀ ହେଲେ । କାଳକ୍ରମେ ଭଗବାନ ରାମଚନ୍ଦ୍ର ମହାରାଜା ଦଶରଥଙ୍କର ପୁତ୍ରଭାବରେ ଅଯୋଧ୍ୟାରେ ଜନ୍ମ ଗ୍ରହଣ କଲେ । ରାମଚନ୍ଦ୍ରଙ୍କୁ ଶିଷ୍ୟଭାବରେ ପାଇ ବଶିଷ୍ଠଙ୍କର ପୁରୋହିତ ପଦ ଧନ୍ୟ ହୋଇଥିଲା । ଜ୍ଞାନର ଭଣ୍ଡାର ସ୍ୱରୂପ "ଯୋଗ ବାଶିଷ୍ଠ" ଗ୍ରନ୍ଥ ପ୍ରଣୟନ କରି ତାହା ସେ ଭଗବାନ୍ ରାମଚନ୍ଦ୍ରଙ୍କୁ ଉପଦେଶ ଦେଇଥିଲେ । ତାଙ୍କର ଅନ୍ୟ ଏକ ଗ୍ରନ୍ଥ "ବଶିଷ୍ଠ ସଂହିତା"ରେ କର୍ମର ମହତ୍ତ୍ୱ ଓ ଆଚରଣର ଆଦର୍ଶ ପ୍ରକାଶିତ ହୋଇଥିଲା ।

ଭଗବାନ ରାମଚନ୍ଦ୍ରଙ୍କ ପ୍ରେମରେ ବଶିଷ୍ଠଙ୍କର ଜୀବନ ଗଢ଼ା ହୋଇଥିଲା । ଭଗବାନଙ୍କ ଗୁରୁ ହେବାର ଗୌରବ କେବଳ ବଶିଷ୍ଠଙ୍କ ପରି ବ୍ରହ୍ମଦ୍ରଷ୍ଟା ମହାପୁରୁଷଙ୍କୁ ହିଁ ମିଳିଥାଏ ।

ବର୍ତ୍ତମାନ ଯୁଗରେ ମଧ୍ୟ ସ୍ୱପତ୍ନୀ ଅରୁନ୍ଧତୀଙ୍କ ସହିତ ସପ୍ତର୍ଷି ମଣ୍ଡଳରେ ଅବସ୍ଥାନ କରି ବ୍ରହ୍ମର୍ଷି ବଶିଷ୍ଠ ଜଗତର କଲ୍ୟାଣ କରୁଅଛନ୍ତି ।

———

# ମହର୍ଷି ଅତ୍ରି

ମହର୍ଷି ଅତ୍ରି ଥିଲେ ବ୍ରହ୍ମାଙ୍କର ମାନସପୁତ୍ର ଓ ପ୍ରଜାପତିମାନଙ୍କ ମଧ୍ୟରେ ଅନ୍ୟତମ । ସେ ଦକ୍ଷିଣ ଦେଶରେ ଅବସ୍ଥାନ କରୁଥିଲେ । ତାଙ୍କର ପତ୍ନୀ ଅନସୂୟା ଥିଲେ ଭଗବାନ କପିଳଙ୍କର ଭଗିନୀ ଏବଂ କର୍ଦ୍ଦମ-ଦେବହୂତିଙ୍କର କନ୍ୟା । ଯେପରି ମହର୍ଷି ଅତ୍ରି ନିଜ ନାମ ଅନୁସାରେ ତ୍ରିଗୁଣାତୀତ ପରମ ଭକ୍ତ ଥିଲେ, ସେହିପରି ଅନସୂୟାଥିଲେ ଅସୂୟା ରହିତ ଓ ଭକ୍ତିମତୀ । ବ୍ରହ୍ମା ଏହି ଆଦର୍ଶ ଦମ୍ପତିଙ୍କୁ ସୃଷ୍ଟି କରିବାପାଇଁ ନିର୍ଦ୍ଦେଶ ଦେଇଥିଲେ । କିନ୍ତୁ ଏହି ଦମ୍ପତି ସୃଷ୍ଟି କରିବା ପୂର୍ବରୁ ପ୍ରଥମେ ତପସ୍ୟା କରିବାକୁ ମନସ୍ଥ କରିଥିଲେ ଏବଂ ତଦନୁସାରେ କଠୋର ତପସ୍ୟାରେ ନିମଗ୍ନ ହୋଇଥିଲେ । ସନ୍ତାନୋତ୍ପାଦନ ସେମାନଙ୍କର ତପସ୍ୟାର ଲକ୍ଷ୍ୟ ନଥିଲା; ବରଂ ସ୍ୱଚକ୍ଷୁରେ ଭଗବାନଙ୍କୁ ଦର୍ଶନ କରିବାର କାମନା ରଖି ସେମାନେ ତପସ୍ୟାରେ ବ୍ରତୀ ହୋଇଥିଲେ । ସେମାନଙ୍କର ପ୍ରେମ ଓ ଶ୍ରଦ୍ଧା ପୂର୍ବକ ଦୀର୍ଘକାଳୀନ ତପସ୍ୟାରେ ଆକୃଷ୍ଟ ହୋଇ ସ୍ୱୟଂ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର, ଏକ ସମୟରେ ଆସି ସେମାନଙ୍କ ନିକଟରେ ଉପସ୍ଥିତ ହେଲେ । କିନ୍ତୁ ସେ ସମୟରେ ମହର୍ଷି ଅତ୍ରି ଓ ଅନସୂୟା ଭଗବଦ୍ ଚିନ୍ତନରେ ଏପରି ତଲ୍ଲୀନ ହୋଇ ଯାଇଥିଲେ ଯେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କର ଆଗମନ ବିଷୟ ଜାଣି ପାରିଲେ ନାହିଁ । ଯେତେବେଳେ ବ୍ରହ୍ମା ସେମାନଙ୍କୁ ଜାଗରିତ କଲେ ସେତେବେଳେ ସେମାନେ ସମ୍ମୁଖରେ ବ୍ରହ୍ମା,ବିଷ୍ଣୁ ଓ ମହେଶ୍ୱରଙ୍କୁ ଏକକାଳୀନ ଦର୍ଶନକରି ଆନନ୍ଦରେ ଅଭିଭୂତ ହୋଇ ପଡ଼ିଲେ ଏବଂ ପୁଲକିତ ବପୁ ହୋଇ ସେମାନଙ୍କର ପାଦ ପଦ୍ମରେ ଲୋଟି ପଡ଼ିଲେ । ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ସେହି ଆଦର୍ଶ ଦମ୍ପତିଙ୍କର ସତ୍ୟ, ପ୍ରେମ ଓ ନିଷ୍ଠା ଦେଖି ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ସେମାନଙ୍କୁ ବର ପ୍ରାର୍ଥନା କରିବାକୁ ଅନୁରୋଧ କଲେ । କିନ୍ତୁ ସେହି ଆଦର୍ଶ ଦମ୍ପତିଙ୍କ ମନରେ କୌଣସି ସାଂସାରିକ କାମନା ନଥିଲା । ସେମାନେ କେବଳ ବ୍ରହ୍ମାଙ୍କର ନିର୍ଦ୍ଦେଶ ବିଷୟରେ ଚିନ୍ତା କରୁଥିଲେ । ତେଣୁ ଭକ୍ତ ଗଦ୍ ଗଦ୍ ଭାବରେ ସେମାନେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱରଙ୍କୁ ସେମାନଙ୍କର ପୁତ୍ର ହେବାପାଇଁ ଅନୁରୋଧ କଲେ । ଭଗବାନ ସେମାନଙ୍କୁ "ଏବମସ୍ତୁ" ବୋଲି କହି ସେମାନଙ୍କର ଅନୁରୋଧ ରକ୍ଷା କରିଥିଲେ ।

ସମୟ କ୍ରମେ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ମହର୍ଷି ଅତ୍ରି ଓ ଅନସୂୟାଙ୍କର ପୁତ୍ର ରୂପରେ ଅବତାର ଗ୍ରହଣ କଲେ । ବିଷ୍ଣୁଙ୍କ ଅଂଶରୁ 'ଦତ୍ତାତ୍ରେୟ', ବ୍ରହ୍ମାଙ୍କ ଅଂଶରୁ, ଚନ୍ଦ୍ରମା' ଓ ଶିବଙ୍କ ଅଂଶରୁ' ଦୁର୍ବାସା' ଜନ୍ମ ଗ୍ରହଣ କରିଥିଲେ । ସେହି ଅନୁପମ ସୁନ୍ଦର ପୁତ୍ରମାନଙ୍କୁ ଲାଭକରି ଅତ୍ରି ଓ ଅନସୂୟାଙ୍କର ଜୀବନ ସଫଳ ହୋଇଥିଲା । ସେମାନେ ବାତ୍ସଲ୍ୟ ପ୍ରେମରେ

ଭଗବାନଙ୍କୁ ସନ୍ତୁଷ୍ଟ କରି ମାନବ ଜନ୍ମକୁ ସାର୍ଥକ କରିଥିଲେ । ବିଶେଷ କରି ଅନସୂୟା ଥିଲେ ବାତ୍ସଲ୍ୟରସର ଘନୀଭୂତ ବିଗ୍ରହ । ସେ ନିଜ ପୁତ୍ରମାନଙ୍କ ଆନନ୍ଦରେ ନିଜକୁ ହଜାଇ ଦେଇଥିଲେ । ତାଙ୍କର ପାତିବ୍ରତ୍ୟ, ସତୀତ୍ୱ ଓ ଭକ୍ତି ଥିଲା ଅନନ୍ୟ ସାଧାରଣ । ସେଥିପାଇଁ ଭଗବାନ ରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତାଙ୍କ ସହିତ ବନଗମନ ସମୟରେ ଅତ୍ରି ଆଶ୍ରମକୁ ଯିବାର ଲୋଭ ସମ୍ବରଣ କରିପାରି ନଥିଲେ । ନିଜ ଆଶ୍ରମରେ ଭଗବାନ ରାମଚନ୍ଦ୍ରଙ୍କୁ ଦର୍ଶନ କରି ଅତ୍ରି ଓ ଅନସୂୟା ପରମାନନ୍ଦ ଲାଭ କରିଥିଲେ ଏବଂ ନିଜରସୌଭାଗ୍ୟକୁ ବାରମ୍ବାର ପ୍ରଶଂସା କରିଥିଲେ । ଅତ୍ରି ସ୍ତୁତି ଗାନ କରି କହିଥିଲେ ।

"ନମାମି ଭକ୍ତ ବତ୍ସଳଂ । କୃପାଳୁ ଶୀଳ କୋମଳଂ ।
ଭଜାମି ତେ ପଦାମ୍ବୁଜଂ । ଅକାମିନାଂ ସ୍ୱଧାମଦଂ ।

ଅନସୂୟା ମଧ୍ୟ ଜଗତ୍ଜନନୀ ସୀତାଙ୍କୁ ଉପଦେଶ ଦେବାର ଗୌରବ ଅର୍ଜନ କରି ଥିଲେ ।

ମହର୍ଷି ଅତ୍ରି ଥିଲେ ମହାନ୍ ସାଧକ । ସେ ନିଜର ସାଧନା ବଳରେ ସପ୍ତର୍ଷିମଣ୍ଡଳରେ ସ୍ଥାନ ପାଇବାର ସୌଭାଗ୍ୟ ଲାଭ କରିଅଛନ୍ତି ।

——

# ମହର୍ଷି ଭୃଗୁ

କଥିତ ଅଛି ପ୍ରାଚୀନ କାଳରେ ବ୍ରହ୍ମା ବରୁଣଙ୍କର ଏକ ଯଜ୍ଞ ଅନୁଷ୍ଠାନ କରିଥିଲେ । ସେହି ଯଜ୍ଞାଗ୍ନିରୁ ମହର୍ଷି ଭୃଗୁ ଜନ୍ମଲାଭ କରିଥିବାରୁ ତାଙ୍କୁ ବରୁଣଙ୍କର ପୁତ୍ର ଭାବରେ ଗ୍ରହଣ କରାଯାଏ । ବିଷ୍ଣୁପୁରାଣ ଅନୁସାରେ ଭୃଗୁ ହେଉଛନ୍ତି ବ୍ରହ୍ମାଙ୍କର ମାନସ ପୁତ୍ର । ମନୁ ସଂହିତା ଅନୁସାରେ ଦଶଜଣ ପ୍ରଜାପତିଙ୍କ ମଧ୍ୟରେ ଭୃଗୁ ଅନ୍ୟତମ । ଚାକ୍ଷୁଷ ମନ୍ୱନ୍ତରରେ ସପ୍ତର୍ଷିଙ୍କ ମଧ୍ୟରେ ଭୃଗୁଙ୍କ ଗଣନା କରାଯାଏ । ତପସ୍ୟାରେ ସିଦ୍ଧିଲାଭ କରିଥିବାରୁ ଋଷିମାନଙ୍କ ମଧ୍ୟରେ ତାଙ୍କର ଅମିତ ପ୍ରଭାବ ଥିଲା । ମହାଯଶସ୍ୱୀ ମହିଳା ପୁଲୋମା ଥିଲେ ତାଙ୍କର ଆଦର୍ଶ ପତ୍ନୀ । ତାଙ୍କ ଗର୍ଭରୁ ମହର୍ଷି ଚ୍ୟବନ ଜନ୍ମଲାଭ କରିଥିଲେ । ତାଙ୍କର ପୁତ୍ର ମଧ୍ୟ ଥିଲେ ଋଚିକ ମୁନି, ପୌତ୍ର ଥିଲେ ଜମଦଗ୍ନି ଓ ପ୍ରପୌତ୍ର ଥିଲେ ପରଶୁରାମ । ଭୃଗୁବଂଶରୁ ଜାତ ହୋଇ-ଥିବାରୁ ପରଶୁରାମଙ୍କୁ ଭାର୍ଗବ ବୋଲି କୁହାଯାଏ ।

ପ୍ରତିଦିନ ତର୍ପଣ କରିବା ସମୟରେ ଭୃଗୁଙ୍କ ଉଦ୍ଦେଶ୍ୟରେ ତର୍ପଣ କରିବାର ବିଧି ଏବେ ମଧ୍ୟ ପ୍ରଚଳିତ ଅଛି । ଭୃଗୁ ଥିଲେ ଧନୁର୍ବେଦ ବିଦ୍ୟାର ପ୍ରବର୍ତ୍ତକ । ତାଙ୍କ କନ୍ୟା ଶ୍ରୀଙ୍କୁ ଭଗବାନ ନାରାୟଣ ବିବାହ କରିଥିଲେ । ନିଜର ଜୀବଦ୍ଦଶା ମଧ୍ୟରେ ସେ ଅନେକ ଯଜ୍ଞ ଅନୁଷ୍ଠାନ କରିଥିଲେ । ଯେଉଁମାନଙ୍କର ସନ୍ତାନ ହେଉ ନ ଥିଲା, ନିଜର ତପସ୍ୟା ବଳରେ ସେମାନଙ୍କୁ ସେ ସନ୍ତାନ ପ୍ରଦାନ କରୁଥିଲେ । ଶ୍ରାବଣ ଓ ଭାଦ୍ର, ଏହି ଦୁଇ ମାସରେ ସେ ଭଗବାନ ସୂର୍ଯ୍ୟଙ୍କ ରଥରେ ନିବାସ କରନ୍ତି ବୋଲି ଲୋକ ପ୍ରସିଦ୍ଧି ଅଛି । ପ୍ରାୟତଃ ସବୁ ପୁରାଣରେ ଭୃଗୁଙ୍କ ବିଷୟ ବର୍ଣ୍ଣନା କରାଯାଇଛି । ତାଙ୍କର ଅତୁଳନୀୟ ଜୀବନ ଚରିତ ବର୍ଣ୍ଣନା କରିବା ସ୍ୱଳ୍ପ ପରିସର ମଧ୍ୟରେ ସମ୍ଭବପର ନୁହେଁ । ତାଙ୍କ ଜୀବନର ଏକ ମହନୀୟ ଚରିତ ଏଠାରେ ମାତ୍ର ବର୍ଣ୍ଣିତ ହେଉଛି ।

ଥରେ ସରସ୍ୱତୀ ନଦୀ ତଟରେ ଋଷିମାନଙ୍କର ଏକ ବଡ଼ ବୈଠକ ବସିଥିଲା । ସେଥିରେ ବ୍ରହ୍ମା, ବିଷ୍ଣୁ ଓ ମହେଶ—ଏହି ତିନିଜଣଙ୍କ ମଧ୍ୟରେ କିଏ ସବୁଠାରୁ ବଡ଼ ସେ ବିଷୟରେ ବାଦାନୁବାଦ ହେଉଥିଲା । କିନ୍ତୁ କୌଣସି ସନ୍ତୋଷ ଜନକ ସମାଧାନ ହୋଇ ପାରୁ ନ ଥିଲା । ଶେଷରେ ଋଷିମାନେ ମିଶି ଏହି ବିଷୟର ଉଚିତ ଅନୁସନ୍ଧାନ ପାଇଁ ମହର୍ଷି ଭୃଗୁଙ୍କ ଉପରେ ଦାୟିତ୍ୱ ଅର୍ପଣ କଲେ । ଭୃଗୁ ପ୍ରଥମେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ସଭାକୁ ଗମନ କଲେ, କିନ୍ତୁ ସେଠାରେ ସେ ବ୍ରହ୍ମାଙ୍କୁ ନମସ୍କାର ମଧ୍ୟ କଲେ ନାହିଁ । ଭୃଗୁ ଥିଲେ ବ୍ରହ୍ମାଙ୍କର ମାନସ ପୁତ୍ର । ନିଜ ପୁତ୍ରର ଏପରି ଅନୁଚିତ ଆଚରଣ ତଥା ଔଦ୍ଧତ୍ୟ ଦର୍ଶନ କରି ବ୍ରହ୍ମାଙ୍କ ମନରେ ପ୍ରଚଣ୍ଡ କ୍ରୋଧ ଜାତ ହେଲା । କିନ୍ତୁ ସେ ତାହା ପ୍ରକାଶ ନ କରି ପୁତ୍ରଜ୍ଞାନରେ ଭୃଗୁଙ୍କୁ କ୍ଷମା କରିଦେଲେ । ଭୃଗୁ କିନ୍ତୁ ନିଜର ତପଃଶକ୍ତି ବଳରେ ବ୍ରହ୍ମାଙ୍କର ମନୋଭାବ ଜାଣି ପାରିଥିଲେ । ତାହାପରେ ମହେଶଙ୍କୁ ସାକ୍ଷାତ କରିବାକୁ କୈଳାସ ପର୍ବତକୁ ଗମନ କଲେ । ମହେଶ ଭୃଗୁଙ୍କୁ

ନିଜର ସନ୍ତାନଭାଇ ବୋଲି ମନେ କରୁଥିଲେ । ତେଣୁ ସେ ଭୃଗୁଙ୍କୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ତାଙ୍କୁ ଆଲିଙ୍ଗନ କରିବାପାଇଁ ତାଙ୍କ ନିକଟକୁ ଗମନ କଲେ । କିନ୍ତୁ ଭୃଗୁ ମହେଶଙ୍କୁ ଅବଜ୍ଞା କରି ତାଙ୍କର ଆଲିଙ୍ଗନକୁ ପ୍ରତ୍ୟାଖ୍ୟାନ କଲେ । ଏହା ଦେଖି ମହେଶ କ୍ରୋଧରେ ପ୍ରଜ୍ଜ୍ୱଳିତ ହୋଇ ଉଠିଲେ ଏବଂ ଭୃଗୁଙ୍କୁ ହତ୍ୟା କରିବାପାଇଁ ତ୍ରିଶୂଳ ହସ୍ତରେ ଧାବମାନ ହେଲେ । କିନ୍ତୁ ପାର୍ବତୀ ତାଙ୍କ ପାଦ ଧରି ନାନାବିଧ ସ୍ତୁତି ବାକ୍ୟରେ ତାଙ୍କର କ୍ରୋଧ ଶାନ୍ତ କରିଦେଲେ । ଅନନ୍ତର ଭୃଗୁ ଭଗବାନ ବିଷ୍ଣୁଙ୍କୁ ସାକ୍ଷାତ କରିବାକୁ ବୈକୁଣ୍ଠ ଲୋକକୁ ଗମନ କଲେ । ସେଠାରେ ଭକ୍ତ ଓ ବ୍ରାହ୍ମଣମାନଙ୍କର ପଥରୋଧ କରିବାର ବ୍ୟବସ୍ଥା ନ ଥିବାରୁ ସେ ସିଧାସଳଖ ଯାଇ ବିଷ୍ଣୁଙ୍କର ଶୟନ କକ୍ଷରେ ପହଞ୍ଚିଗଲେ । ସେତେବେଳେ ବିଷ୍ଣୁ ନିଦ୍ରାରେ ଶୟନ କରିଥିଲେ ଏବଂ ଲକ୍ଷ୍ମୀ ପଙ୍ଖାଧରି ତାଙ୍କର ସେବା କରୁଥିଲେ । ଭୃଗୁ ହଠାତ୍ ସେଠାରେ ପହଞ୍ଚି ଭଗବାନଙ୍କ ବକ୍ଷସ୍ଥଳରେ ପଦାଘାତ କଲେ । ଭୃଗୁଙ୍କର ପଦାଘାତ ହେତୁ ଭଗବାନଙ୍କର ନିଦ୍ରାଭଙ୍ଗ ହେଲା । ସେ ଭୃଗୁଙ୍କ ପାଦ ଉପରେ ଶିର ସ୍ଥାପନ କରି ବାରମ୍ବାର ନମସ୍କାର କଲେ ଏବଂ ନମ୍ର କଣ୍ଠରେ କହିଲେ –"ଭଗବାନ ! ଆସନ୍ତୁ । ଆପଣ ଏଠାକୁ ଆସିବେ ବୋଲି ମୁଁ ଜାଣି ପାରି ନ ଥିଲି । ସେଥିପାଇଁ ଆପଣଙ୍କୁ ସ୍ୱାଗତ କରି ପାରିଲି ନାହିଁ । ମୋତେ କ୍ଷମା ପ୍ରଦାନ କରନ୍ତୁ । କାହିଁ ଆପଣଙ୍କର ସୁକୋମଳ ପାଦପଦ୍ମ, ଆଉ କାହିଁ ମୋର ଏହି ବଜ୍ର କର୍କଶ ବକ୍ଷସ୍ଥଳ ! ମୋର ସୁକଠିନ ବକ୍ଷରେ ଆପଣଙ୍କର ସୁକୋମଳ ପାଦ ବାଜିବାରୁ ଆପଣଙ୍କୁ ନିଶ୍ଚୟ କଷ୍ଟ ହୋଇଥିବ ।" ଏହାକହି ଭଗବାନ ବିଷ୍ଣୁ ଭୃଗୁଙ୍କ ପାଦ ଆଉଁସିବାକୁ ଲାଗିଲେ ଏବଂ ଭାବ ଗଦ୍ ଗଦ୍ ହୋଇ ପୁନଶ୍ଚ କହିଲେ –"ହେ ମହାତ୍ମନ ! ଆଜି ଆପଣଙ୍କର କୃପା ଲାଭକରି ମୋର ଜୀବନ କୃତାର୍ଥ ହୋଇଗଲା । ଆଜିଠାରୁ ଆପଣଙ୍କର ଚରଣଧୂଳି ମୁଁ ସର୍ବଦା ମୋ ହୃଦୟରେ ଧାରଣ କରିବି ।"

ମହର୍ଷି ଭୃଗୁ ଭଗବାନ ବିଷ୍ଣୁଙ୍କର ବ୍ୟବହାରରେ ଅତ୍ୟନ୍ତ ସନ୍ତୋଷ ପ୍ରକାଶ କରି ଋଷିମାନଙ୍କ ନିକଟକୁ ଫେରି ଆସିଲେ ଏବଂ ଭାବପ୍ରବଣ ହୋଇ ନିଜର ଅପୂର୍ବ ଅନୁଭୂତି ବର୍ଣ୍ଣନା କରିବାକୁ ଲାଗିଲେ । ଋଷିମାନେ ଭୃଗୁଙ୍କ ଅନୁଭୂତି ଶ୍ରବଣ କରି ଏକ ସ୍ୱରରେ ମତବ୍ୟକ୍ତ କଲେ ଯେ ଭଗବାନ ବିଷ୍ଣୁ ହିଁ ସର୍ବଶ୍ରେଷ୍ଠ ଦେବତା ଏବଂ ତାଙ୍କର ପୂଜା ହିଁ ସର୍ବଶ୍ରେଷ୍ଠ ପୂଜା ।

ମହର୍ଷି ଭୃଗୁ ଥିଲେ ଭଗବାନଙ୍କର ଜଣେ ପରମଭକ୍ତ । ଭଗବାନଙ୍କ ସହିତ ତାଙ୍କର ପ୍ରତ୍ୟକ୍ଷ ସମ୍ବନ୍ଧ ଥିଲା । ସେଥିପାଇଁ ଭଗବାନଙ୍କର ବକ୍ଷଦେଶରେ ଭୃଗୁ ପଦଚିହ୍ନ ଅଦ୍ୟାବଧି ପରିଦୃଷ୍ଟ ହୁଏ ।

———

# ମହର୍ଷି ଋଭୁ

ମହର୍ଷି ଋଭୁ ଥିଲେ ବ୍ରହ୍ମାଙ୍କର ମାନସ ପୁତ୍ର । ସ୍ୱଭାବତଃ ସେ ବ୍ରହ୍ମତତ୍ତ୍ୱଜ୍ଞ ତଥା ନିବୃତ୍ତି ପରାୟଣ ଭକ୍ତ ଥିଲେ । ତଥାପି ମର୍ଯ୍ୟାଦା ରକ୍ଷା ପାଇଁ ସେ ଶ୍ରଦ୍ଧା ଭକ୍ତି ଯୁକ୍ତ ହୋଇ ନିଜର ଜ୍ୟେଷ୍ଠ ଭ୍ରାତା ସନତ୍ସୁଜାତଙ୍କର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସନତ୍ସୁଜାତଙ୍କ ଠାରୁ ସଂପ୍ରଦାୟଗତ ମନ୍ତ୍ର, ଯୋଗ ଓ ଜ୍ଞାନ ପ୍ରାପ୍ତ ହୋଇ ସେ ସର୍ବଦା ସହଜ ସ୍ଥିତିରେ ଅବସ୍ଥାନ କରୁଥିଲେ । ସେ ଯେ କୌଣସି ସ୍ଥାନରେ ମଧ୍ୟ ନିର୍ବିକାର ଚିତ୍ତରେ ରହି ପାରୁଥିଲେ । ତାଙ୍କର ଆଶ୍ରମ ବୋଲି କିଛି ନ ଥିଲା ।

ଥରେ ବୁଲି ବୁଲି ମହର୍ଷି ଋଭୁ ଆସି ପୁଲସ୍ତ୍ୟ ଋଷିଙ୍କ ଆଶ୍ରମ ସମୀପରେ ଉପସ୍ଥିତ ହେଲେ । ସେତେବେଳେ ପୁଲସ୍ତ୍ୟଙ୍କର ପୁତ୍ର ନିଦାଘ ବେଦାଧ୍ୟୟନରେ ରତ ଥିଲେ । ସେ ଋଭୁଙ୍କୁ ଦେଖି ଭକ୍ତି ସହକାରେ ନମସ୍କାର କଲେ । ମହର୍ଷି ଋଭୁ ନିଦାଘଙ୍କୁ ତପସ୍ୟାରେ ଉପଯୁକ୍ତ ଅଧିକାରୀ ବୋଲି ମନେ କରି ଦୟା ପରବଶ ହୋଇ କହିଲେ—"ଆତ୍ମଜ୍ଞାନ ଲାଭ ହିଁ ମନୁଷ୍ୟ ଜୀବନର ସର୍ବଶ୍ରେଷ୍ଠ ଲକ୍ଷ୍ୟ । ଯଦି ଆତ୍ମଜ୍ଞାନ ଲାଭ ପାଇଁ ପ୍ରୟାସ ନକରି କେବଳ ବେଦ ସମୂହକୁ ସଂପୂର୍ଣ୍ଣ ଭାବରେ ମୁଖସ୍ଥ କରାଯାଏ ଓ ଆବୃତ୍ତି କରାଯାଏ, ତେବେ ମନୁଷ୍ୟ ଜୀବନ ନିରର୍ଥକ ହେଲା ବୋଲି ମନେ କରିବାକୁ ହେବ । ହେ ନିଦାଘ ! ତୁମେ ଆତ୍ମଜ୍ଞାନ ଲାଭ ପାଇଁ ଯତ୍ନବାନ୍ ହୁଅ" ।

ମହର୍ଷି ଋଭୁଙ୍କ ଉପଦେଶ ଶୁଣି ନିଦାଘଙ୍କର ଜିଜ୍ଞାସା ବୃଦ୍ଧି ପାଇବାକୁ ଲାଗିଲା । ସେ ଋଭୁଙ୍କର ଶରଣ ଭିକ୍ଷା କରି ନିଜ ପିତାଙ୍କ ଆଶ୍ରମ ପରିତ୍ୟାଗ କଲେ ଏବଂ ଋଭୁଙ୍କ ସହିତ ଭ୍ରମଣ କରିବାକୁ ଲାଗିଲେ । ତାଙ୍କର ତ୍ୟାଗଭାବ ଓ ସେବାରେ ତନ୍ମୟତା ଦେଖି ଋଭୁ ତାଙ୍କୁ ତତ୍ତ୍ୱ-ଜ୍ଞାନ ଉପଦେଶ ଦେଇ କହିଲେ "ନିଦାଘ ! ବର୍ତ୍ତମାନ ତୁମେ ଗୃହସ୍ଥ ଧର୍ମ ଅବଲମ୍ବନ କର । ଗୃହରେ ରହି ତୁମେ ମୋର ଆଜ୍ଞା ପାଳନ କରିବ ଓ ତତ୍ତ୍ୱଜ୍ଞାନ ଅଭ୍ୟାସ କରିବ ।"

ଗୁରୁଦେବଙ୍କ ଆଜ୍ଞା ପାଳନ କରି ନିଦାଘ ନିଜ ପିତାଙ୍କ ଆଶ୍ରମକୁ ଫେରି ଆସିଲେ । ଗୃହସ୍ଥ ଧର୍ମରେ ତାଙ୍କର ଆଗ୍ରହ ଦେଖି ପୁଲସ୍ତ୍ୟ ଋଷି ତାଙ୍କୁ ବିବାହ କରାଇ ଦେଲେ । ବିବାହ ପରେ ନିଦାଘ ଦେବିକା ନଦୀ ତଟରେ ନିଜର ସ୍ୱତନ୍ତ୍ର ଆଶ୍ରମ ପ୍ରତିଷ୍ଠା କଲେ ଏବଂ ସେଠାରେ ନିଜ ପତ୍ନୀ ସହିତ ଅବସ୍ଥାନ କରି ଗୃହସ୍ଥ-ଧର୍ମ ପାଳନ କଲେ । କିନ୍ତୁ ଦିନକୁ ଦିନ ତାଙ୍କର ମନ ସଂସାର ପ୍ରତି ଆସକ୍ତ ହୋଇ ପଡ଼ିଲା ! ସେ ଗୁରୁଦେବଙ୍କ ଉପଦେଶ ବିସ୍ମୃତ ହୋଇ ତତ୍ତ୍ୱଜ୍ଞାନ ଅଭ୍ୟାସରେ ଘୋର ଅବହେଳା ପ୍ରଦର୍ଶନ କଲେ ।

ଅନେକ ଦିନ ପରେ ନିଦାଘଙ୍କର କଥା ମହର୍ଷି ଋଭୁଙ୍କର ସ୍ମରଣ ହେଲା । ନିଜ ଶିଷ୍ୟର ମଙ୍ଗଳ ଉଦ୍ଦେଶ୍ୟରେ ସେ ତାଙ୍କ ନିକଟକୁ ଗମନ କଲେ । କିନ୍ତୁ ନିଦାଘ ତାଙ୍କୁ ଚିହ୍ନି ପାରିଲେ ନାହିଁ । ତାଙ୍କୁ ସାଧାରଣ ଅତିଥି ବୋଲି ଭାବି ସେ ତାଙ୍କର ପରିଚର୍ଯ୍ୟା କଲେ ଏବଂ ଉପଯୁକ୍ତ ଭୋଜନ ପ୍ରଦାନ କଲେ । ଋଭୁ ହର୍ଷଯୁକ୍ତ ହୋଇ ଭୋଜନ କରିବା ପରେ ନିଦାଘ ପଚାରିଲେ— 'ମହାରାଜ ! ଆପଣ କେଉଁଠାରେ ଅବସ୍ଥାନ କରନ୍ତି ? ବର୍ତ୍ତମାନ କେଉଁଠାରୁ ଆସିଲେ ଏବଂ ଏହାପରେ କେଉଁଠାକୁ ଗମନ କରିବେ ? ଏ ସାମାନ୍ୟ ଗୃହସ୍ଥର ଭୋଜନରେ ଆପଣ ପରିତୃପ୍ତ ହେଲେ ତ ?''

ମହର୍ଷି ଋଭୁ ସହଜ ସୁଲଭ କଣ୍ଠରେ ଉତ୍ତର ଦେଲେ ''ହେ ବ୍ରାହ୍ମଣ ! ସାଧାରଣତଃ ପ୍ରାଣହିଁ କ୍ଷୁଧାତୃଷ୍ଣା ଅନୁଭବ କରିପାରେ । କିନ୍ତୁ ମୁଁ ପ୍ରାଣ ନୁହେଁ । ତେଣୁ ମୋର କ୍ଷୁଧା ନାହିଁ କି ତୃଷ୍ଣା ନାହିଁ । ଯେଉଁଠାରେ କ୍ଷୁଧ ତୃଷ୍ଣା କିଛି ନାହିଁ, ସେଠାରେ ତୃପ୍ତି-ଅତୃପ୍ତିର ପ୍ରଶ୍ନ ଉଠୁଛି କେଉଁଠୁ ? ସୁସ୍ଥତା ଓ ତୃପ୍ତି ହେଉଛି ମନର ଧର୍ମ । କିନ୍ତୁ ଆତ୍ମା ଏ ସବୁଥିରେ ନିର୍ଲିପ୍ତ । ମୋର ରହିବା ଓ ଯିବା-ଆସିବା ବିଷୟରେ ତୁମେ ଯାହା ପଚାରିଲ ତାହାର ଉତ୍ତର କହୁଛି, ଶୁଣ । ଆକାଶ ପରି ଆତ୍ମା ହେଉଛି ସର୍ବବ୍ୟାପୀ । ତାହା କେଉଁଠାକୁ ଯାଏ ନାହିଁ କି କେଉଁଠାରୁ ଆସେ ନାହିଁ । ତେଣୁ ମୁ କେଉଁଠାରେ ରହୁନାହିଁ, କେଉଁଠାରୁ ଆସିନାହିଁ କି କେଉଁଠାକୁ ଯିବନାହିଁ । ଏ ସଂସାରରେ ସବୁ କିଛି ପରିବର୍ତ୍ତନଶୀଳ । ଏଠାରେ କେତେବେଳେ ତୃପ୍ତିକର ପଦାର୍ଥ ଅତୃପ୍ତିକର ବୋଧହୁଏ ଏବଂ କେତେବେଳେ ଅତୃପ୍ତିକର ପଦାର୍ଥ ତୃପ୍ତିକର ବୋଧ ହୋଇଥାଏ । ତେଣୁ ଏହି ପରିବର୍ତ୍ତନଶୀଳ ସଂସାର ଉପରେ ଦୃଷ୍ଟି ନ ରଖି ତୁମେ ନିଜ ଆତ୍ମା ଉପରେ ଦୃଷ୍ଟି ସ୍ଥାପନ କର । ସଂସାରୀ ଲୋକ ସାଧାରଣତଃ ମାୟା ଜାଲରେ ପଡ଼ି ନିଜ ସ୍ୱରୂପ ଭୁଲି ଯାଇଥାଏ । କିନ୍ତୁ ତୁମେ ମାୟା ଉପରେ ବିଜୟ ଲାଭ କର ।''

ଏପରି ମୂଲ୍ୟବାନ ଉପଦେଶ ଶୁଣି ନିଦାଘ ଋଭୁଙ୍କ ପାଦତଳେ ପଡ଼ି ପ୍ରଣାମ କଲେ । ଋଭୁ କହିଲେ-''ହେ ନିଦାଘ ! ମୁଁ ହେଉଛି ତୁମର ଗୁରୁ ।''

ନିଜ ଗୁରୁଙ୍କୁ ଚିହ୍ନିପାରି ନିଦାଘ ଅତ୍ୟନ୍ତ ହର୍ଷଯୁକ୍ତ ହେଲେ ।

ତାହାପରେ ମହର୍ଷି ଋଭୁ ନିଦାଘଙ୍କଠାରୁ ବିଦାୟ ନେଇ ସେଠାରୁ ପ୍ରସ୍ଥାନ କଲେ ।

କିଛିଦିନ ପରେ ମହର୍ଷି ଋଭୁ ପୁଣିଥରେ ସେଠାକୁ ଗମନ କଲେ । ସେତେବେଳେ ବୀରନଗରର ରାଜା ହସ୍ତୀ ଆରୋହଣ କରି ସେହି ପଥରେ ଗମନ କରୁଥିଲେ । ରାଜାଙ୍କୁ ଦର୍ଶନ କରିବାପାଇଁ ପଥର ଦୁଇଧାରରେ ଲୋକମାନେ ଭୀଷଣ ଭିଡ଼ ଜମାଇ ଥିଲେ । ନିଦାଘ ମଧ୍ୟ ସେହି ଭିଡ଼ ମଧ୍ୟରେ ଥାଇ ରାଜାଙ୍କୁ ଦର୍ଶନ କରୁଥିଲେ । ମହର୍ଷି ଋଭୁ ନିଦାଘଙ୍କ ନିକଟକୁ ଆସି ପଚାରିଲେ—''ଏଠାରେ ଏତେ ଭିଡ଼ କାହିଁକି ହୋଇଛି ?''

ନିଦାଘ ଉତ୍ତର ଦେଲେ—"ଏହି ପଥରେ ଏହି ନଗରର ରାଜା ଗମନ କରୁଛନ୍ତି ।"

ଋଭୁ ପୁଣି ପଚାରିଲେ- "ଆଚ୍ଛା, ରାଜା କିଏ, ଆଉ ପ୍ରଜା କିଏ ?"

ନିଦାଘ କହିଲେ—"ଯିଏ ଏହି ପର୍ବତ ପରି ବିଶାଳ ହାତୀ ଉପରେ ବସି ଆସୁଛନ୍ତି, ସେ ହେଉଛନ୍ତି ରାଜା । ତାହାଙ୍କ ଅତିରିକ୍ତ ଆଉ ସମସ୍ତେ ପ୍ରଜା ।"

ନିଦାଘଙ୍କ କଥା ଶୁଣି ଋଭୁ ପୁଣି ପଚାରିଲେ—"ଆଚ୍ଛା ମହାଶୟ ! ମୋତେ ହାତୀ, ଆଉ ରାଜାଙ୍କର ଏପରି ଲକ୍ଷଣ କୁହ, ଯାହା ଦ୍ୱାରା କି ମୁଁ ଜାଣି ପାରିବି, ଉପରେ କିଏ ଅଛି, ଆଉ ତଳେ କିଏ ଅଛି ?"

ଏ ପ୍ରଶ୍ନ ଶୁଣି ନିଦାଘ ହଠାତ୍ ଋଭୁଙ୍କ କାନ୍ଧ ଉପରକୁ ଉଠିଗଲେ ଏବଂ ବିରକ୍ତ ହୋଇ କହିଲେ—"ଦେଖ ! ମୁଁ ରାଜାଙ୍କ ପରି ଉପରେ ଅଛି, ଆଉ ତୁମେ ହାତୀ ପରି ତଳେ ଅଛ । ଏବେ ତୁମେ ଠିକ୍ ଭାବେ ବୁଝି ପାରୁଥିବ, ରାଜା କିଏ, ଆଉ ହାତୀ କିଏ ?"

ମହର୍ଷି ଋଭୁ ଅତ୍ୟନ୍ତ ଶାନ୍ତ ହୋଇ କହିଲେ—'ଯଦି ତୁମେ ରାଜା, ଆଉ ମୁଁ ହାତୀ, ତେବେ ଆମ ମଧ୍ୟରେ ପାର୍ଥକ୍ୟ କ'ଣ ?"

ଏପରି ପ୍ରଶ୍ନ ଶୁଣି ନିଦାଘ ମହର୍ଷି ଋଭୁଙ୍କୁ ଚିହ୍ନି ପାରିଲେ ଏବଂ ତାଙ୍କ ପାଦତଳେ ପଡ଼ି ତଥା ଯୋଡ଼ହସ୍ତ ହୋଇ କହିଲେ—"ପ୍ରଭୋ ! ଆପଣ ସେ ମୋର ଗୁରୁଦେବ ମହର୍ଷି ଋଭୁ ଏଥିରେ ମୁଁ ନିଃସନ୍ଦେହ । ନ ହେଲେ ଏପରି ଅଦ୍ୱୈତ ଚିନ୍ତାଧାରା ଆଉ କାହା ମୁହଁରୁ ବାହାରନ୍ତା ? ଆପଣଙ୍କୁ ଚିହ୍ନି ନ ପାରି ମୁଁ ଘୋର ଅପରାଧ କରିଛି । କୃପାଯୁକ୍ତ ହୋଇ ଆପଣ ମୋତେ କ୍ଷମା ପ୍ରଦାନ କରନ୍ତୁ ।"

ମହର୍ଷି ଋଭୁ ହସି ହସି କହିଲେ—"ନିଦାଘ ! ମୋତେ ଅବଜ୍ଞା କରି ତୁମେ କିଛି ଅପରାଧ କରି ନାହିଁ । ବରଂ ନିଜକୁ ଅବଜ୍ଞା କରି ତୁମେ ଘୋର ଅପରାଧ କରିଅଛ । ସଂସାରରେ ଆସକ୍ତ ହୋଇ ତୁମେ ନିଜ ସ୍ୱରୂପ ଭୁଲି ଯାଇଛ । ଯଦି ନିଜ ସ୍ୱରୂପ ଉପଲବ୍ଧି କରିବାକୁ ଇଚ୍ଛା କର, ତେବେ ସଂସାରରେ ନିର୍ଲିପ୍ତ ରହି ପରମାର୍ଥ ଲାଭର ପନ୍ଥା ଅନ୍ୱେଷଣ କର ।"

ନିଦାଘ ଋଭୁଙ୍କ ଉପଦେଶର ସାରବସ୍ତୁ ଉପଲବ୍ଧି କରି ତାଙ୍କୁ ବାରମ୍ବାର ସ୍ତୁତି କରିବାକୁ ଲାଗିଲେ । ଅନନ୍ତର ଋଭୁ ତାଙ୍କୁ ଆଶୀର୍ବାଦ କରି ସ୍ୱପଥରେ ଗମନ କଲେ ।

ମହର୍ଷି ଋଭୁଙ୍କର ଏପରି ଅପୂର୍ବ କ୍ଷମାଶୀଳତାର ଖବର ପାଇ ସନକାଦି ଗୁରୁଗଣ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ସେମାନେ ବ୍ରହ୍ମାଙ୍କ ନିକଟକୁ ଯାଇ ଋଭୁଙ୍କର ମହିମା ଗାନ କରିବାକୁ ଲାଗିଲେ । ସନକାଦି ଋଷିମାନଙ୍କ ମୁଖରୁ ଋଭୁଙ୍କ ମହିମା ଶ୍ରବଣ କରି ବ୍ରହ୍ମା ଅତ୍ୟନ୍ତ ଆନନ୍ଦିତ ହେଲେ । ସେ କ୍ଷମା ଶବ୍ଦରୁ ଗୋଟିଏ ଅକ୍ଷର ଋଭୁଙ୍କ ନାମ ସହିତ ଯୋଡ଼ି ସେହି-ଦିନଠାରୁ ତାଙ୍କୁ 'ଋଭୁକ୍ଷ' ନାମରେ ନାମିତ କଲେ । ଋଭୁଙ୍କର ଶିଷ୍ୟମାନେ ଯେଉଁ ସମ୍ପ୍ରଦାୟ ଗଢ଼ିଥିଲେ, ସେହି ସମ୍ପ୍ରଦାୟରେ ତାଙ୍କର ନାମ ରଖାଯାଇଥିଲା "ଋଭୁକ୍ଷାନନ୍ଦ" ।

ବାସ୍ତବରେ ମହର୍ଷି ଋଭୁ ଥିଲେ କ୍ଷମାର ଜୀବନ୍ତ ପ୍ରତିମୂର୍ତ୍ତି । ତାଙ୍କର କୃପାଲାଭ କରି ନିଦାଘ ଆତ୍ମନିଷ୍ଠ ହୋଇ ପାରିଥିଲେ । ଶିଷ୍ୟମାନଙ୍କର କଲ୍ୟାଣ ପାଇଁ ସେ ନିଜର ଜୀବନ ଉତ୍ସର୍ଗ କରିଥିଲେ ।

———

# ମହର୍ଷି କାଶ୍ୟପ

ସମସ୍ତ ଲୋକର ପିତାମହ ଭଗବାନ୍ ବ୍ରହ୍ମା ଏହି ଚରାଚର ସୃଷ୍ଟି ସମ୍ପନ୍ନ କରି ଅଛନ୍ତି । ପ୍ରଥମେ ତାଙ୍କଠାରୁ ଉତ୍ପନ୍ନ ହୋଇଥିଲେ ତାଙ୍କର ଛଅଜଣ ମାନସିକ ପୁତ୍ର । ସେମାନଙ୍କର ନାମ ହେଉଛି ମରୀଚି, ଅତ୍ରି, ଅଙ୍ଗିରା, ପୁଲସ୍ତ୍ୟ, ପୁଲହ ଓ କ୍ରତୁ । ମରୀଚିଙ୍କ ପୁତ୍ର ଭାବରେ ମହର୍ଷି କଶ୍ୟପ ସୁପ୍ରସିଦ୍ଧ ବୈଦିକ ସଂହିତା ମତରେ କଶ୍ୟପ ହେଉଛନ୍ତି ହିରଣ୍ୟବର୍ଣ୍ଣ ବ୍ରହ୍ମାଙ୍କର ପୁତ୍ର । ଲିଙ୍ଗ ପୁରାଣ ମତରେ ସେ ବ୍ରହ୍ମାଙ୍କର ମାନସ ପୁତ୍ର ।

ଦକ୍ଷ ପ୍ରଜାପତିଙ୍କର ତେରଜଣ କନ୍ୟା ମହର୍ଷି କଶ୍ୟପଙ୍କୁ ବିବାହ କରିଥିଲେ । ସେମାନେ ହେଉଛନ୍ତି - ଅଦିତି, ଦିତି, ଦନୁ, କାଳା, ଦନାୟୁ, ସିଂହିକା, କ୍ରୋଧା, ପ୍ରାଧା, ବିଶ୍ୱା, ବିନତା, କପିଳା, ମନୁ ଓ କଦ୍ରୁ । ଏହି ତେରଜଣ କନ୍ୟାଙ୍କ ଗର୍ଭରୁ ପୃଥିବୀର ସମସ୍ତ ସୃଷ୍ଟି ସମ୍ଭବ ହୋଇଥିଲା । ଅଦିତିଙ୍କଠାରୁ ଜନ୍ମ ହୋଇଥିଲେ ସମସ୍ତ ଦେବତା ଓ ଦ୍ୱାଦଶ ଆଦିତ୍ୟ । ଦିତିଙ୍କଠାରୁ ଜନ୍ମ ହୋଇଥିଲେ ସମସ୍ତ ଦୈତ୍ୟ । ଦନୁ, କାଳା ଓ ଦନାୟୁଙ୍କଠାରୁ ଜନ୍ମ ହୋଇଥିଲେ ସିଂହ, ବ୍ୟାଘ୍ର ଆଦି ସମସ୍ତ ଜୀବଜନ୍ତୁ । କ୍ରୋଧାଙ୍କଠାରୁ ଜନ୍ମ ହୋଇଥିଲେ କ୍ରୋଧ କରୁଥିବା ଅସୁର ସମୂହ । ବିନତାଙ୍କଠାରୁ ଜନ୍ମ ହୋଇଥିଲେ ଗରୁଡ଼, ଅରୁଣ ଆଦି ପକ୍ଷୀ । କଦ୍ରୁଙ୍କଠାରୁ ଜନ୍ମ ହୋଇଥିଲେ ନାଗ ଓ ସର୍ପ ସମୂହ । ମନୁଙ୍କଠାରୁ ଉତ୍ପନ୍ନ ହୋଇଥିଲେ ସମସ୍ତ ମନୁଷ୍ୟ । ଏହିପରି ସମସ୍ତ ସ୍ଥାବର-ଜଙ୍ଗମ, ପଶୁ-ପକ୍ଷୀ, ଦେବତା-ଦୈତ୍ୟ, ମନୁଷ୍ୟ, ସମସ୍ତେ ମହର୍ଷି କଶ୍ୟପଙ୍କର ସନ୍ତାନ ଓ ପରସ୍ପରର ଭାଇ ଭାଇ । ସମସ୍ତେ ହେଉଛନ୍ତି କଶ୍ୟପ ଗୋତ୍ରୀ ।

ଉପରୋକ୍ତ ତେରଜଣ କନ୍ୟାଙ୍କ ମଧ୍ୟରେ ଅଦିତି ଥିଲେ ମହର୍ଷି କଶ୍ୟପଙ୍କର ସବୁଠାରୁ ଅଧିକ ପ୍ରିୟ । ତାଙ୍କଠାରୁ କେବଳ ଇନ୍ଦ୍ରାଦି ଦେବଗଣ ଉତ୍ପନ୍ନ ହୋଇ ନ ଥିଲେ, ଭଗବାନ ବିଷ୍ଣୁ ମଧ୍ୟ ବାମନ ଅବତାର ହୋଇ ତାଙ୍କଠାରୁ ଜନ୍ମଲାଭ କରିଥିଲେ । ତାଙ୍କର ତପସ୍ୟା ଓ ଭଗବଦ୍ ଭକ୍ତି ଆଦର୍ଶ ସ୍ଥାନୀୟ ଥିଲା । ମହର୍ଷି କଶ୍ୟପଙ୍କ ପରି ସେ ମଧ୍ୟ ଭଗବାନଙ୍କର ଅତ୍ୟନ୍ତ ପ୍ରିୟଭକ୍ତ ଥିଲେ । ମହର୍ଷି କଶ୍ୟପ ଓ ଅଦିତିଙ୍କର ତପଃ ଶକ୍ତିର ପ୍ରଭାବରେ ଭଗବାନ ବିଷ୍ଣୁ ତିନିଥର ତାଙ୍କ ଗୃହରେ ଅବତାର ଗ୍ରହଣ କରିଥିଲେ । ସେହି ଆଦର୍ଶ ଦମ୍ପତିଙ୍କ ଯୋଗୁ ହିଁ ପୃଥିବୀର ଜୀବ ସମୂହ ନିର୍ଗୁଣ ଭଗବାନଙ୍କୁ ସଗୁଣ ରୂପରେ ଦର୍ଶନ କରିବାର ସୁଯୋଗ ପାଇ ପାରିଥିଲେ ।

ମହର୍ଷି କଶ୍ୟପଙ୍କର ମହିମା ବିଭିନ୍ନ ପୁରାଣରେ ଭିନ୍ନ ଭିନ୍ନ ଭାବରେ ବର୍ଣ୍ଣନା କରାଯାଇଛି । ସମସ୍ତ ଜୀବର ଆଦି ପିତା ଭାବରେ ସେ ଆମ ସମସ୍ତଙ୍କର ଚିର ନମସ୍ୟ ।

— — — —

1

# ମହର୍ଷି କପିଳ

ଭଗବାନ ହିଁ ସୃଷ୍ଟିର ଆଦି କାରଣ । ସେ ନିଜର ସଂକଳ୍ପ ଦ୍ୱାରା ଏହି ଚରାଚର ସୃଷ୍ଟି ବିସ୍ତାର କରି ତାହାକୁ ପାଳନ କରନ୍ତି । ଜୀବର କଲ୍ୟାଣପାଇଁ ସେ ବିଭିନ୍ନ ରୂପ ଧାରଣ କରି ପୃଥିବୀ ତଳକୁ ଅବତରଣ କରନ୍ତି । ମନୁ ଓ ପ୍ରଜାପତି ରୂପରେ ସେ ଜଗତର ସମସ୍ତ ପ୍ରାଣୀଙ୍କର ପାଳନ ପୋଷଣ କରନ୍ତି । ସେହି ଉଦାର ଚରିତ ପ୍ରଭୁ ବେଳେବେଳେ ଋଷି ଓ ଯୋଗେଶ୍ୱର ରୂପରେ ଅବତୀର୍ଣ୍ଣ ହୋଇ ଭବସାଗର ପାରି ହେବାର ଉପାୟ ଶିକ୍ଷା ଦିଅନ୍ତି ଏବଂ ନିଜେ ସେହି ମାର୍ଗରେ ଗମନ କରି ଆଦର୍ଶ ସ୍ଥାପନ କରନ୍ତି । ମାୟାମୋହିତ ତ୍ରିତାପ ଦଗ୍ଧ ଜୀବ କିପରି ଭବସାଗର ପାରି ହୋଇ ଆନନ୍ଦ-ସାଗରରେ ଉପନୀତ ହେବ, ସେହି ବିଷୟ ଶିକ୍ଷା ଦେବାହିଁ ତାଙ୍କ ଅବତାରର ମୂଳ ଲକ୍ଷ୍ୟ କେବଳ ପ୍ରାଣୀମାନଙ୍କୁ ପାଳନ କରିବା ଉଦ୍ଦେଶ୍ୟରେ ନୁହେଁ, ବରଂ ଜ୍ଞାନ ଓ ସାଧନାର ପରମ୍ପରା ରକ୍ଷା କରିବା ପାଇଁ ସେ ଯୁଗେ ଯୁଗେ ଅବତାର ରୂପରେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୁଅନ୍ତି । ଶ୍ରୀନର-ନାରାୟଣ, କପିଳ, ବ୍ୟାସ ଆଦି ଭଗବାନଙ୍କର ଏହିପରି ଗୋଟିଏ ଗୋଟିଏ ଅବତାର ।

ପ୍ରାଣୀମାନଙ୍କୁ ତତ୍ତ୍ୱଜ୍ଞାନ ଉପଦେଶ ଦେବା ପାଇଁ ସୃଷ୍ଟିର ପ୍ରଥମ କଳ୍ପରେ ସ୍ୱାୟମ୍ଭୁବ ମନ୍ୱନ୍ତରରେ ପ୍ରଜାପତି କର୍ଦ୍ଦମ ଓ ତାଙ୍କ ପତ୍ନୀ ଦେବହୂତିଙ୍କର ପୁତ୍ରଭାବରେ ଭଗବାନ କପିଳ ଅବତାର ଧାରଣ କରିଥିଲେ । ସର୍ବ ପ୍ରଥମେ କପିଳମୁନି ନିଜମାତା ଦେବହୂତିଙ୍କୁ ଜ୍ଞାନତତ୍ତ୍ୱ ଓ ଭକ୍ତିତତ୍ତ୍ୱ ଉପଦେଶ ଦେଇଥିଲେ । ମର୍ତ୍ତ୍ୟଲୋକରେ ପରମ ସାଧ୍ୱୀ ମନୁ ପୁତ୍ରୀ ଦେବହୂତି ହିଁ ଥିଲେ ଭାଗବତ ଜ୍ଞାନର ସର୍ବ ପ୍ରଥମ ଅଧିକାରିଣୀ । ସେହି ଭାଗବତ-ଜ୍ଞାନ ଲାଭ କରି ଦେବହୂତି-ଙ୍କର ସ୍ଥୂଳ ଶରୀର ଦିବ୍ୟ ରୂପ ଧାରଣ କରିଥିଲା । ଭାଗବତ-ଜ୍ଞାନରେ ନିଜ ଚିତ୍ତକୁ ଏକୀଭୂତ କରି ସେ ସିଦ୍ଧାବସ୍ଥା ପ୍ରାପ୍ତ ହୋଇ ଥିଲେ ଏବଂ ତାଙ୍କର ସ୍ଥୂଳ ଶରୀର ଦ୍ରବୀଭୂତ ହୋଇ ଏକ ନଦୀ ଆକାର ଧାରଣ କରିଥିଲା । ସେହି ନଦୀ ଏବେ ଭାରତୀୟ ମାନଙ୍କର ଏକ ମହାନ୍ ତୀର୍ଥ ଭାବରେ ପରି ଗଣିତ ।

ଭଗବାନ କପିଳ ମାତା' ଦେବହୂତିଙ୍କୁ ଯେଉଁ ଜ୍ଞାନ-ଉପଦେଶ ଦେଇଥିଲେ ତାହା ଶ୍ରୀମଦ୍ଭାଗବତର ତୃତୀୟ ସ୍କନ୍ଧରେ ଅତି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଅଛି —

"ଜ୍ଞାନ ଲାଭର ପ୍ରଧାନ ସାଧନ ହେଉଛି ବୈରାଗ୍ୟ ଦୃଷ୍ଟି ସଂସାରର ସମସ୍ତ ଭୋଗ୍ୟ ବସ୍ତୁରେ ବୈରାଗ୍ୟ ଦୃଷ୍ଟି ନ ହେଲେ ଜ୍ଞାନଲାଭର ଆଶା ବିଡ଼ମ୍ବନା । ମାନି ଏହି ଶରୀର ହାଡ଼,

ମାଂସ, ମଜ୍ଜା, ରକ୍ତ, ଚର୍ମ ଆଦି ଅପବିତ୍ର ବସ୍ତୁକୁ ଛାଡ଼ି ଦେଲେ ଆଉ କ'ଣ ବା ଅବଶିଷ୍ଟ ଅଛି ? ଏପରି ଘୃଣିତ ଦେହ ପ୍ରତି ଆସକ୍ତ ହୋଇ ପ୍ରାଣୀ ନାନା ପ୍ରକାର ଅନର୍ଥ ହିଁ କେବଳ କରିଥାଏ । ଏହାର ଫଳ ସ୍ୱରୂପ ମୃତ୍ୟୁ କାଳରେ ସେ ନାନା ପ୍ରକାର ଅସହ୍ୟ କଷ୍ଟ ଅନୁଭବ କରେ । ମୃତ୍ୟୁ ପରେ ମଧ୍ୟ ଯମଦୂତମାନେ ତାକୁ ଆହୁରି ଅଧିକ ଯାତନା ଦେଇଥାନ୍ତି । ହଜାର ହଜାର ବର୍ଷ ସେ କେବଳ ନରକରେ ହିଁ କଷ୍ଟ ଭୋଗକରେ । ଯଦିବା ସେ ଭଗବାନଙ୍କର ଅଶେଷ କୃପା ଲାଭ କରି ମନୁଷ୍ୟ ଯୋନି ପ୍ରାପ୍ତ ହୁଏ, ତେବେ ମଧ୍ୟ ତା'ର ଦୁଃଖ ଦୂର ହୁଏ ନାହିଁ । ଗର୍ଭାବସ୍ଥାରେ ସେ ଦାରୁଣ ଦୁଃଖ ଭୋଗ କରେ । ପରାଧୀନତା ଓ ବିବଶତା ହେତୁ ତା'ର ବାଲ୍ୟକାଳ ଦୁଃଖରେ ହିଁ କଟିଥାଏ । ଯୁବାବସ୍ଥାରେ କାମ କ୍ରୋଧାଦି ବିକାର ତାକୁ ଅନ୍ଧ କରିଦିଏ । ନାନାପ୍ରକାର ଚିନ୍ତାରେ ବୁଡ଼ି ସେ ଅକାଳ ବାର୍ଦ୍ଧକ୍ୟ ଲାଭ କରେ । ବୃଦ୍ଧାବସ୍ଥାରେ ତା'ର ଦୁଃଖ ଚରମସୀମା ସ୍ପର୍ଶ କରେ । ଏହିପରି ଭାବରେ ମନୁଷ୍ୟର ସାରା ଜୀବନ କେବଳ ଦୁଃଖ କଷ୍ଟରେ ହିଁ ଅତିବାହିତ ହୋଇଥାଏ । ସତ୍ କର୍ମର ପୁଣ୍ୟ ପ୍ରଭାବରେ ହୃଦୟରେ ବୈରାଗ୍ୟ ଉତ୍ପନ୍ନ ହେଲେ ମନୁଷ୍ୟ ସଂସାରର ଦୁଃଖ ଉପଲବ୍ଧି କରିପାରେ । ଭଗବାନଙ୍କ ପାଦପଦ୍ମରେ ମନପ୍ରାଣ ଅର୍ପଣ କରି ତାଙ୍କର ନାମ ଜପ, ସ୍ୱରୂପ ଧ୍ୟାନ ଓ ଗୁଣ-କୀର୍ତ୍ତନ କରି ପାରିଲେ ହୃଦୟ ଅତ୍ୟନ୍ତ ଶୁଦ୍ଧ ହୋଇ ଥାଏ । ନିଷ୍କାମ ଭକ୍ତିଦ୍ୱାରା ଭଗବାନଙ୍କୁ ଆରାଧନା କଲେ ସମସ୍ତ ଭବ-ବନ୍ଧନ ଛିନ୍ନ ହୋଇଯାଏ ଏବଂ ହୃଦୟରେ ଆତ୍ମଜ୍ଞାନ ଉଦୟ ହୁଏ । ଭଗବାନଙ୍କର ଶରଣାପନ୍ନ ନ ହେଲେ ହୃଦୟ ଶୁଦ୍ଧ ହୁଏ ନାହିଁ କି ହୃଦୟରେ ଆତ୍ମଜ୍ଞାନ ଉଦୟ ହୁଏ ନାହିଁ । ତେଣୁ ଅତ୍ୟନ୍ତ ସାବଧାନତାର ସହିତ ମନକୁ ସଂସାରର ଦୁଃଖ ରୂପ ଭୋଗରୁ ସଙ୍କୁଚିତ କରି ଭଗବାନଙ୍କର ପାଦ ପଦ୍ମରେ ଅର୍ପଣ କରିବା ଉଚିତ ।"

ସଂସାରର ଦୁଃଖ ତାପ ଦଗ୍ଧ ପ୍ରାଣୀମାନଙ୍କ ପାଇଁ ଏହା ହିଁ ଭଗବାନ କପିଳଙ୍କର ଅମୂଲ୍ୟ ଉପଦେଶ ।

ମାତାଙ୍କୁ ଉପଦେଶ ଦେଇ ମହର୍ଷି କପିଳ, ବର୍ତ୍ତମାନ ଯେଉଁଠାରେ ଗଙ୍ଗା ସାଗର ସଙ୍ଗମ ଅବସ୍ଥିତ, ସେହି ସ୍ଥାନକୁ ଗମନ କଲେ । ସାଗର ଅତ୍ୟନ୍ତ ପ୍ରସନ୍ନ ହୋଇ ମହର୍ଷି କପିଳଙ୍କୁ ତପସ୍ୟା କରିବା ପାଇଁ ନିଜ ଗର୍ଭରେ ସ୍ଥାନ ପ୍ରଦାନ କଲା । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ସାଗର ଭିତରେ ରହି ମହର୍ଷି କପିଳ ତପସ୍ୟା କରୁ ଅଛନ୍ତି ।

କପିଳ ଥିଲେ ଭାଗବତ ଧର୍ମର ମୁଖ୍ୟ ଦ୍ୱାଦଶ ଆଚାର୍ଯ୍ୟଙ୍କ ମଧ୍ୟରେ ଅନ୍ୟତମ । ସିଦ୍ଧମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ସବୁଠାରୁ ଉଚ୍ଚରେ । ସେଥିପାଇଁ ଭଗବାନ ଶ୍ରୀକୃଷ୍ଣ ଶ୍ରୀମଦ୍‌ଭଗବଦ୍ ଗୀତାରେ ଅର୍ଜ୍ଜୁନଙ୍କୁ କହିଛନ୍ତି—"ସିଦ୍ଧାନାଂ କପିଳୋ ମୁନିଃ" । ସେ ଏପରି ତେଜସ୍ୱୀ ଥିଲେ ଯେ ତାଙ୍କର ତେଜ ସହି ନ ପାରି ସାଗର ରାଜାଙ୍କର ଷାଠିଏ ହଜାର ପୁତ୍ର

ଧ୍ୱଂସ ମୁଖରେ ପତିତ ହୋଇଥିଲେ ବୋଲି କିମ୍ବଦନ୍ତୀ ପ୍ରଚଳିତ ଅଛି । ଅଧିକାନ୍ତୁ ସାଧକମାନଙ୍କୁ ସତ୍ ମାର୍ଗରେ ପରିଚାଳିତ କରିବାପାଇଁ ସେ ବିଭିନ୍ନ ଯୁଗରେ ସାଧକମାନଙ୍କୁ ଦର୍ଶନ ଦେଇଥାନ୍ତି ଓ ବହୁତ ଉପଦେଶ ପ୍ରଦାନ କରିଥାନ୍ତି ।

ଦାର୍ଶନିକମାନେ ବିଶ୍ୱାସ କରନ୍ତି ଯେ ସାଂଖ୍ୟ ଦର୍ଶନର ମୂଳ ଗ୍ରନ୍ଥ "ସାଂଖ୍ୟ ସୂତ୍ର" ମହର୍ଷି କପିଳଙ୍କ ଦ୍ୱାରା ପ୍ରଣୀତ । ସାଂଖ୍ୟ ସୂତ୍ର ଅନୁଯାୟୀ ପୁରୁଷ ଓ ପ୍ରକୃତିର ସଂଯୋଗରୁ ହିଁ ଏହି ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟି । ଏହି ସଂଯୋଗ ଦ୍ୱାରା ପ୍ରକୃତିରୁ ବୁଦ୍ଧି, ଅହଂକାର, ତନ୍ମାତ୍ରା, ସ୍ଥୂଳ, ଭୂତ ଇତ୍ୟାଦି କର୍ମରେ ବିବର୍ତ୍ତନ ଘଟେ ଏବଂ ସମଗ୍ର ବିଶ୍ୱ ଉତ୍ପତ୍ତି ଲାଭକରେ ।

———

# ମହର୍ଷି ଶୁକ୍ରାଚାର୍ଯ୍ୟ

ମହର୍ଷି ଶୁକ୍ରାଚାର୍ଯ୍ୟ ହେଉଛନ୍ତି ବ୍ରହ୍ମାଙ୍କର ତୃତୀୟ ମାନସପୁତ୍ର ମହର୍ଷି ଭୃଗୁଙ୍କର ପୌତ୍ର ଓ ମହର୍ଷି କବିଙ୍କର ପୁତ୍ର । ଅସୁରମାନଙ୍କର ଗୁରୁଭାବରେ ସେ ଜଗତ ବିଖ୍ୟାତ । ତାଙ୍କ ପ୍ରଣୀତ "ଶୁକ୍ରନୀତି" ଅତ୍ୟନ୍ତ ସୁପ୍ରସିଦ୍ଧ । ଅସୁରମାନଙ୍କର ଗୁରୁଥିଲେ ମଧ୍ୟ ସେ ଥିଲେ ଭଗବାନଙ୍କର ଜଣେ ପରମ ଭକ୍ତ । ଯୋଗ ବିଦ୍ୟାରେ ସେ ଖୁବ୍ ଦକ୍ଷତା ଅର୍ଜନ କରିଥିଲେ । ଅସୁରମାନଙ୍କୁ ସତ୍ ମାର୍ଗରେ ପରିଚାଳିତ କରିବାପାଇଁ ସେ ସର୍ବଦା ସେମାନଙ୍କୁ ଧାର୍ମିକ ଶିକ୍ଷା ପ୍ରଦାନ କରୁଥିଲେ । ତାଙ୍କ ପ୍ରଭାବରେ ଆସି ପ୍ରହ୍ଲାଦ, ବିରୋଚନ, ବଳି ଆଦି ଅସୁର ରାଜାଗଣ ଭଗବଦ୍‌ଭକ୍ତ ହୋଇପାରିଥିଲେ ଏବଂ ବିଷ୍ଣୁଙ୍କ ପ୍ରୀତି ଉଦ୍ଦେଶ୍ୟରେ ଅନେକ ଯାଗଯଜ୍ଞ ଅନୁଷ୍ଠାନ କରିଥିଲେ ।

ସମଗ୍ର ସୃଷ୍ଟିରେ ଶୁକ୍ରାଚାର୍ଯ୍ୟ ହିଁ କେବଳ "ମୃତ୍ୟୁ ସଞ୍ଜୀବନୀ ବିଦ୍ୟା" ପ୍ରାପ୍ତ ହୋଇଥିଲେ । ଦେବତାମାନଙ୍କ ସହିତ ସଂଗ୍ରାମ କରି ଯେଉଁ ଅସୁରମାନେ ପ୍ରାଣତ୍ୟାଗ କରୁଥିଲେ ସେମାନଙ୍କୁ ସେ "ମୃତ୍ୟୁ ସଂଜୀବନୀ ବିଦ୍ୟା" ବଳରେ ଜୀବିତ କରି ଦେଉ ଥିଲେ । ଦେବତାମାନଙ୍କର ଗୁରୁହୋଇ ମଧ୍ୟ ବୃହସ୍ପତି ଏହି ବିଦ୍ୟାର ରହସ୍ୟ ଜାଣି ନ ଥିଲେ । ତେଣୁ ସେ ଶୁକ୍ରାଚାର୍ଯ୍ୟଙ୍କ ଠାରୁ ଏହି ବିଦ୍ୟା ଶିକ୍ଷା କରିବାପାଇଁ ନିଜ ପୁତ୍ର କଚଙ୍କୁ ତାଙ୍କ ନିକଟକୁ ପ୍ରେରଣ କରିଥିଲେ । ମୃତ୍ୟୁ ସଂଜୀବନୀ ବିଦ୍ୟା ଶିକ୍ଷା କରିବାପାଇଁ କଚ ଶିଷ୍ୟ ଭାବରେ ଶୁକ୍ରାଚାର୍ଯ୍ୟଙ୍କ ଦ୍ୱାରସ୍ଥ ହୋଇଥିଲେ । ଶୁକ୍ରାଚାର୍ଯ୍ୟ ଯେତେବେଳେ ଜାଣିଲେ ସେ ବିଦ୍ୟା ଶିକ୍ଷା କରିବାପାଇଁ ଦେବଗୁରୁ ବୃହସ୍ପତିଙ୍କ ପୁତ୍ର ତାଙ୍କ ନିକଟକୁ ଆସିଛନ୍ତି, ସେତେବେଳେ ସେ ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ କଚଙ୍କୁ ଶିଷ୍ୟ ଭାବରେ ଗ୍ରହଣ କଲେ । କିନ୍ତୁ ଅସୁରମାନେ ଏହି ଖବର ଜାଣିପାରି ଅତ୍ୟନ୍ତ ବିମର୍ଷ ହୋଇ ପଡ଼ିଲେ । ସେମାନେ କଚଙ୍କୁ ଥର ଥର କରି ଅନେକ ଥର ହତ୍ୟା କରିଥିଲେ । କିନ୍ତୁ ମୃତ୍ୟୁ ସଂଜୀବନୀ ବିଦ୍ୟାବଳରେ ଶୁକ୍ରାଚାର୍ଯ୍ୟ କଚଙ୍କୁ ପ୍ରତିଥର ବଞ୍ଚାଇ ଦେଇଥିଲେ । ଶେଷରେ ଅସୁରଗଣ କଚଙ୍କୁ ମାରି ଭସ୍ମ କରିଦେଲେ ଏବଂ ସେହି ଭସ୍ମ ସୁରା ସହିତ ମିଶାଇ ଶୁକ୍ରାଚାର୍ଯ୍ୟଙ୍କୁ ପିଆଇ ଦେଲେ । ଶୁକ୍ରାଚାର୍ଯ୍ୟ ଏକଥା ଧ୍ୟାନରେ ଜାଣିପାରି ଅତ୍ୟନ୍ତ ଦୁଃଖିତ ହେଲେ । ମୃତ୍ୟୁ ସଂଜୀବନୀ ବିଦ୍ୟା ବଳରେ ସେ ନିଶ୍ଚିତ କଚଙ୍କୁ ବଞ୍ଚାଇ ଦେବେ, କିନ୍ତୁ ତାହା ଫଳରେ ସେ ନିଜେ ହିଁ ମୃତ୍ୟୁ ମୁଖରେ ପଡ଼ିବେ । ଏହା ଚିନ୍ତାକରି ସେ କଚଙ୍କୁ ମୃତ୍ୟୁ ସଂଜୀବନୀ ବିଦ୍ୟା ପ୍ରଦାନ କରିବାକୁ ମନସ୍ଥ କଲେ ଏବଂ ସ୍ୱଗର୍ଭସ୍ଥ କଚଙ୍କୁ ଜୀବିତ କରି ତାଙ୍କ ଉଦ୍ଦେଶ୍ୟ କହିଲେ—"କଚ ! ମୁଁ ତୋତେ ମୃତ୍ୟୁ ସଂଜୀବନୀ ବିଦ୍ୟା ପ୍ରଦାନ କରୁଛି । ତୁ ବର୍ତ୍ତମାନ ମୋ ଉଦର ବିଦାରଣ କରି ବାହାରକୁ ବାହାରିଆ ଏବଂ ସେହି ବିଦ୍ୟା ବଳରେ ମୋତେ ପୁନର୍ଜୀବିତ କର ।"

କଚ ମୃତ୍ୟୁ ସଂଜୀବନୀ ବିଦ୍ୟା ଲାଭ କରି କୃତ କୃତ୍ୟ ହେଲେ ଏବଂ ଗୁରୁଙ୍କ ଉଦର ବିଦାରଣ କରି ବାହାରକୁ ବାହାରି ଆସିଲେ । ତାହାପରେ ସେ ଶୁକ୍ରାଚାର୍ଯ୍ୟଙ୍କୁ ଜୀବିତ କରି ସ୍ୱର୍ଗ ପୁରକୁ ପ୍ରସ୍ଥାନ କଲେ ।

ଶୁକ୍ରାଚାର୍ଯ୍ୟ ସୁରାପାନର କୁଫଳ ଉପଲବ୍ଧି କରି ଘୋଷଣା କଲେ ।

"ଯୋ ବ୍ରାହ୍ମଣୋଽଦ୍ୟ ପ୍ରଭୃତୀହ କଶ୍ଚି —
ନ୍ମୋହାତ୍ ସୁରାଂ ପାସ୍ୟତି ମନ୍ଦ ବୁଦ୍ଧିଃ
ଅପେତ ଧର୍ମା ବ୍ରହ୍ମହା ଚୈବସ
ସ୍ୟାଦସ୍ମିନ୍ ଲ୍ଲୋକେ ଗର୍ହିତଃ ସ୍ୟାତ୍ପରେ ଚ
ମୟା ଚୈତାଂ ବିପ୍ରଧର୍ମୋକ୍ତି ସୀମାଂ
ମର୍ଯ୍ୟାଦାଂ ବୈ ସ୍ଥାପିତାଂ ସର୍ବଲୋକେ
ସନ୍ତୋ ବିପ୍ରାଃ ଶୁଶ୍ରୁବାଂ ସୋ ଗୁରୁଣାଂ
ଦେବା ଲୋକା ଶ୍ଚୋପଶୃଣ୍ୱନ୍ତୁ ସର୍ବେ" ।

"ମୁଁ ଆଜ ବ୍ରାହ୍ମଣମାନଙ୍କର ଧର୍ମରେ ଯେଉଁ ମର୍ଯ୍ୟାଦା ସ୍ଥାପନ କରୁଅଛି, ତାହା ଦେବତା, ଶ୍ରେଷ୍ଠବ୍ରାହ୍ମଣ, ଯେଉଁମାନେ ଗୁରୁଜନଙ୍କ ଉପଦେଶ ଶୁଣିବାକୁ ଇଚ୍ଛା କରନ୍ତି, ସେମାନେ ତଥା ଅନ୍ୟାନ୍ୟ ପ୍ରାଣୀଗଣ, ସମସ୍ତ ଏକ ଲୟରେ ଶ୍ରବଣ କରନ୍ତୁ । ଆଜଠାରୁ ଯେଉଁ ମନ୍ଦ ବୁଦ୍ଧି ବ୍ରାହ୍ମଣ ଭୁଲରେ ସୁଦ୍ଧା ସୁରାପାନ କରିବେ, ସେମାନଙ୍କର ସମସ୍ତ ଧର୍ମ ନଷ୍ଟ ହେବ ଏବଂ ସେମାନେ ବ୍ରହ୍ମହତ୍ୟାର ପାପ ବହନ କରିବେ । ଇହ ଓ ପର, ଉଭୟ ଲୋକରେ ସେମାନେ ନିନ୍ଦିତ ହେବେ ।"

ମହର୍ଷି ଶୁକ୍ରାଚାର୍ଯ୍ୟଙ୍କର ଏହି ଘୋଷଣା ସମସ୍ତେ ସ୍ୱୀକାର କଲେ । ଯେତେବେଳେ ଭଗବାନ ବାମନ ଅବତାର ଧାରଣ କରି ବଳି ରାଜାଙ୍କୁ ତ୍ରିପାଦ ଭୂମିଦାନ ମାଗିବାକୁ ଆସିଲେ, ସେତେବେଳେ ଶୁକ୍ରାଚାର୍ଯ୍ୟ ବଳିଙ୍କୁ ଭୂମିଦାନ ଦେବାକୁ ବାରଣ କରିଥିଲେ ।

କିନ୍ତୁ ଗୁରୁ ଆଜ୍ଞା ନ ମାନି ବଳି ତ୍ରିପାଦ ଭୂମିଦାନ ଦେବାରୁ ଶେଷରେ ତାଙ୍କର ପତନ ହୋଇଥିଲା ।

ଶୁକ୍ରାଚାର୍ଯ୍ୟଙ୍କର ଦେବଯାନୀ ନାମରେ ଗୋଟିଏ କନ୍ୟା ଥିଲେ । ସେ ମହାରାଜା ଯଯାତିଙ୍କୁ ବିବାହ କରିଥିଲେ । ଆଜିପର୍ଯ୍ୟନ୍ତ ସେ ମହାକାଶରେ ଏକ ନକ୍ଷତ୍ର ରୂପରେ ଅବସ୍ଥାନ କରୁ ଅଛନ୍ତି ଏବଂ ବର୍ଷା ଆଦିର ସୂଚନା ଦେଉଅଛନ୍ତି ।

ମହର୍ଷି ଶୁକ୍ରାଚାର୍ଯ୍ୟ ଥିଲେ ଭଗବାନଙ୍କର ଜଣେ ଏକନିଷ୍ଠ ଭକ୍ତ । ମହାରାଜା ବଳିଙ୍କ ଯଜ୍ଞରେ ଉପସ୍ଥିତ ହୋଇଥିବା ବାମନ ରୂପୀ ଭଗବାନଙ୍କୁ ପ୍ରାର୍ଥନା କରି ସେ କହିଥିଲେ ।

"ମନ୍ତ୍ରତନ୍ତ୍ରତଶ୍ଛିଦ୍ରଂ ଦେଶକାଲାର୍ହ ବସ୍ତୁତଃ
ସର୍ବଂ କରୋତି ନିଶ୍ଛିଦ୍ରଂ ନାମ ସଂକୀର୍ତ୍ତନଂ ତବ ।"

(ଶ୍ରୀମଦ୍ଭାଗବତ, ୮ ।୨୩ ।୧୬ )

"ଭଗବାନ ! ମନ୍ତ୍ର, ତନ୍ତ୍ର, ଦେଶ, କାଳ, ପାତ୍ର, ଓ ବସ୍ତୁ, ଆଦିରେ ଯେଉଁ ତ୍ରୁଟି ପରିଦୃଷ୍ଟ ହୁଏ, ତାହାସବୁ ଆପଣଙ୍କର ନାମ କୀର୍ତ୍ତନ ଦ୍ୱାରାହିଁ ଦୂର ହୋଇଥାଏ ।"

# ବ୍ରହ୍ମର୍ଷି ବିଶ୍ୱାମିତ୍ର

କୁଶିକ ବଂଶର ମହାରାଜା ଗାଧିଙ୍କ ପୁତ୍ର ଭାବରେ ମହର୍ଷି ବିଶ୍ୱାମିତ୍ର ସୁପ୍ରସିଦ୍ଧ । କୁଶିକ ବଂଶରେ ଜନ୍ମ ହୋଇଥିବାରୁ ତାଙ୍କୁ କୌଶିକ ବୋଲି କୁହାଯାଏ । କ୍ଷତ୍ରିୟ କୁଳରେ ଜନ୍ମ ଗ୍ରହଣ କରିଥିଲେ ମଧ୍ୟ କଠୋର ତପସ୍ୟା ବଳରେ ସେ ବ୍ରହ୍ମତ୍ୱ ଲାଭ କରିଥିଲେ । ଏହାହିଁ ତାଙ୍କ ଜୀବନର ସର୍ବଶ୍ରେଷ୍ଠ ମହତ୍ତ୍ୱ ।

ମହାରାଜା ଗାଧିଙ୍କ ପରେ ବିଶ୍ୱାମିତ୍ର କୁଶିକ ବଂଶର ରାଜ ସିଂହାସନ ଅଳଙ୍କୃତ କରିଥିଲେ । ଥରେ ସେ ନିଜେ ସେନାମାନଙ୍କ ସହିତ ମହର୍ଷି ବଶିଷ୍ଠଙ୍କର ଅତିଥି ହୋଇଥିଲେ । ବଶିଷ୍ଠଙ୍କ ଆଶ୍ରମରେ କାମଧେନୁ ନାମକ ଗୋଟିଏ ସର୍ବଗୁଣ ସମ୍ପନ୍ନ ଧେନୁ ଅବସ୍ଥାନ କରୁଥିଲା । ସେହି ଧେନୁ ସାହାଯ୍ୟରେ ବଶିଷ୍ଠଙ୍କର ସମସ୍ତ ଅଭୀଷ୍ଟ ପୂରଣ ହେଉଥିଲା । ତେଣୁ ବିଶ୍ୱାମିତ୍ର ତାଙ୍କ ଆଶ୍ରମରେ ପହଞ୍ଚିଲାକ୍ଷଣି ସେ ସେହି କାମଧେନୁ ସାହାଯ୍ୟରେ ନାନାପ୍ରକାର ସୁମିଷ୍ଟ ଭୋଜନ ସାମଗ୍ରୀ ସୃଷ୍ଟି କରି ବିଶ୍ୱାମିତ୍ର ଓ ତାଙ୍କ ସେନାମାନଙ୍କର ସତ୍କାର କରିଥିଲେ । ବିଶ୍ୱାମିତ୍ର ଏହା ଦେଖି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ କାମଧେନୁ ପରି ସର୍ବଗୁଣ ସମ୍ପନ୍ନ ଗାଈକୁ ନିଜ ରାଜ୍ୟକୁ ନେବାପାଇଁ ଉଦ୍ୟତ ହେଲେ । କିନ୍ତୁ କୌଣସି ମୂଦ୍ରା କିମ୍ବା ପଦାର୍ଥ ବଦଳରେ ବଶିଷ୍ଠ ଗାଈ ବିକ୍ରୀ କରିବାକୁ ମନାକରି ଦେଲେ । ଏହା ଦେଖି ବିଶ୍ୱାମିତ୍ର ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ବଳ ପୂର୍ବକ ଗାଈ ହରଣ କରିବାକୁ ଉଦ୍ୟତ ହେଲେ । କିନ୍ତୁ ବଶିଷ୍ଠ ନିଜର ବ୍ରହ୍ମଶକ୍ତି ସାହାଯ୍ୟରେ ଅପାର ସୈନ୍ୟ ସୃଷ୍ଟି କରି ବିଶ୍ୱାମିତ୍ରଙ୍କୁ ପରାଜିତ କରିଦେଲେ । ପରାଜିତ ହେବାପରେ ବିଶ୍ୱାମିତ୍ରଙ୍କର ଦ୍ୱେଷ ଓ କ୍ରୋଧ ଅଧିକ ବଢ଼ିବାକୁ ଲାଗିଲା । ବାହୁବଳ ଅପେକ୍ଷା ବ୍ରହ୍ମବଳ ଯେ ଅଧିକ ଏହା ଉପଲବ୍ଧି କରି ସେ ତପସ୍ୟା କରିବାକୁ ମନସ୍ଥ କଲେ । ସେଠାରୁ ଫେରି ସେ କଠୋର ତପସ୍ୟା କରିବାକୁ ଲାଗିଲେ ଏବଂ ଭଗବାନ ଶଙ୍କରଙ୍କୁ ସନ୍ତୁଷ୍ଟ କରି ନାନାପ୍ରକାର ଦିବ୍ୟାସ୍ତ୍ର ପ୍ରାପ୍ତ ହେଲେ । ସେହି ସମସ୍ତ ଦିବ୍ୟାସ୍ତ୍ର ଧରି ସେ ପୁନଶ୍ଚ ବଶିଷ୍ଠଙ୍କ ନିକଟକୁ ଆସିଲେ ! କିନ୍ତୁ ବଶିଷ୍ଠଙ୍କର ବ୍ରହ୍ମଦଣ୍ଡ ଆଗରେ ସେ ସବୁ ଦିବ୍ୟାସ୍ତ୍ର ନିଷ୍ଫଳ ହୋଇଗଲା । ତେଣୁ ଉଗ୍ରତପ କରି ବ୍ରାହ୍ମଣତ୍ୱ ଲାଭ କରିବାକୁ ସେ ମନସ୍ଥ କଲେ ।

ତପସ୍ୟାରେ ମହାନ୍ ବାଧକ ହେଉଛନ୍ତି କାମ, କ୍ରୋଧ ଏବଂ ଲୋଭ । ଏହା ନରକର ଦ୍ୱାର ସଦୃଶ, ସେଥିପାଇଁ ଗୀତାରେ କୁହାଯାଇଛି—

"ତ୍ରିବିଧଂ ନରକ ସ୍ୟେଦଂ ଦ୍ୱାରଂ ନାଶନମାତ୍ମନଃ" । ମନୁଷ୍ୟ ଯେତେ ବିଦ୍ୱାନ୍, ବୁଦ୍ଧିମାନ ଓ ତପସ୍ୱୀ ହେଲେ ମଧ୍ୟ କାମ-କ୍ରୋଧ-ଲୋଭ ମଧ୍ୟରୁ କୌଣସି ଗୋଟିକରେ ବଶୀଭୁତ ହେଲେ ତାହାର ସମସ୍ତ ବିଦ୍ୟା, ବୁଦ୍ଧି ଓ ତପ ନିଷ୍ଫଳ ହୋଇଯାଏ । ସେ ମୋହଗ୍ରସ୍ତହୋଇ ନିଜର ସର୍ବନାଶ କରି ବସେ । ବିଶ୍ୱାମିତ୍ର ଥିଲେ ଏହି ଧରଣର ଜଣେ ସାଧକ । ବଶିଷ୍ଠଙ୍କର

ଅନନ୍ତ ସାଧନ କରିବାକୁ କ୍ରୋଧାନ୍ଧ ହୋଇ ସେ ତପସ୍ୟାରେ ନିମଗ୍ନ ହୋଇଥିଲେ । ତା' ଛଡ଼ା ସେ ରାଜାଥିବାରୁ କାମ ଓ ଲୋଭ ତାଙ୍କ ମଧ୍ୟରେ ପରିପୂର୍ଣ୍ଣ ହୋଇ ରହିଥିଲା । ତେଣୁ ଯେତେବେଳେ ଇନ୍ଦ୍ର ତାଙ୍କ ତପସ୍ୟାରେ ବିଘ୍ନ ଘଟାଇବାକୁ ଅପ୍ସରା ମେନକାଙ୍କୁ ତାଙ୍କ ନିକଟକୁ ପଠାଇଲେ, ମେନକାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ସେ ତାହା ପ୍ରତି କାମାସକ୍ତ ହୋଇ ପଡ଼ିଲେ । ଫଳରେ ତାଙ୍କ ଔରସରେ ମେନକାଙ୍କ ଗର୍ଭରୁ ଜନ୍ମ ଲାଭ କଲେ ଶକୁନ୍ତଳା ନାମ୍ନୀ କନ୍ୟା ରତ୍ନ ।

ପରେ ରାଜା ତ୍ରିଶଙ୍କୁ ବଶିଷ୍ଠଙ୍କ ଦ୍ୱାରା ଶାପଗ୍ରସ୍ତ ହୋଇ ମଧ୍ୟ ସଶରୀରରେ ସ୍ୱର୍ଗ ଗମନ କରିବାକୁ ଇଚ୍ଛା କରି ବିଶ୍ୱାମିତ୍ରଙ୍କ ନିକଟରେ ଉପସ୍ଥିତ ହେଲେ । ବଶିଷ୍ଠଙ୍କ ଅଭିଶାପକୁ ନିଷ୍ଫଳ କରିବାପାଇଁ ବିଶ୍ୱାମିତ୍ର ରାଜା ତ୍ରିଶଙ୍କୁଙ୍କୁ ଏକ ଯଜ୍ଞର ଆୟୋଜନ କରିବାକୁ ଉପଦେଶ ଦେଲେ । ତ୍ରିଶଙ୍କୁ ଯେଉଁ ଯଜ୍ଞ ଅନୁଷ୍ଠାନ କଲେ, ସେହି ଯଜ୍ଞରେ ଅନ୍ୟ ସମସ୍ତ ଋଷି ଯୋଗଦାନ କରିଥିଲେ ! କିନ୍ତୁ ବଶିଷ୍ଠଙ୍କର ଏକଶତ ପୁତ୍ରଙ୍କ ମଧ୍ୟରୁ କେହି ହେଲେ ସେହି ଯଜ୍ଞକୁ ଆସି ନଥିଲେ । ଏହା ଦେଖି ବିଶ୍ୱାମିତ୍ର ଅତ୍ୟନ୍ତ କ୍ରୋଧାନ୍ୱିତ ହୋଇ ବଶିଷ୍ଠଙ୍କର ସେହି ଏକଶତ ପୁତ୍ରଙ୍କୁ ଅତି ନିର୍ମମ ଭାବରେ ହତ୍ୟା କଲେ । ତାହାପରେ ସେ ନିଜର ତପଶକ୍ତି ବଳରେ ରାଜା ତ୍ରିଶଙ୍କୁଙ୍କୁ ସଶରୀରରେ ସ୍ୱର୍ଗକୁ ପ୍ରେରଣ କଲେ । କିନ୍ତୁ ସ୍ୱର୍ଗର ଦେବତାମାନେ ତ୍ରିଶଙ୍କୁଙ୍କୁ ସ୍ୱର୍ଗରେ ପ୍ରବେଶ କରିବାକୁ ଅନୁମତି ଦେଲେ ନାହିଁ । ଏହା ଦେଖି ବିଶ୍ୱାମିତ୍ର ସ୍ୱର୍ଗ ଓ ମର୍ତ୍ତ୍ୟର ମଧ୍ୟବର୍ତ୍ତୀ ସ୍ଥାନରେ ଏକ ଦ୍ୱିତୀୟ ସ୍ୱର୍ଗ ସୃଷ୍ଟି କରି ସେଠାରେ ରହିବାକୁ ତ୍ରିଶଙ୍କୁଙ୍କୁ ନିର୍ଦ୍ଦେଶ ଦେଲେ । ସେହି ଦ୍ୱିତୀୟ ସ୍ୱର୍ଗ ପାଇଁ ସେ ନିଜର ତପଃଶକ୍ତି ବଳରେ ଏକ ନୂତନ ସୃଷ୍ଟି ଆରମ୍ଭ କଲେ । ସେହି ନୂତନ ସୃଷ୍ଟିରେ ସେ ଏପରି ପ୍ରାଣୀ ସବୁ ଗଠନ କଲେ, ଯେଉଁମାନେ କି ବ୍ରହ୍ମାଙ୍କ ସୃଷ୍ଟିରେ ମଧ୍ୟ ସ୍ଥାନ ପାଇ ନଥିଲେ । ବ୍ରହ୍ମା ବିଶ୍ୱାମିତ୍ରଙ୍କୁ ଏହି କାର୍ଯ୍ୟରୁ ବାରଣ କରି କହିଲେ ଯେ ବ୍ରହ୍ମଣତ୍ୱ ଲାଭ ପାଇଁ ଏସବୁ କାର୍ଯ୍ୟ ଉତ୍କୃଷ୍ଟ ଉପାୟ ନୁହେଁ । ଯେଉଁ ଦିନ ସ୍ୱୟଂ ବଶିଷ୍ଠ ତାଙ୍କୁ ବ୍ରାହ୍ମଣତ୍ୱ ପ୍ରଦାନ କରିବେ, ସେହି ଦିନ ହିଁ ସେ ବ୍ରହ୍ମର୍ଷି ହେବାର ସୌଭାଗ୍ୟ ଅର୍ଜନ କରିବେ ।

ଏକଥା ଶୁଣି ବିଶ୍ୱାମିତ୍ର ଅଧିକ କଠୋର ତପସ୍ୟାରେ ନିମଗ୍ନ ରହିଲେ । କିନ୍ତୁ ବଶିଷ୍ଠଙ୍କ ଠାରୁ ବ୍ରାହ୍ମଣତ୍ୱ ଲାଭର କୌଣସି ଆଶା ନ ଦେଖି ଦିନେ ରାତ୍ରିକାଳରେ ବଶିଷ୍ଠଙ୍କୁ ହତ୍ୟା କରିବାପାଇଁ ସେ ଖଡ଼୍ଗ ହସ୍ତରେ ରାତ୍ରିର ଅନ୍ଧକାର ମଧ୍ୟରେ ଲୁଚି ଲୁଚି ଆସି ବଶିଷ୍ଠଙ୍କ ଆଶ୍ରମ ନିକଟରେ ଉପସ୍ଥିତ ହେଲେ । ସେହି ସମୟରେ ସେ ବଶିଷ୍ଠ ଓ ତାଙ୍କ ପତ୍ନୀ ଅରୁନ୍ଧତୀଙ୍କ ମଧ୍ୟରେ ହେଉଥିବା କଥୋପକଥନ ଶୁଣିବାକୁ ପାଇଲେ । ବଶିଷ୍ଠ କହୁଥିଲେ, "ଏପରି ସୁନ୍ଦର ଜ୍ୟୋତ୍ସ୍ନା ରାତ୍ରିରେ ତପସ୍ୟା ଦ୍ୱାରା ଭଗବାନଙ୍କୁ ସନ୍ତୁଷ୍ଟ କରିବାର ପ୍ରୟତ୍ନ କେବଳ ବିଶ୍ୱାମିତ୍ରଙ୍କ ପରି ଭାଗ୍ୟବାନ ବ୍ୟକ୍ତି ହିଁ କରିପାରନ୍ତି ।"

ଏକଥା ଶୁଣି ବିଶ୍ୱାମିତ୍ର ଦ୍ରବୀଭୂତ ହୋଇ ଗଲେ । ଏକାନ୍ତରେ ଶତ୍ରୁର ପ୍ରଶଂସା କରୁଥିବା ମନୁଷ୍ୟ କ'ଣ ସାଧାରଣ ମାନବ ? ସେ ତ ମହାମାନବ ! ବଶିଷ୍ଠଙ୍କର ମହାନତା ଆଗରେ ବିଶ୍ୱାମିତ୍ରଙ୍କର ସମସ୍ତ କ୍ରୋଧ ଦୂର ହୋଇଗଲା । ବଶିଷ୍ଠଙ୍କର ଶତପୁତ୍ର ହତ୍ୟା କରିଥିବାରୁ ସେ ପଶ୍ଚାତ୍ତାପ କରିବାକୁ ଲାଗିଲେ । ଅବିଲମ୍ବେ ଖଡ୍ଗ ଦୂରକୁ ନିକ୍ଷେପ କରି ଆଶ୍ରମ ମଧ୍ୟରେ ପ୍ରବେଶ କଲେ ଏବଂ ବଶିଷ୍ଠଙ୍କ ପାଦତଳେ ପ୍ରଣାମ କରି ତାଙ୍କୁ ବ୍ରହ୍ମଜ୍ଞାନ ପ୍ରଦାନ କରିବାକୁ ଅନୁରୋଧ କଲେ । କିନ୍ତୁ ବଶିଷ୍ଠ କହିଲେ ଯେ କେବଳ ଅନନ୍ତ ଦେବହିଁ ତାଙ୍କୁ ବ୍ରହ୍ମଜ୍ଞାନ ଦେଇ ପାରିବେ । ତେଣୁ ସେ ଅନନ୍ତଦେବଙ୍କ ନିକଟକୁ ଯାଇ ବ୍ରହ୍ମଜ୍ଞାନ ପାଇଁ ପ୍ରାର୍ଥନା କରିବା ଉଚିତ ।

ବଶିଷ୍ଠଙ୍କ ଉପଦେଶାନୁସାରେ ବିଶ୍ୱାମିତ୍ର ଅନନ୍ତଦେବଙ୍କ ନିକଟକୁ ଗମନ କଲେ । ସେଠାରେ ସେ ଦେଖିଲେ ଯେ ଅନନ୍ତ ଦେବ ସହସ୍ର ଫଣା ମେଲି ପୃଥିବୀକୁ ଧାରଣ କରି ଅଛନ୍ତି । ସେ ଅନନ୍ତଦେବଙ୍କୁ ବ୍ରହ୍ମଜ୍ଞାନ ପାଇଁ ନିବେଦନ କଲେ । ଅନନ୍ତ ଦେବ କହିଲେ - "ତୁମେ ଯଦି ନିଜ ହସ୍ତରେ ପୃଥିବୀକୁ ଅବିଚଳ ଭାବରେ ଧାରଣ କରି ପାରିବ, ତେବେ ମୁଁ ତୁମକୁ ବ୍ରହ୍ମଜ୍ଞାନ ପ୍ରଦାନ କରିବ ।" ବିଶ୍ୱାମିତ୍ର ପୃଥିବୀକୁ ଧାରଣ କରିବାପାଇଁ ହସ୍ତ ପ୍ରସାରଣ କଲେ । କିନ୍ତୁ ଅନନ୍ତ ଦେବ ପୃଥିବୀକୁ ତାଙ୍କ ହାତକୁ ବଢ଼ାଇ ଦେବା ମାତ୍ରେ ତାଙ୍କ ହାତ ପୃଥିବୀର ଭାର ସମ୍ଭାଳି ପାରିଲା ନାହିଁ । ତେଣୁ ପୃଥିବୀ ଶୂନ୍ୟେ ଶୂନ୍ୟେ ଘୂରିବାକୁ ଲାଗିଲା । ଏହାଫଳରେ ପୃଥିବୀର କୋଟି କୋଟି ଜୀବଜନ୍ତୁ 'ରକ୍ଷାକର' 'ରକ୍ଷାକର' ଶବ୍ଦରେ ଗଗନ ପବନ ନିନାଦିତ କରିଦେଲେ । ନିଜେ ବିଶ୍ୱାମିତ୍ର ମଧ୍ୟ 'ରକ୍ଷାକର' 'ରକ୍ଷାକର' ଶବ୍ଦରେ ଅନନ୍ତ ଦେବଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ । ଅନନ୍ତ ଦେବ କହିଲେ "ତୁମେ ଯଦି ଜୀବନରେ କେବେ ସତ୍‌ସଙ୍ଗ ଲାଭ କରିଥାଅ, ତେବେ ତାହା ସ୍ମରଣ କର ।" ବିଶ୍ୱାମିତ୍ର ବଶିଷ୍ଠଙ୍କ ନାମ ସ୍ମରଣ କରିବା ମାତ୍ରେ ପୃଥିବୀ ତାଙ୍କ ହସ୍ତରେ ସ୍ଥିର ହେଲା ।

ଏହା ଦେଖି ଅନନ୍ତ ଦେବ କହିଲେ—"ଯାହାଙ୍କ ନାମ ସ୍ମରଣ କରିବା ମାତ୍ରେ ପୃଥିବୀ ମହାପ୍ରଳୟରୁ ଉଦ୍ଧାର ପାଇଲା, ତାଙ୍କ ଛଡ଼ା ତୁମକୁ ଆଉ କିଏ ବ୍ରହ୍ମଜ୍ଞାନ ଦେଇ ପାରିବ ? ତୁମେ ତାଙ୍କ ନିକଟକୁ ହିଁ ଫେରି ଯାଅ ।"

ଅନନ୍ତର ବିଶ୍ୱାମିତ୍ର ବଶିଷ୍ଠଙ୍କ ନିକଟକୁ ଫେରି ଆସି ତାଙ୍କ ପାଦତଳେ ଲୁଣ୍ଠିତ ହୋଇ ପଡ଼ିଲେ । ବଶିଷ୍ଠ ବିଶ୍ୱାମିତ୍ରଙ୍କ ହାତ ଧରି କହିଲେ —"ଉଠ, ବ୍ରହ୍ମର୍ଷି, ଉଠ ।"

ସେହି ଦିନଠାରୁ ବିଶ୍ୱାମିତ୍ର ବ୍ରହ୍ମର୍ଷି ପଦ ଲାଭ କରି ବ୍ରହ୍ମଜ୍ଞାନର ଅଧିକାରୀ ହେଲେ । ବଶିଷ୍ଠଙ୍କ ସାନ୍ନିଧ୍ୟରେ ଆସି ତାଙ୍କ ଅନ୍ତରରୁ କାମ, କ୍ରୋଧ, ଲୋଭ ଆଦି ବିକାର ଦୂର ହୋଇଗଲା । ଶୁଦ୍ଧ ଅନ୍ତଃକରଣରେ ସେ କଠୋର ତପସ୍ୟାରେ ନିମଗ୍ନ ରହିଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ସ୍ୱୟଂ ବ୍ରହ୍ମା ତାଙ୍କୁ ବ୍ରାହ୍ମଣତ୍ୱ ପ୍ରଦାନ କରିଥିଲେ ।

ଅନେକ ସମୟରେ ମହର୍ଷି ବିଶ୍ୱାମିତ୍ର ବିଷ୍ଣୁଙ୍କ ପ୍ରୀତି ଉଦ୍ଦେଶ୍ୟରେ ନିଜ ଆଶ୍ରମ ସନ୍ନିକଟରେ ଯଜ୍ଞ ଅନୁଷ୍ଠାନ କରୁଥିଲେ । ଯେଉଁ ଅରଣ୍ୟରେ ବିଶ୍ୱାମିତ୍ରଙ୍କ ଆଶ୍ରମ ଥିଲା, ସେହି

ଅରଣ୍ୟରେ ବହୁ ରାକ୍ଷସ ବସବାସ କରୁଥିବାରୁ ସେମାନେ ସର୍ବଦା ସେହି ଯଜ୍ଞରେ ନାନା-ପ୍ରକାର ବିଘ୍ନ ଘଟାଉ ଥିଲେ । ବିଶେଷ କରି ରାବଣର ଅନୁଚର ମାରୀଚ ଓ ସୁବାହୁ ନିଜର ରାକ୍ଷସୀ ସେନା ସହିତ ଯଜ୍ଞରେ ନାନାପ୍ରକାର ଉତ୍ପାତ ସୃଷ୍ଟି କରୁଥିଲେ ଏବଂ ଯଜ୍ଞକୁଣ୍ଡରେ ହାଡ଼, ରକ୍ତ, ମାଂସ, ମଳ, ମୂତ୍ର ଆଦି ଅପବିତ୍ର ବସ୍ତୁ ନିକ୍ଷେପ କରି ଯଜ୍ଞର ପବିତ୍ରତା ନଷ୍ଟ କରି ଦେଉଥିଲେ । ସେମାନଙ୍କର ଉପଦ୍ରବ ହେତୁ ମହର୍ଷି ବିଶ୍ୱାମିତ୍ର କୌଣସି ମତେ ଯଜ୍ଞ କରି ପାରୁ ନଥିଲେ । ଅଭିଶାପ ଦେଇ ସେମାନଙ୍କୁ ଭସ୍ମ କରି ଦେବାର ସାମର୍ଥ୍ୟ ଥିଲେ ମଧ୍ୟ ମହର୍ଷିଙ୍କ ମନରେ ସେମାନଙ୍କ ପ୍ରତି କ୍ରୋଧଭାବ ଆସୁ ନଥିଲା । ତାଙ୍କ ମନରୁ କାମ-କ୍ରୋଧ-ଲୋଭ ସଂପୂର୍ଣ୍ଣ ଭାବେ ଦୂରୀଭୂତ ହୋଇ ଯାଇଥିଲା । ଯେତେବେଳେ ସେ ଜାଣିଲେ ଯେ ସ୍ୱୟଂ ଭଗବାନ ପୃଥିବୀର ଭାର ହରଣ କରିବାପାଇଁ ଅଯୋଧ୍ୟାରେ ରାମାବତାର ଧାରଣ କରିଛନ୍ତି, ସେତେବେଳେ ସେ ଅତ୍ୟନ୍ତ ଆନନ୍ଦିତ ହୋଇ ଅଯୋଧ୍ୟାକୁ ଗମନ କଲେ ଏବଂ ଅଯୋଧ୍ୟା —ନରେଶ ଦଶରଥଙ୍କୁ ବୁଝାଇ ରାମ ଲକ୍ଷ୍ମଣଙ୍କୁ ଅରଣ୍ୟକୁ ନେଇ ଆସିଲେ । ଯଜ୍ଞରେ ସର୍ବାଧିକ ବିଘ୍ନ ଘଟାଉଥିବା ତାଡ଼କା ରାକ୍ଷସୀଙ୍କୁ ଭଗବାନ ରାମ ଗୋଟିଏ ମାତ୍ର ବାଣରେ ନିହତ କରି ଦେବାରୁ ତାଙ୍କର ପରାପୂର ସ୍ୱରୂପର ପରିଚୟ ପାଇ ବିଶ୍ୱାମିତ୍ର ତାଙ୍କୁ 'ବଳା' ଓ 'ଅତିବଳା' ମନ୍ତ୍ର ଶିକ୍ଷାଦେଲେ ଏବଂ ତା'ସହିତ ଅନେକ ଦିବ୍ୟାସ୍ତ୍ର ପ୍ରଦାନ କଲେ । ସେହିସବୁ ଦିବ୍ୟାସ୍ତ୍ର ଦ୍ୱାରା ଭଗବାନ ରାମ ସୁବାହୁ ପ୍ରଭୃତି ରାକ୍ଷସମାନଙ୍କୁ ବଧ କରି ଋଷିମାନଙ୍କର ଯଜ୍ଞରକ୍ଷା କରିଥିଲେ ।

ତାହାପରେ ବିଶ୍ୱାମିତ୍ର ରାମ – ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ଜନକ ପୁରୀକୁ ଗମନ କଲେ । ସେଠାରେ ମହର୍ଷିଙ୍କର ପ୍ରେରଣା ଲାଭ କରି ଶ୍ରୀରାମ ଚନ୍ଦ୍ର ଶିବଧନୁ ଭଙ୍ଗ କଲେ ଏବଂ ଜନକ – ରାଜକୁମାରୀ ସୀତାଙ୍କ ସହିତ ବିବାହ ବନ୍ଧନରେ ଆବଦ୍ଧ ହେଲେ । ଅଯୋଧ୍ୟା—ନରେଶ ଦଶରଥ ପୁତ୍ର ଓ ପୁତ୍ର ବଧୂମାନଙ୍କୁ ଧରି ଅଯୋଧ୍ୟାକୁ ଫେରିବା ସମୟରେ ବିଶ୍ୱାମିତ୍ର ମଧ୍ୟ ତାଙ୍କ ସହିତ ଅଯୋଧ୍ୟାକୁ ଆସିଥିଲେ ଏବଂ ଅନେକ ଦିନ ପର୍ଯ୍ୟନ୍ତ ଅତିଥି ଭାବରେ ଅଯୋଧ୍ୟାରେ ଅବସ୍ଥାନ କରିଥିଲେ । ତା'ପରେ ଚିତ୍ରକୂଟରେ ମହାରାଜା ଜନକ ଶ୍ରୀରାମଙ୍କୁ ସାକ୍ଷାତ କରିବା ସମୟରେ ବିଶ୍ୱାମିତ୍ର ମଧ୍ୟ ତାଙ୍କ ସହିତ ଶ୍ରୀରାମଙ୍କୁ ସାକ୍ଷାତ କରିଥିଲେ ।

ବିଶ୍ୱାମିତ୍ରଙ୍କର ସାରା ଜୀବନ ପରୋପକାର ଏବଂ ତପସ୍ୟାରେ ଅତିବାହିତ ହୋଇଥିଲା । ଭଗବାନ ଶ୍ରୀରାମ ବଶିଷ୍ଠଙ୍କ ପରି ତାଙ୍କୁ ମଧ୍ୟ ଗୁରୁଦେବ ବୋଲି ମାନ୍ୟ ଦେଖାଉଥିଲେ । ଏପରିକି ଜନକ ପୁରୀକୁ ଯିବା ବାଟରେ ସେ ସ୍ୱହସ୍ତରେ ମହର୍ଷିଙ୍କର ପାଦସେବା କରିଥିଲେ । ଭଗବାନଙ୍କ ଠାରୁ ପ୍ରତ୍ୟକ୍ଷ ସେବା ପାଇବାର ସୌଭାଗ୍ୟ କେତେ ଜଣଙ୍କ ଭାଗ୍ୟରେ ଘଟେ ?

ପବିତ୍ର ଗାୟତ୍ରୀ ମନ୍ତ୍ରର ଦ୍ରଷ୍ଟା ଭାବରେ ବିଶ୍ୱାମିତ୍ରଙ୍କ ନାମ ଉଲ୍ଲେଖଣୀୟ । ସେଥିପାଇଁ ସେ ଆମ୍ଭମାନଙ୍କର ଚିର ନମସ୍ୟ ।

———

# ଆଦିକବି ବାଲ୍ମୀକି

କୂଜନ୍ତଂ ରାମ ରାମେତି ମଧୁରଂ ମଧୁରାକ୍ଷରମ୍
ଆରୁହ୍ୟ କବିତାଶାଖାଂ ବନ୍ଦେ ବାଲ୍ମୀକି କୋକିଳମ୍ ।।

ଆଦିକବି ଭାବରେ ମହର୍ଷି ବାଲ୍ମୀକି ହେଉଛନ୍ତି ଆମ୍ଭମାନଙ୍କର ପ୍ରାତଃସ୍ମରଣୀୟ ମହାପୁରୁଷ । ରାମାୟଣ, ପରି ସୁ-ପ୍ରସିଦ୍ଧ ମହାକାବ୍ୟ ରଚନା କରି ସେ ଲୋକଖ୍ୟାତି ଅର୍ଜନ କରିଅଛନ୍ତି । ରାମାୟଣର ବର୍ଣ୍ଣିତ ବସ୍ତୁ ଯେପରି ମହନୀୟ ସେହିପରି ଶିକ୍ଷାପ୍ରଦ ମଧ୍ୟ । ପୃଥିବୀରେ ମାନବ ସଭ୍ୟତା ବଞ୍ଚି ରହିଥିବା ପର୍ଯ୍ୟନ୍ତ ବାଲ୍ମୀକି କୃତ ରାମାୟଣ ଯେ ଉଚ୍ଚ ଶିଖରରେ ଅଧିଷ୍ଠିତ ହୋଇ ରହିଥିବ, ଏଥିରେ କୌଣସି ସନ୍ଦେହ ନାହିଁ । ରାମାୟଣ ପରି ମହାକାବ୍ୟ ରଚନା କରି ବାଲ୍ମୀକିଙ୍କର ଉତ୍ତର ଜୀବନ ଯେତିକି ମହନୀୟ, ତାଙ୍କର ଆଦ୍ୟ ଜୀବନ ମଧ୍ୟ ସେତିକି କୌତୁହଳପ୍ରଦ ।

ବାଲ୍ମୀକିଙ୍କର ପିତୃମାତୃ ଦତ୍ତ ନାମ ଥିଲା—ରତ୍ନାକର । ସେ ଅଙ୍ଗିରା ଗୋତ୍ରରେ ଏକ ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରିଥିଲେ । ବାଲ୍ୟକାଳରୁ କୁସଙ୍ଗରେ ପଡ଼ି ସେ ଧର୍ମ କର୍ମରୁ ବିଚ୍ୟୁତ ହୋଇଗଲେ ଏବଂ ବିଦ୍ୟାଲାଭରୁ ବଞ୍ଚିତ ହେଲେ । ଦିନକୁ ଦିନ ତାଙ୍କର ସ୍ୱଭାବ ଅତ୍ୟନ୍ତ କ୍ରୂର ହୋଇ ପଡ଼ିଲା । ଯୌବନାବସ୍ଥାରେ ଯେତେବେଳେ ତାଙ୍କ ଉପରେ ପରିବାରର ଭରଣ-ପୋଷଣର ଦାୟିତ୍ୱ ପଡ଼ିଲା, ସେତେବେଳେ ସେ ଅନ୍ୟ କୌଣସି ଉପାୟ ନକରି ଦସ୍ୟୁ ବୃତ୍ତି କରିବାକୁ ଲାଗିଲେ । ବନରେ ଲୁଚି ସେ ପଥିକମାନଙ୍କର ଧନଜୀବନ ଅପହରଣ ପୂର୍ବକ କୁଟୁମ୍ବ ପ୍ରତି ପୋଷଣ କରୁଥିଲେ । ଦିନକୁ ଦିନ ସେ ଏପରି ଭୟଙ୍କର ହୋଇ ପଡ଼ିଲେ ଯେ ତାଙ୍କ ଅତ୍ୟାଚାରର ଉତ୍ପୀଡ଼ନରେ ଭୟଭୀତ ହୋଇ ପଥିକମାନେ ଆଉ ବନ ପଥରେ ଗମନା ଗମନ କରି ପାରିଲେ ନାହିଁ । ଚାରିଆଡ଼େ ହାହାକାର ପଡ଼ିଗଲା ।

ଦିନେ ଦେବର୍ଷି ନାରଦ ସେହି ବନ ପଥରେ ଯାଉଥିବା ସମୟରେ ରତ୍ନାକରଙ୍କ ସହିତ ତାଙ୍କର ସାକ୍ଷାତ ହୋଇଗଲା । ରତ୍ନାକର ତାଙ୍କୁ ହତ୍ୟା କରିବାପାଇଁ ଉଦ୍ୟତ ହେବା ସମୟରେ ଦେବର୍ଷି ନାରଦ ଅତ୍ୟନ୍ତ ସ୍ନେହର ସହିତ କହିଲେ – "ହେ ଭାଇ ! ମୋ ପାଖରେ ତ ଧନରତ୍ନ କିଛି ନାହିଁ । ମୋତେ ହତ୍ୟା କଲେ ତୁମର ଅବା କ'ଣ ଲାଭ ହେବ ? ତେବେ ମୁଁ ତୁମକୁ ଗୋଟିଏ କଥା ପଚାରୁଛି । ତୁମେ ପ୍ରାଣୀମାନଙ୍କୁ ବୃଥାରେ କାହିଁକି ହତ୍ୟା କରୁଛ ? ପ୍ରାଣୀମାନଙ୍କୁ କଷ୍ଟ ଦେବା ଓ ହତ୍ୟା କରିବାଠୁ ବଳି ପାପ ଆଉ କିଛି ନାହିଁ । ଏହି ପାପ ହେତୁ ପରଲୋକରେ ପ୍ରାଣୀକୁ ନାନାବିଧ ନରକ ଯନ୍ତ୍ରଣା ଭୋଗ କରିବାକୁ ପଡ଼ିଥାଏ ।

ଭକ୍ତିଦ୍ୱାରା ତ୍ରିଗୁଣାତ୍ମକ ଅନ୍ତଃକରଣର ଲୟ ହୋଇ ବ୍ରହ୍ମାନନ୍ଦ ପ୍ରକାଶ ଲାଭକରେ । ଅବଶ୍ୟ ଭକ୍ତି—ସାଧନରେ ଜ୍ଞାନକୁ ସମ୍ପୂର୍ଣ୍ଣ ରୂପେ ବାଦ ଦିଆଯାଇ ନାହିଁ । ଅଗ୍ରଦ୍ଧା ରୂପୀ ମଳ ଦୂର କରିବାପାଇଁ ଜ୍ଞାନ ନିତାନ୍ତ ଆବଶ୍ୟକ । ଗୀତାରେ ମଧ୍ୟ ଭକ୍ତି—ସାଧନରେ ଜ୍ଞାନକୁ ପ୍ରାଧାନ୍ୟ ଦିଆଯାଇଛି । ଭକ୍ତିର ଲକ୍ଷଣ ହେଉଛି—ଭଗବାନଙ୍କ ପ୍ରତି ପରମ ଅନୁରାଗ ।

"ସା ପରାନୁରକ୍ତିରୀଶ୍ୱରେ ।"

( ଶାଣ୍ଡିଲ୍ୟ—ସୂତ୍ର )

ଏହି ଅନୁରାଗ ଦ୍ୱାରା ଜୀବ ଭଗବନ୍ମୟ ହୋଇଯାଏ । ସେତେବେଳେ ତା'ର ଅନ୍ତଃକରଣ ପୃଥକ୍ ନ ରହି ଭଗବାନଙ୍କ ମଧ୍ୟରେ ବିଲୀନ ହୋଇଯାଏ । ଏହାହିଁ ମୁକ୍ତି ।

ଏହିପରି ମହର୍ଷି ଶାଣ୍ଡିଲ୍ୟ ଭଗବଦ୍ ଭକ୍ତିର ଉପଯୋଗିତା ତଥା ଜ୍ଞାନ ଅପେକ୍ଷା ଭକ୍ତିର ଶ୍ରେଷ୍ଠତା ପ୍ରତିପାଦନ କରିଅଛନ୍ତି ।

# ମାର୍କଣ୍ଡେୟ ମୁନି

ମାର୍କଣ୍ଡେୟ ମୁନି ଅନାଦି କାଳର ସିଦ୍ଧ ସାଧକ ଭାବେ ସୁପ୍ରସିଦ୍ଧ । ସେ ଥିଲେ ତ୍ରିକାଳଦର୍ଶୀ, ବ୍ରହ୍ମଜ୍ଞ ଓ ମୃତ୍ୟୁଞ୍ଜୟୀ । ତାଙ୍କ ସମ୍ବନ୍ଧରେ ପୁରାଣମାନଙ୍କରେ ଅନେକ କଥା ବର୍ଣ୍ଣିତ ହୋଇଅଛି । ବିଶେଷକରି ପଦ୍ମ ପୁରାଣର ଉତ୍ତର ଖଣ୍ଡରେ ବ୍ରହ୍ମର୍ଷି ବଶିଷ୍ଠ ରାଜା ଦିଲୀପଙ୍କୁ ମାର୍କଣ୍ଡେୟଙ୍କ ଜୀବନୀ ଓ ମହତ୍ତ୍ୱ ସମ୍ପର୍କରେ ଅନେକ କିଛି କହି ଅଛନ୍ତି ।

ମାର୍କଣ୍ଡେୟ ଥିଲେ ପିତା ମୃକଣ୍ଡୁ ଓ ମାତା ମରୁଦ୍ୱୋତୀଙ୍କର ଏକମାତ୍ର ସନ୍ତାନ । ମାର୍କଣ୍ଡେୟଙ୍କୁ ଲାଭକରିବାପାଇଁ ମୃକଣ୍ଡୁ କଠୋର ତପସ୍ୟା ଆଚରଣ ପୂର୍ବକ ଭଗବାନ ଶିବଙ୍କୁ ସନ୍ତୁଷ୍ଟ କରିବାପାଇଁ ବିଶେଷ ଭାବରେ ଯତ୍ନ କରିଥିଲେ । ତାଙ୍କର ଧ୍ୟାନ ଏପରି ନିବିଷ୍ଟ ଥିଲା ଯେ, ଦଳ ଦଳ ହୋଇ କୃଷ୍ଣସାର ମୃଗ ତାଙ୍କ ଦେହରେ ଘଷିହେଉଥିଲେ ମଧ୍ୟ ତାଙ୍କର ଧ୍ୟାନଭଙ୍ଗ ହେଉନଥିଲା । ସମ୍ଭବତଃ ସେଥିପାଇଁ ସେ ମୃକଣ୍ଡୁ ନାମରେ ନାମିତ ହୋଇଥିଲେ । ତାଙ୍କର ଏପରି କଠୋର ତପସ୍ୟାରେ ସନ୍ତୁଷ୍ଟ ହୋଇ ଭଗବାନ ଶିବ ତାଙ୍କୁ ଦର୍ଶନ ଦେଇଥିଲେ ଏବଂ ବର ପ୍ରଦାନ କରିବାକୁ ଇଚ୍ଛା ପ୍ରକାଶ କରିଥିଲେ । ମୃକଣ୍ଡୁ ଏକ ପୁତ୍ର ସନ୍ତାନ ପାଇଁ ବିକଳ ପ୍ରାର୍ଥନା କରିବାରୁ ଶିବ ତାଙ୍କୁ ପଚାରିଥିଲେ – ''ତୁମେ ଏକ ଅଜ୍ଞ ଦୀର୍ଘାୟୁ ପୁତ୍ର ଇଚ୍ଛାକର ନା ବିଜ୍ଞ ଷୋଡ଼ଶ ବର୍ଷୀୟ ଅଳ୍ପାୟୁ ପୁତ୍ର ଇଚ୍ଛା କର ।'' ମୃକଣ୍ଡୁ ଏକ ବିଜ୍ଞ ଅଳ୍ପାୟୁ ପୁତ୍ର କାମନା କରିଥିଲେ । ଭଗବାନ ଶିବ ତାଙ୍କୁ ''ତଥାସ୍ତୁ'' ବୋଲି କହି ସେଠାରୁ ଅନ୍ତର୍ହିତ ହୋଇ ଯାଇଥିଲେ ।

ଯଥା ସମୟରେ ସାଧ୍ୱୀ ପତିବ୍ରତା ମରୁଦ୍ୱୋତୀ ଏକ ସୁନ୍ଦର କମନୀୟ ପୁତ୍ର ସନ୍ତାନ ପ୍ରସବ କରିଥିଲେ । ପିତାଙ୍କ ନାମାନୁସାରେ ନବଜାତ ଶିଶୁର ନାମ ରଖାଯାଇଥିଲା ମାର୍କଣ୍ଡେୟ । ଶୁକ୍ଳପକ୍ଷର ଚନ୍ଦ୍ର ପରି ମାର୍କଣ୍ଡେୟ ରୂପ ଓ ଗୁଣରେ ସମସ୍ତଙ୍କୁ ମୁଗ୍ଧ କରି ବୟଃପ୍ରାପ୍ତ ହେବାକୁ ଲାଗିଲେ । ବାଲ୍ୟାବସ୍ଥାରୁ ସେ ଏପରି ବିଚକ୍ଷଣ ବୁଦ୍ଧିଧିମାନ୍ ହୋଇଉଠିଲେ ଯେ କିଶୋର ଅବସ୍ଥା ବେଳକୁ ସେ ଏକ ଶାସ୍ତ୍ରଜ୍ଞ ପଣ୍ଡିତ ଭାବରେ ସର୍ବଜନାଦୃତ ହୋଇଥିଲେ । ତାଙ୍କର ଶୁଭ ଗୁଣମାନରେ ପିତା ମୃକଣ୍ଡୁ ଓ ମାତା ମରୁଦ୍ୱୋତୀ ଉଲ୍ଲସିତ ହେଉଥିଲେ । କିନ୍ତୁ ଯେତେବେଳେ ସେ ଷୋଡ଼ଶ ବର୍ଷରେ ପଦାର୍ପଣ କଲେ ସେତେବେଳେ ତାଙ୍କର ମୃତ୍ୟୁ ବିଷୟ ଚିନ୍ତା କରି ପିତାମାତା ଅତ୍ୟନ୍ତ ବିମର୍ଷ ହୋଇ ପଡ଼ିଲେ । ପିତାମାତାଙ୍କୁ ବିମର୍ଷ ହେବାର ଦେଖି ଦିନେ ବାଳକ ମାର୍କଣ୍ଡେୟ ଏହାର କାରଣ ପିତା ମୃକଣ୍ଡୁଙ୍କୁ ଜିଜ୍ଞାସା କଲେ । ମୃକଣ୍ଡୁ କହିଲେ—

"ପୁତ୍ର ! ଭଗବାନ ଶିବ ତୋତେ ମାତ୍ର ଷୋଳବର୍ଷ ଆୟୁ ପ୍ରଦାନ କରିଛନ୍ତି । ତୋର ମୃତ୍ୟୁ କାଳ ଏବେ ଉପସ୍ଥିତ ହୋଇଥିବାରୁ ଆମେ ସେଥିପାଇଁ ବିମର୍ଷ ହୋଇ ପଡ଼ିଛୁ ।"

ଏହାଶୁଣି ମାର୍କଣ୍ଡେୟ କହିଲେ—"ପିତା ! ଆପଣ ଶୋକ ପରିତ୍ୟାଗ କରନ୍ତୁ । ମୁଁ ଭଗବାନ ଶିବଙ୍କୁ ସନ୍ତୁଷ୍ଟ କରି ଏପରି ବର ଲାଭ କରିବି ଯଦ୍ଦ୍ୱାରା କି ମୋର ମୃତ୍ୟୁ କେବେ ହେବ ନାହିଁ ।"

ତଦନନ୍ତର ମାର୍କଣ୍ଡେୟ ପିତାମାତାଙ୍କର ଆଶୀର୍ବାଦ ନେଇ ଦକ୍ଷିଣ ଦିଗକୁ ଗମନ କଲେ ଏବଂ ସମୁଦ୍ର କୂଳରେ ଗୋଟିଏ ଶିବଲିଙ୍ଗ ବିଧିପୂର୍ବକ ପ୍ରତିଷ୍ଠା କରି ଆରାଧନା କରିବାକୁ ଲାଗିଲେ । ଯଥା ସମୟରେ ତାଙ୍କର ମୃତ୍ୟୁକାଳ ଉପସ୍ଥିତ ହୋଇଥିଲେ ମଧ୍ୟ ସେ ଶିବ ଭକ୍ତିରେ ଏପରି ତେଜସ୍ୱାନ ହୋଇ ଉଠିଥିଲେ ଯେ ମୃତ୍ୟୁ ତାଙ୍କୁ ସ୍ପର୍ଶ କରିପାରିଲା ନାହିଁ । ପରିଶେଷରେ ମୃତ୍ୟୁ ଦେବତା ସ୍ୱୟଂ ଯମରାଜ ମାର୍କଣ୍ଡେୟଙ୍କ ଜୀବନ ନେବାପାଇଁ ତାଙ୍କ ନିକଟରେ ଆସି ଉପସ୍ଥିତ ହେଲେ ଏବଂ ଚର୍ମରଜ୍ଜୁ ତାଙ୍କ ଗଳାରେ ବାନ୍ଧି ଟାଣିବାକୁ ଲାଗିଲେ । ଏହା ଦେଖି ମାର୍କଣ୍ଡେୟ ଶିବଲିଙ୍ଗଙ୍କୁ ଦୃଢ଼ ଭାବରେ କୁଣ୍ଢାଇ ଧରି 'ଶିବ', 'ଶିବ' ବୋଲି ଚିତ୍କାର କଲେ । ତଥାପି ମଧ୍ୟ ଯମରାଜ ମାର୍କଣ୍ଡେୟଙ୍କୁ ଚର୍ମରଜ୍ଜୁ ଦ୍ୱାରା ଟାଣିବାକୁ ଲାଗିଲେ । ଏହି ସମୟରେ ହଠାତ୍ ଭଗବାନ ଶିବ ଲିଙ୍ଗ ମଧ୍ୟରୁ ଆବିର୍ଭୂତ ହୋଇ ପ୍ରଚଣ୍ଡ ମୂର୍ତ୍ତି ଧାରଣ କଲେ ଏବଂ ହୁଙ୍କାର କରି ଯମରାଜଙ୍କ ବକ୍ଷଦେଶରେ ପଦାଘାତ କଲେ । ଭଗବାନ ଶିବଙ୍କର ପଦାଘାତରେ ଆହତ ହୋଇ ମୃତ୍ୟୁ ଦେବତା ଯମରାଜ ଦୂରରେ ଯାଇ ପଡ଼ିଲେ ଏବଂ ପ୍ରାଣ ବିକଳରେ ପଳାୟନ କଲେ । ନିଜ ସମ୍ମୁଖରେ ଭଗବାନ ଶିବଙ୍କୁ ଦର୍ଶନ କରି ମାର୍କଣ୍ଡେୟ ସ୍ତୁତି କରିବାକୁ ଲାଗିଲେ

ରତ୍ନସାନୁଶରାସନଂ ରଜତାଦ୍ରିଶୃଙ୍ଗ ନିକେତନଂ
ଶିଞ୍ଜିନୀ କୃତ ପନ୍ନଗେଶ୍ୱର ମଚ୍ୟୁତାନଲ ସାୟକମ୍ ।
କ୍ଷିପ୍ରଦଗ୍ଧପୁରତ୍ରୟଂ ତ୍ରିଦିଶାଲୟୈରଭି ବନ୍ଦିତଂ
ଚନ୍ଦ୍ରଶେଖରମାଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ॥
ପଞ୍ଚପାଦପ ପୁଷ୍ପ ଗନ୍ଧ ପଦାମ୍ବୁଜ ଦ୍ୱୟ ଶୋଭିତଂ
ଭାଲ ଲୋଚନ ଜାତ ପାବକ ଦଗ୍ଧ ମନ୍ମଥ ବିଗ୍ରହମ୍ ।
ଭସ୍ମଦିଗ୍ଧ କଳେବରଂ ଭବନାଶିନଂ ଭବମବ୍ୟୟଂ
ଚନ୍ଦ୍ରଶେଖର ମାଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ॥
ମତ୍ତ ବାରଣ ମୁଖ୍ୟ ଚର୍ମ କୃତୋତ୍ତରୀୟ ମନୋହରଂ
ପଙ୍କଜାସନ ପଦ୍ମଲୋଚନ ପୂଜିତାଙ୍ଘ୍ରି ସରୋରୁହମ୍ ।

ଦେବସିନ୍ଧୁ ତରଙ୍ଗିଣୀ କରସିକ୍ତ ଶୀତ ଜଟାଧରଂ
ଚନ୍ଦ୍ରଶେଖର ମା ଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ।।
କୁଣ୍ଡଳୀ କୃତ କୁଣ୍ଡଳୀଶ୍ୱର କୁଣ୍ଡଳଂ ବୃଷବାହନଂ
ନାରଦାଦି ମୁନୀଶ୍ୱର ସ୍ତୁତ ବୈଭବଂ ଭୁବନେଶ୍ୱରମ୍ ।
ଅନ୍ଧକାନ୍ତକମାଶ୍ରିତାମର ପାଦପଂ ଶମନାନ୍ତକଂ
ଚନ୍ଦ୍ରଶେଖର ମା ଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ।।
ଯକ୍ଷରାଜସଖଂ ଭଗାକ୍ଷିହରଂ ଭୁଜଙ୍ଗ ବିଭୂଷଣଂ
ଶୈଳରାଜସୁତା ପରିଷ୍କୃତ ଚାରୁବାମ କଳେବରମ୍ ।
କ୍ଷ୍ୱେଡ଼ନୀଳ ଗଳଂ ପରଶ୍ୱଧ ଧାରିଣଂ ମୃଗ ଧାରିଣଂ
ଚନ୍ଦ୍ରଶେଖର ମା ଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ।।
ଭେଷଜଂ ଭବରୋଗିଣାମଖିଳା ପଦାମପ ହାରିଣଂ
ଦକ୍ଷ ଯଜ୍ଞ ବିନାଶିନଂ ତ୍ରିଗୁଣାତ୍ମକଂ ତ୍ରିବିଲୋଚନମ୍ ।
ଭୁକ୍ତିମୁକ୍ତି ଫଳପ୍ରଦଂ ନିଖିଳାଘ ସଙ୍ଘ ନିବର୍ହଣଂ
ଚନ୍ଦ୍ରଶେଖର ମା ଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ।।
ଭକ୍ତବତ୍ସଳମର୍ଚ୍ଚିତାଂ ନିଧିମକ୍ଷୟଂ ହରିଦମ୍ବରଂ
ସର୍ବଭୂତ ପତିଂ ପରାତ୍ପର ମପ୍ରମେୟମନୁତ୍ତମମ୍ ।
ଭୂମି ବାରି ନ-ଭୋହୁତାଶନ ସୋମ ପାଳିତ ସ୍ୱାକୃତିଂ
ଚନ୍ଦ୍ରଶେଖର ମା ଶ୍ରୟେ ମମ କିଂ କରିଷ୍ୟତି ବୈ ଯମଃ ।।
ବିଶ୍ୱ ସୃଷ୍ଟି ବିଧାୟିନଂ ପୁନରେବ ପାଳନ ତତ୍ପରଂ
ସଂହ ରନ୍ତମଥ ପ୍ରପଞ୍ଚମଶେଷ ଲୋକ ନିବାସିନମ୍ ।
କ୍ରୀଡ଼ୟନ୍ତମହର୍ନିଶଂ ଗଣନାଥ ଯୂଥ ସମାବୃତଂ
ଚନ୍ଦ୍ରଶେଖର ମା ଶ୍ରୟେ ମମ କି କରିଷ୍ୟତି ବୈ ଯମଃ ।।

× × × ×

ରୁଦ୍ରଂ ପଶୁପତିଂ ସ୍ଥାଣୁଂ ନୀଳକଣ୍ଠମୁମାପତିମ୍
ନମାମି ଶିରସା ଦେବଂ କିଂ ନୋ ମୃତ୍ୟୁଃ କରିଷ୍ୟତି ।
କାଳକଣ୍ଠଂ କଳାମୂର୍ତ୍ତିଂ କାଳାଗ୍ନିଂ କାଳନାଶନମ୍
ନମାମି ଶିରସା ଦେବଂ କିଂ ନୋ ମୃତ୍ୟୁଃ କରିଷ୍ୟତି ।
ନୀଳକଣ୍ଠଂ ବିରୂପାକ୍ଷଂ ନିର୍ମଳଂ ନିରୁପଦ୍ରବମ୍
ନମାମି ଶିରସା ଦେବଂ କିଂ ନୋ ମୃତ୍ୟୁଃ କରିଷ୍ୟତି ।
ବାମଦେବଂ ମହାଦେବଂ ଲୋକନାଥଂ ଜଗଦ୍‌ଗୁରୁମ୍
ନମାମି ଶିରସା ଦେବଂ କିଂ ନୋ ମୃତ୍ୟୁଃ କରିଷ୍ୟତି ।

ଦେବଦେବଂ ଜଗନ୍ନାଥଂ ଦେବେଶଂ ବୃଷଭଧ୍ୱଜମ୍
ନମାମି ଶିରସା ଦେବଂ କିଂ ନୋ ମୃତ୍ୟୁଃ କରିଷ୍ୟତି ।
ଅନନ୍ତମ ବ୍ୟୟଂ ଶାନ୍ତମକ୍ଷ ମାଳାଧରଂ ହରମ୍
ନମାମି ଶିରସା ଦେବଂ କିଂ ନୋ ମୃତ୍ୟୁଃ କରିଷ୍ୟତି ।
ଆନନ୍ଦଂ ପରମଂ ନିତ୍ୟଂ କୈବଲ୍ୟ ପଦ କାରଣମ୍
ନମାମି ଶିରସା ଦେବଂ କିଂ ନୋ ମୃତ୍ୟୁଃ କରିଷ୍ୟତି ।
ସ୍ୱର୍ଗାପ ବର୍ଗଦାତାରଂ ସୃଷ୍ଟିସ୍ଥିତ୍ୟନ୍ତ କାରଣମ୍
ନମାମି ଶିରସା ଦେବଂ କିଂ ନୋ ମୃତ୍ୟୁଃ କରିଷ୍ୟତି । *

(ପଦ୍ମପୁରାଣ, ଉତ୍ତରଖଣ୍ଡ, ୧୩୭/୬୫-୧୦)

କୈଳାସ-ଶିଖର ଯାହାଙ୍କର ନିବାସ ଗୃହ, ଯିଏ ମେରୁଗିରିକୁ ଧନୁ, ନାଗରାଜ ବାସୁକିକୁ ପ୍ରତ୍ୟଞ୍ଚା ଓ ଭଗବାନ ବିଷ୍ଣୁଙ୍କୁ ଅଗ୍ନିମୟ ବାଣକରି ଦୈତ୍ୟମାନଙ୍କର ତ୍ରିପୁରକୁ ଦଗ୍ଧ କରିଥିଲେ, ଦେବଗଣ ଯାହାଙ୍କର ଚରଣ ବନ୍ଦନା କରନ୍ତି, ମୁଁ ସେହି ଭଗବାନ ଚନ୍ଦ୍ରଶେଖରଙ୍କର ଶରଣାପନ୍ନ ହେଉଛି । ଯମରାଜ ମୋର କ'ଣ କରି ପାରିବ ?

ମନ୍ଦାର, ପାରିଜାତ, ସନ୍ତାନ, କଳ୍ପବୃକ୍ଷ ଓ ହରିଚନ୍ଦନ - ଏହି ପାଞ୍ଚଟି ଦିବ୍ୟ ବୃକ୍ଷର ପୁଷ୍ପଦ୍ୱାରା ସୁଗନ୍ଧିତ ଯୁଗଳ ଚରଣ-କମଳ ଯାହାଙ୍କର ଶୋଭାବୃଦ୍ଧି କରେ, ଯିଏ ନିଜର ଲଲାଟବର୍ତ୍ତୀ ନେତ୍ରରୁ ପ୍ରକଟ ହୋଇଥିବା ଅଗ୍ନିଦ୍ୱାରା କାମଦେବଙ୍କର ଶରୀରକୁ ଭସ୍ମ କରି ଦେଇଥିଲେ, ଯାହାଙ୍କର ଶ୍ରୀବିଗ୍ରହ ସର୍ବଦା ଭସ୍ମଦ୍ୱାରା ବିଭୂଷିତ, ଯିଏ ସଂସାରର ଉତ୍ପତ୍ତିର କାରଣ ହୋଇ ମଧ୍ୟ ସଂସାରର ଲୟ ସାଧନ କରନ୍ତି ତଥା ଯାହାଙ୍କର କେବେ ବିନାଶ ହୁଏ ନାହିଁ, ମୁଁ ସେହି ଭଗବାନ ଚନ୍ଦ୍ରଶେଖରଙ୍କର ଶରଣାପନ୍ନ ହେଉଛି । ଯମରାଜ ମୋର କ'ଣ କରି ପାରିବ ?

ମତ୍ତହସ୍ତୀର ମୁଖ୍ୟ ଚର୍ମ ଧାରଣ କରି ଯିଏ ମନୋହର ଦିଶନ୍ତି, ବ୍ରହ୍ମା ଓ ବିଷ୍ଣୁ ଯାହାଙ୍କର ଚରଣ-କମଳ ପୂଜା କରନ୍ତି ତଥା ଯିଏ ଦେବତା ଓ ସିଦ୍ଧମାନଙ୍କର ନଦୀ ଗଙ୍ଗାର ତରଙ୍ଗସିକ୍ତ ଶୀତଳ ଜଟା ଧାରଣ କରନ୍ତି, ମୁଁ ସେହି ଭଗବାନ ଚନ୍ଦ୍ରଶେଖରଙ୍କର ଶରଣାପନ୍ନ ହେଉଛି । ଯମରାଜ ମୋର କ'ଣ କରିପାରିବ ?

କୁଣ୍ଡଳୀ ଆକାରରେ ରହୁଥିବା ସର୍ପରାଜ ଯାହାଙ୍କର କର୍ଣ୍ଣଯୁଗଳରେ କୁଣ୍ଡଳ ହୋଇ ଅବସ୍ଥାନ କରନ୍ତି, ବୃଷଭ ଯାହାଙ୍କର ଆସନ, ନାରଦ ଆଦି ମୁନୀଶ୍ୱର ଯାହାଙ୍କର ବୈଭବର

---

* ପାଦଟୀକା :—
ଏହି ସ୍ତୋତ୍ର ଶ୍ରଦ୍ଧାପୂର୍ବକ ଅନ୍ତତଃ କମ୍‌ରେ ୧୦୮ ଥର ପାଠକଲେ, ମରଣାସନ୍ନ ମନୁଷ୍ୟ ମଧ୍ୟ ଆରୋଗ୍ୟ ଲାଭ କରେ, ଏହା ଅନୁଭୂତ ଅଟେ ।

ସ୍ତୁତି କରନ୍ତି, ଯିଏ ସମସ୍ତ ଭୁବନର ଈଶ୍ବର, ଅନ୍ଧକାସୁରଙ୍କର ବିନାଶକର୍ତ୍ତା, ଆଶ୍ରିତ ଜନପାଇଁ କଳ୍ପ ବୃକ୍ଷ ସଦୃଶ ଏବଂ ଯମରାଜଙ୍କର ଅନ୍ତକ, ମୁଁ ସେହି ଭଗବାନ ଚନ୍ଦ୍ରଶେଖରଙ୍କ ଶରଣାପନ୍ନ ହେଉଛି । ଯମରାଜ ମୋର କ'ଣ କରି ପାରିବ ?

ଯିଏ ଯକ୍ଷରାଜ କୁବେରଙ୍କର ସଖା, ଭଗ ଦେବତାଙ୍କର ଚକ୍ଷୁ ଯିଏ ଫୁଟାଇ ଥିଲେ, ସର୍ପଗଣଙ୍କୁ ଭୂଷଣ ସ୍ୱରୂପ ଯିଏ ଧାରଣ କରନ୍ତି, ଗିରିରାଜ ନନ୍ଦିନୀ ଉମା ଯାହାଙ୍କର ସୁନ୍ଦର ବାମଭାଗକୁ ସୁଶୋଭିତ କରନ୍ତି, କାଳକୂଟ ବିଷପାନ କରିବା ଦ୍ୱାରା ଯାହାଙ୍କର କଣ୍ଠଦେଶ ନୀଳବର୍ଣ୍ଣ ହୋଇଅଛି, ଯିଏ ଏକ ହାତରେ ଫାର୍ସା ଓ ଅନ୍ୟ ହାତରେ ମୃଗ ମୁଦ୍ରା ଧାରଣ କରନ୍ତି, ମୁଁ ସେହି ଭଗବାନ ଚନ୍ଦ୍ରଶେଖରଙ୍କର ଶରଣାପନ୍ନ ହେଉଛି । ଯମରାଜ ମୋର କ'ଣ କରି ପାରିବ ?

ଜନ୍ମ ମରଣ ରୂପକ ରୋଗଗ୍ରସ୍ତ ମନୁଷ୍ୟ ପାଇଁ ଯିଏ ଔଷଧ ସ୍ୱରୂପ,ଆପତ୍ତି ସମୂହକୁ ଯିଏ ନିବାରଣ କରନ୍ତି, ଦକ୍ଷ-ଯଜ୍ଞକୁ ଯିଏ ବିନାଶ କରିଥିଲେ, ସତ୍ତ୍ୱଆଦି ତିନିଗୁଣ ଯାହାଙ୍କର ସ୍ୱରୂପ, ଯିଏ ତ୍ରିଲୋଚନ, ଯିଏ ଭୁକ୍ତିମୁକ୍ତି ପ୍ରଦାୟକ ତଥା ଯିଏ ସମ୍ପୂର୍ଣ୍ଣ ପାପରାଶିକୁ ସଂହାର କରନ୍ତି, ମୁଁ ସେହି ଭଗବାନ ଚନ୍ଦ୍ରଶେଖରଙ୍କର ଶରଣାପନ୍ନ ହେଉଛି । ଯମରାଜ ମୋର କ'ଣ କରିପାରିବ ?

ଯିଏ ଭକ୍ତବତ୍ସଳ, ଅର୍ଚ୍ଚନାକାରୀଙ୍କୁ ଅକ୍ଷୟ ନିଧି ପ୍ରଦାନ କରୁଥିଲେ ମଧ୍ୟ ଯିଏ ଦିଗମ୍ବର ହୋଇ ଅବସ୍ଥାନ କରନ୍ତି । ଯିଏ ସର୍ବଭୂତ – ସ୍ୱାମୀ, ପରାତ୍ପର, ଅପ୍ରମେୟ ଓ ଉପମା ରହିତ, ପୃଥ୍ୱୀ, ଜଳ, ଆକାଶ, ଅଗ୍ନି ଓ ଚନ୍ଦ୍ରମା ଦ୍ୱାରା ଯାହାଙ୍କର ଶ୍ରୀବିଗ୍ରହ ସର୍ବଦା ସୁରକ୍ଷିତ, ମୁଁ ସେହି ଭଗବାନ ଚନ୍ଦ୍ରଶେଖରଙ୍କର ଶରଣାପନ୍ନ ହେଉଛି । ଯମରାଜ ମୋର କ'ଣ କରି ପାରିବ ?

ବ୍ରହ୍ମା ରୂପରେ ଯିଏ ସଂପୂର୍ଣ୍ଣ ବିଶ୍ୱ ସୃଷ୍ଟି କରନ୍ତି । ବିଷ୍ଣୁ ରୂପରେ ଯିଏ ପାଳନ କରନ୍ତି ଏବଂ ଶେଷରେ ସାରା ପ୍ରପଞ୍ଚକୁ ସଂହାର କରନ୍ତି । ସଂପୂର୍ଣ୍ଣ ଲୋକ ଯାହାଙ୍କର ନିବାସସ୍ଥଳ ତଥା ଯିଏ ଗଣେଶଙ୍କର ପାର୍ଷଦମାନଙ୍କ ଦ୍ୱାରା ସମାବୃତ ହୋଇ ଦିବାରାତି ନାନା ପ୍ରକାର କ୍ରୀଡ଼ା ପ୍ରଦର୍ଶନ କରନ୍ତି । ମୁଁ ସେହି ଭଗବାନ ଚନ୍ଦ୍ରଶେଖରଙ୍କର ଶରଣାପନ୍ନ ହେଉଛି । ଯମରାଜ ମୋର କ'ଣ କରି ପାରିବ ?

ରୁ ଅର୍ଥାତ୍ ଦୁଃଖ ଦୂର କରୁଥିବାରୁ ଯାହାଙ୍କୁ ରୁଦ୍ର ବୋଲି କୁହାଯାଏ, ଯିଏ ଜୀବରୂପୀ ପଶୁଗଣଙ୍କୁ ପାଳନ କରୁଥିବାରୁ ପଶୁପତି, ସ୍ଥିର ହୋଇଥିବାରୁ ସ୍ଥାଣୁ, ଗଳାରେ

ନୀଳ ଚନ୍ଦ୍ର ଧାରଣ କରି ଥିବାରୁ ନୀଳକଣ୍ଠ ଏବଂ ଉମାଙ୍କର ସ୍ୱାମୀ ହୋଇଥିବାରୁ ଉମାପତି ନାମ ଧାରଣ କରନ୍ତି । ସେହି ଭଗବାନ ଶିବଙ୍କୁ ମୁଁ ମସ୍ତକ ପାତି ପ୍ରଣାମ କରୁଛି । ମୃତ୍ୟୁ ମୋର କ'ଣ ଅବା କରିବ ?

ଯାହାଙ୍କର ଗଳାଦେଶରେ କଳାଦାଗ ଅଛି, ଯିଏ କାଳମୂର୍ତ୍ତି, କାଳାଗ୍ନି ସ୍ୱରୂପ ଓ କାଳ-ନାଶକ, ସେହି ଭଗବାନ ଶିବଙ୍କୁ ମୁଁ ମସ୍ତକ ପାତି ପ୍ରଣାମ କରୁଛି । ମୃତ୍ୟୁ ମୋର କ'ଣ ଅବା କରିବ ?

ଯାହାଙ୍କର କଣ୍ଠ ନୀଳବର୍ଣ୍ଣ ଏବଂ ନେତ୍ର ବିକରାଳ ହେଲେ ମଧ୍ୟ ଅତ୍ୟନ୍ତ ନିର୍ମଳ ଓ ଉପଦ୍ରବ ରହିତ, ସେହି ଭଗବାନ ଶିବଙ୍କୁ ମୁଁ ମସ୍ତକ ପାତି ପ୍ରଣାମ କରୁଛି । ମୃତ୍ୟୁ ମୋର କ'ଣ ଅବା କରିବ ?

ଯିଏ ବାମଦେବ, ମହାଦେବ, ବିଶ୍ୱନାଥ ଓ ଜଗଦ୍‌ଗୁରୁ ନାମ ଧାରଣ କରନ୍ତି, ସେହି ଭଗବାନ ଶିବଙ୍କୁ ମୁଁ ମସ୍ତକ ପାତି ପ୍ରଣାମ କରୁଛି । ମୃତ୍ୟୁ ମୋର କ'ଣ ଅବା କରିବ ?

ଯିଏ ଦେବତାମାନଙ୍କର ମଧ୍ୟ ଆରାଧ୍ୟ ଦେବ, ଜଗତର ସ୍ୱାମୀ ଦେବତାମାନଙ୍କର ଶାସନକର୍ତ୍ତା ତଥା ଯାହାଙ୍କର ଧ୍ୱଜାରେ ବୃଷଭ ଅଙ୍କିତ, ସେହି ଭଗବାନ ଶିବଙ୍କୁ ମୁଁ ମସ୍ତକ ପାତି ପ୍ରଣାମ କରୁଛି । ମୃତ୍ୟୁ ମୋର କ'ଣ ଅବା କରିବ ?

ଯିଏ ଅନନ୍ତ, ଅବ୍ୟୟ, ଶାନ୍ତ, ରୁଦ୍ରାକ୍ଷମାଳାଧାରୀ ଏବଂ ସମସ୍ତଙ୍କର ଦୁଃଖ ହରଣକାରୀ, ସେହି ଭଗବାନ ଶିବଙ୍କୁ ମୁଁ ମସ୍ତକ ପାତି ପ୍ରଣାମ କରୁଛି । ମୃତ୍ୟୁ ମୋର କ'ଣ ଅବା କରିବ ?

ଯିଏ ପରମାନନ୍ଦସ୍ୱରୂପ, ନିତ୍ୟ ଏବଂ କୈବଲ୍ୟପଦ (ମୋକ୍ଷପ୍ରାପ୍ତି)ର କାରଣ, ସେହି ଭଗବାନ ଶିବଙ୍କୁ ମୁଁ ମସ୍ତକ ପାତି ପ୍ରଣାମ କରୁଛି । ମୃତ୍ୟୁ ମୋର କ'ଣ ଅବା କରିବ ?

ଯିଏ ସ୍ୱର୍ଗ ଓ ମୋକ୍ଷଦାତା ତଥା ସୃଷ୍ଟି, ସ୍ଥିତି ଓ ସଂହାରକର୍ତ୍ତା, ସେହି ଭଗବାନ ଶିବଙ୍କୁ ମୁଁ ମସ୍ତକ ପାତି ପ୍ରଣାମ କରୁଛି । ମୃତ୍ୟୁ ମୋର କ'ଣ ଅବା କରିବ ?

ଏହିପରି ସ୍ତୁତି କରି ବାଳକ ମାର୍କଣ୍ଡେୟ ଭକ୍ତିରେ ବିହ୍ୱଳ ହୋଇ ପଡ଼ିଲେ । ଭଗବାନ ଶଙ୍କର ମାର୍କଣ୍ଡେୟଙ୍କର ଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ଅମରତ୍ୱ ବର ପ୍ରଦାନ କଲେ । ପ୍ରଭୁଙ୍କ କୃପାରେ ମୃତ୍ୟୁଞ୍ଜୟ ହୋଇ ମାର୍କଣ୍ଡେୟ ଗୃହକୁ ଫେରି ଆସିଲେ ।

ସେହି ସମୟରେ ଭଗବାନ ସ୍ବୟଂ ତପସ୍ୟାର ଆଦର୍ଶ ସ୍ଥାପନ କରିବାପାଇଁ ନର-ନାରାୟଣ ରୂପ ଧାରଣ କରିଥିଲେ । ନର-ନାରାୟଣଙ୍କୁ ଆରାଧନା କରିବାପାଇଁ ମାର୍କଣ୍ଡେୟ ବ୍ରହ୍ମଚର୍ଯ୍ୟବ୍ରତ ଆଚରଣ କରି ଗୃହ ପରିତ୍ୟାଗ କଲେ ଏବଂ ହିମାଳୟ ମଧ୍ୟବର୍ତ୍ତୀ ପୁଷ୍ପଭଦ୍ରା ନଦୀ କୂଳକୁ ଯାଇ ତପସ୍ୟାରେ ନିମଗ୍ନ ରହିଲେ । କଠୋର ତପସ୍ୟାରେ ତାଙ୍କର ବର୍ଷପରେ ବର୍ଷ ବିତିବାକୁ ଲାଗିଲା । ତାଙ୍କର ଏପରି କଠୋର ତପସ୍ୟା ଦେଖି ଦେବରାଜ ଇନ୍ଦ୍ର ଭୟଭୀତ ହୋଇ ପଡ଼ିଲେ । ମୁନିଙ୍କର ତପୋଭଙ୍ଗ ପାଇଁ ସେ ବସନ୍ତ, କାମଦେବ ଓ ପୁଞ୍ଜିକସ୍ଥଳୀ ନାମ୍ନୀ ଅପ୍‌ସରାକୁ ତାଙ୍କ ନିକଟକୁ ପ୍ରେରଣ କଲେ । ବସନ୍ତର ପ୍ରଭାବରେ ସମସ୍ତ ବୃକ୍ଷ ପୁଷ୍ପିତ ହୋଇ ଉଠିଲେ, କୋକିଳଗଣ ମଧୁର ସଙ୍ଗୀତ ଗାନ କରିବାକୁ ଲାଗିଲେ ଏବଂ ଚତୁର୍ଦ୍ଦିଗରେ ଶୀତଳ-ମନ୍ଦ-ସୁଗନ୍ଧିତ ବାୟୁ ପ୍ରବାହିତ ହେଲା । ଏହି ସମୟରେ ଅପ୍‌ସରା ପୁଞ୍ଜିକସ୍ଥଳୀ ମାର୍କଣ୍ଡେୟଙ୍କ ସମ୍ମୁଖକୁ ଯାଇ ଅପୂର୍ବ ଭଙ୍ଗୀରେ ନିଜର ସୌନ୍ଦର୍ଯ୍ୟ ପ୍ରଦର୍ଶନ କଲା । କାମଦେବ ପୁଷ୍ପଧନୁ ସାହାଯ୍ୟରେ ସମ୍ମୋହନ ବାଣ ମୁନିଙ୍କ ଉପରକୁ ନିକ୍ଷେପ କଲେ । କିନ୍ତୁ କାମଦେବ ଓ ଅପ୍‌ସରା ପୁଞ୍ଜିକସ୍ଥଳୀର ସମସ୍ତ ପ୍ରଯତ୍ନ ବ୍ୟର୍ଥ ହୋଇଗଲା । ମାର୍କଣ୍ଡେୟଙ୍କର ଚିତ୍ତ ଭଗବାନ ନର ନାରାୟଣଙ୍କ ପାଦପଦ୍ମରେ ନିମଗ୍ନ ରହିଥିବାରୁ ତାଙ୍କ ହୃଦୟରେ କୌଣସି ବିକାର ସ୍ଥାନ ପାଇ ନ ଥିଲା । ତାଙ୍କର ଏପରି ଦୃଢ଼ ଅବସ୍ଥା ଦେଖି କାମଦେବ, ବସନ୍ତ ଓ ପୁଞ୍ଜିକସ୍ଥଳୀ ଭୟରେ ସେଠାରୁ ପଳାୟନ କଲେ । କାମକୁ ଜୟ କରିଥିବାରୁ ମାର୍କଣ୍ଡେୟଙ୍କ ମନରେ ଗର୍ବଜାତ ହୋଇ ନ ଥିଲା; ବରଂ ଏହାକୁ ସେ ଭଗବାନଙ୍କର ଆଶୀର୍ବାଦ ବୋଲି ମନେ କରି ଅଧିକ ଦୃଢ଼ଭାବରେ ଧ୍ୟାନମଗ୍ନ ହେଲେ ।

ଦିନକୁ ଦିନ ମାର୍କଣ୍ଡେୟଙ୍କର ଭକ୍ତିଭାବ ବୃଦ୍ଧିଲାଭ କଲା । ଭଗବାନଙ୍କୁ ଦର୍ଶନ କରିବା ପାଇଁ ସେ ବ୍ୟାକୁଳ ହୋଇ ପଡ଼ିଲେ । ତାଙ୍କର ବ୍ୟାକୁଳତାରେ ଦ୍ରବୀଭୂତ ହୋଇ ଭକ୍ତବତ୍ସଳ ଭଗବାନ ତାଙ୍କ ନିକଟରେ ପ୍ରକଟ ହେଲେ । ଭଗବାନ ନାରାୟଣଙ୍କର ସୁନ୍ଦର ଶରୀର ଗୌରବର୍ଣ୍ଣ ଥିଲା । ଋଷିବେଶଧାରୀ ନର-ନାରାୟଣଙ୍କୁ ଦର୍ଶନକରି ମାର୍କଣ୍ଡେୟ ଭକ୍ତିରେ ବିହ୍ୱଳ ହୋଇ ପଡ଼ିଲେ ଏବଂ ହାତଯୋଡ଼ି ତଥା ଭୂମିରେ ପଡ଼ି ପ୍ରଣାମ କଲେ । କରୁଣା-ସାଗର ଭଗବାନ ଅତ୍ୟନ୍ତ ସ୍ନେହଯୁକ୍ତ ହୋଇ ମାର୍କଣ୍ଡେୟଙ୍କୁ ତଳୁ ଉଠାଇ ବରଦାନ କରିବାକୁ ଇଚ୍ଛା ପ୍ରକାଶ କଲେ ।

ମାର୍କଣ୍ଡେୟ ସ୍ତୁତି କରି କହିଲେ—"ପ୍ରଭୋ ! ଆପଣଙ୍କର ଶ୍ରୀଚରଣ ଦର୍ଶନ କରିବାହିଁ ମନୁଷ୍ୟର ପରମ ପୁରୁଷାର୍ଥ । ଆପଣଙ୍କ ଦର୍ଶନ କରିବାପରେ ମନୁଷ୍ୟ-ମନରେ ଆଉ କୌଣସି ଅଭିଳାଷ ଅପୂର୍ଣ୍ଣ ରହେ ନାହିଁ । ତେବେ ଆପଣ ବର ମାଗିବାକୁ ଆଜ୍ଞା ଦେଇଥିବାରୁ ମୁଁ ଆପଣଙ୍କୁ ଏହି ବର ମାଗୁଛି ଯେ ମୁଁ ଯେପରି ଆପଣଙ୍କର ମାୟାଦର୍ଶନ କରି ପାରିବି ।"

ଭଗବାନ ନର-ନାରାୟଣ 'ଏବମସ୍ତୁ' କହି ନିଜର ସାଧନାସ୍ଥଳୀ ବଦରିକାଶ୍ରମକୁ ଫେରିଗଲେ । ଅନନ୍ତର ମାର୍କଣ୍ଡେୟ ଭଗବାନଙ୍କର ପୂଜା, ଅର୍ଚ୍ଚନା ଓ ଧ୍ୟାନରେ ନିମଗ୍ନ ରହିଲେ ।

ସହସା ଦିନେ ମାର୍କଣ୍ଡେୟ ଦେଖିଲେ, ଚତୁର୍ଦ୍ଦିଗର ଆକାଶ କଳା କଳା ମେଘଦ୍ୱାରା ଆଚ୍ଛନ୍ନ ହୋଇଗଲା । କ୍ଷଣକୁ କ୍ଷଣ ବିଜୁଳିର ଚମକ ଓ ଅତି ଭୟଙ୍କର ମେଘ-ଗର୍ଜନ ପୃଥିବୀର ପ୍ରାଣୀସମୂହଙ୍କୁ ଭୟଭୀତ କରି ପକାଇଲା । ତା'ପରେ ଅତି ମୂଷଳ ଧାରାରେ ବର୍ଷା ହେବାକୁ ଲାଗିଲା । ଏହାଦ୍ୱାରା ସମୁଦ୍ରଜଳ ସ୍ଫୀତ ହୋଇ ହୁ' ହୁ' ବେଗରେ ବଢ଼ି ଉଠିଲା ଏବଂ ସମଗ୍ର ପୃଥିବୀ ପ୍ରଳୟ ଜଳରେ ବୁଡ଼ିଯିବାକୁ ଲାଗିଲା । କୌଣସି ସ୍ଥାନରେ ଭୂମି, ବୃକ୍ଷ ପର୍ବତ ଦୃଶ୍ୟ ହେଲା ନାହିଁ । ଏପରିକି ସୂର୍ଯ୍ୟ, ଚନ୍ଦ୍ର ଓ ତାରା ସମୂହ ପ୍ରଳୟ ଜଳରେ ବିଲୀନ ହୋଇଗଲେ । ଚତୁର୍ଦ୍ଦିଗରେ କେବଳ ରାଜୁତି କଲା ଘନଘୋର ଅନ୍ଧକାର । ଏହିପରି ଏକ ପ୍ରାକୃତିକ ଦୁର୍ଘଟଣା ମଧ୍ୟରେ ମୃତ୍ୟୁଞ୍ଜୟ ମୁନି ମାର୍କଣ୍ଡେୟ ସମୁଦ୍ରର ସ୍ଫୀତ ବକ୍ଷ ଉପରେ ଇତସ୍ତତଃ ହୋଇ ଭାସୁଥିଲେ । ପ୍ରଳୟ ଜଳର ଭୀଷଣ ଗର୍ଜନ ତାଙ୍କର କର୍ଣ୍ଣ ଗହ୍ୱରକୁ ଥରାଇ ଦେଉଥିଲା । ଉତ୍ଥାୟମାନ ଜଳ-ତରଙ୍ଗରେ ଭାସି ଭାସି ସେ କେତେବେଳେ କେଉଁଠାରେ ପଡ଼ୁଥିଲେ ତାହାର କୌଣସି ଠିକଣା ନ ଥିଲା । ଜଳଜନ୍ତୁଗଣ ତାଙ୍କ ଶରୀରର ମାଂସକୁ ଟିକି ଟିକି କରି ପକାଉଥିଲେ । ତାଙ୍କର ବୁଦ୍ଧି ବିକ୍ଷିପ୍ତ ହୋଇ ଯାଉଥିଲା । ନିଃସହାୟ ଅବସ୍ଥାରେ ସମୁଦ୍ର ଜଳରେ ଭାସି ସେ କେବଳ ବ୍ୟାକୁଳ ହେଉଥିଲେ । ପ୍ରଳୟର ଏହି କରାଳ ମୁଖ ମଧ୍ୟରୁ ଉଦ୍ଧାର ପାଇବାର ଆଉ କୌଣସି ଉପାୟ ନ ଦେଖି ଶେଷରେ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ଭଗବାନଙ୍କୁ ସ୍ମରଣ କରିବାକୁ ଲାଗିଲେ ।

ଭଗବାନଙ୍କୁ ସ୍ମରଣ କରିବା ମାତ୍ରେ ମାର୍କଣ୍ଡେୟ ଦେଖିଲେ, ତାଙ୍କ ସମ୍ମୁଖ ଭାଗ ପ୍ରଳୟ ସମୁଦ୍ରରେ ଏକ ମହାନ୍ ବଟବୃକ୍ଷ ଦଣ୍ଡାୟମାନ ହୋଇଛି । ଏହା ଦେଖି ମାର୍କଣ୍ଡେୟ ଆଶ୍ଚର୍ଯ୍ୟ ହୋଇ ସେହି ବୃକ୍ଷ ନିକଟକୁ ଆସିଲେ । ବୃକ୍ଷ ମୂଳରେ ଛିଡ଼ାହୋଇ ସେ ଦେଖିଲେ, ବୃକ୍ଷର ଈଶାନ କୋଣରେ ଯେଉଁ ଶାଖା ଅଛି, ସେହି ଶାଖାର ଏକ ସୁକୋମଳ ପତ୍ର ଉପରେ ଗୋଟିଏ ଅଦ୍ଭୁତ ବାଳକ ଶୟନ କରିଅଛି । ବାଳକର ସୌନ୍ଦର୍ଯ୍ୟ ଏତେ ମନୋମୁଗ୍ଧକର ଯେ ତାହା ବର୍ଣ୍ଣନା କରିବା ସମ୍ପୂର୍ଣ୍ଣ ଅସମ୍ଭବ । ତାହାର ଶରୀର ନବ-ଜଳଧର ପରି ଶ୍ୟାମବର୍ଣ୍ଣ, ହସ୍ତପଦ ଲାଲ୍‌ଲାଲ୍ ଅତ୍ୟନ୍ତ ସୁକୁମାର, ତ୍ରିଭୁବନ ସୁନ୍ଦର ମୁଖମଣ୍ଡଳ ମନ୍ଦମନ୍ଦ ହାସ୍ୟଯୁକ୍ତ ଏବଂ ବିଶାଳ ନେତ୍ରଦ୍ୱୟ ପ୍ରସନ୍ନତାରେ ଭରପୂର । ବାଳକ-ଶରୀରରୁ ଯେଉଁ ଉଜ୍ଜ୍ୱଳ ଜ୍ୟୋତି ନିର୍ଗତ ହେଉଛି, ତାହାଦ୍ୱାରା ପ୍ରଳୟକାଳୀନ ଅନ୍ଧକାର ଦୂର ହୋଇଯାଉଛି । ବାଳକ ନିଜର

ସୁନ୍ଦର ହସ୍ତାଙ୍ଗୁଳି ଦ୍ୱାରା ଦକ୍ଷିଣପାଦ ଧରି ପାଦର ବୃଦ୍ଧାଙ୍ଗୁଳି ମୁଖରେ ରଖି ଚୁଚୁମିବାରେ ଲାଗିଛି । ଏହା ଦେଖି ମାର୍କଣ୍ଡେୟ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ । ଭକ୍ତି ଗଦ୍‌ଗଦ୍ ହୃଦୟରେ ସେ ସେହି ଅଦ୍ଭୁତ ବାଳକଙ୍କୁ ପ୍ରଣାମ କଲେ

କରାରବିନ୍ଦେନ ପଦାରବିନ୍ଦଂ
ମୁଖାରବିନ୍ଦେ ବିନିବେଶୟନ୍ତମ୍ ।
ବଟସ୍ୟ ପତ୍ରସ୍ୟ ପୁଟେ ଶୟାନଂ
ବାଲଂ ମୁକୁନ୍ଦଂ ଶିରସା ନମାମି ॥

ବାଳକଙ୍କୁ ଦେଖିବା ପରେ ମାର୍କଣ୍ଡେୟଙ୍କର ସମସ୍ତ କ୍ଳାନ୍ତି ଦୂର ହୋଇଗଲା । ବାଳକଙ୍କୁ ଧରିବାପାଇଁ ସେ ବାଳକ ନିକଟରେ ପହଞ୍ଚିଲେ । କିନ୍ତୁ ବାଳକର ଶ୍ୱାସବାୟୁ ଦ୍ୱାରା ଆକର୍ଷିତ ହୋଇ ସେ ବାଳକର ନାସିକା-ଛିଦ୍ର ଦେଇ ତାହାର ଉଦର ମଧ୍ୟକୁ ଚାଲିଗଲେ ।

ବାଳକର ଉଦର ମଧ୍ୟକୁ ଯାଇ ମାର୍କଣ୍ଡେୟ ଯାହା ଦେଖିଲେ ତାହା ବର୍ଣ୍ଣନା କରିବା ମାନବ ପକ୍ଷରେ ଅସମ୍ଭବ । ବାଳକର ଉଦର ମଧ୍ୟରେ ସେ ଅନନ୍ତ ବ୍ରହ୍ମାଣ୍ଡ ଦେଖିବାକୁ ପାଇଲେ । ବ୍ରହ୍ମାଣ୍ଡର ବିଚିତ୍ର ସୃଷ୍ଟି, ସୂର୍ଯ୍ୟ, ଚନ୍ଦ୍ର, ତାରା, ସମୁଦ୍ର, ନଦୀ, ସରୋବର, ବୃକ୍ଷ, ପର୍ବତ ଏବଂ ପୃଥିବୀର ଜୀବ ସମୂହ ସେଠାରେ ତାଙ୍କର ନେତ୍ର ଗୋଚର ହେଲା । ସେହି ସୃଷ୍ଟି ମଧ୍ୟରେ ବୁଲି ବୁଲି ସେ ହିମାଳୟ ପର୍ବତ ନିକଟରେ ପହଞ୍ଚିଲେ । ସେଠାରେ ସେ ପୁଷ୍ପଭଦ୍ରା ନଦୀ ଓ ତାହାର ତଟ ଦେଶରେ ନିଜର ଆଶ୍ରମ ମଧ୍ୟ ଦେଖିଲେ । ଏହିପରି ବାଳକର ଉଦର ମଧ୍ୟରେ ବୁଲି ବୁଲି ତାଙ୍କର ଅନେକ ଯୁଗ ବିତିଗଲା । ସେ ବିସ୍ମିତ ହୋଇ ଆଖି ବନ୍ଦ କରି-ଦେଲେ । ଏହି ସମୟରେ ବାଳକର ଶ୍ୱାସବାୟୁ ଦ୍ୱାରା ସେ ପୁଣି ବାହାରକୁ ବାହାରି ଆସିଲେ ଏବଂ ପ୍ରଳୟ ସମୁଦ୍ରରେ ପତିତ ହେଲେ । ପ୍ରଳୟ ସମୁଦ୍ରରେ ପଡ଼ି ସେ ପୁନର୍ବାର ସମୁଦ୍ରର ଭୀଷଣ ଗର୍ଜନ ଶୁଣିବାକୁ ପାଇଲେ ଏବଂ ସେହି ବଟବୃକ୍ଷ ଓ ତାହା ଉପରେ ସେହି ଅଦ୍ଭୁତ ବାଳକଙ୍କୁ ଦେଖି ପାରିଲେ । ଅନେକ ଯୁଗ ପରେ ମଧ୍ୟ ପୁନର୍ବାର ସେହି ବାଳକଙ୍କୁ ଦେଖି ତାଙ୍କର ବିସ୍ମୟର ସୀମା ରହିଲା ନାହିଁ । ବାଳକଙ୍କୁ ପ୍ରଣାମ କରି ବଦ୍ଧାଞ୍ଜଳିପୁଟରେ ସେ ପଚାରିଲେ—"ହେ ଭଗବାନ୍ ! ମୁଁ ତୁମର ସ୍ୱରୂପ ଜାଣିବାକୁ ଇଚ୍ଛା କରୁଛି । ତୁମ ଉଦର ମଧ୍ୟରେ ମୁଁ କେତେ ବୁଲିଲି, କିନ୍ତୁ ତୁମର ଆଦି ଅନ୍ତ କିଛି ପାଇଲି ନାହିଁ । ହେ ପୁଣ୍ଡରୀକାକ୍ଷ ! କୁହ, ତୁମେ କିଏ ? ସାରା ବିଶ୍ୱକୁ ନିଜର ଉଦର ମଧ୍ୟରେ ରଖି ଶିଶୁରୂପରେ ତୁମେ କାହିଁକି ଏହି ବଟପତ୍ର ଉପରେ ଶୟନ କରିଅଛ ? ତୁମେ ଆଉ କେତେ କାଳ ଏଠାରେ ଅବସ୍ଥାନ କରିବ ? ହେ କମଳ ନୟନ ! ତୁମର ଉଦର ମଧ୍ୟରେ ମୁଁ ଯାହାସବୁ ଦେଖିଲି, ତାହା ଅଚିନ୍ତନୀୟ, ତାହା ବୁଦ୍ଧିର ଅଗୋଚର । ସମଗ୍ର ବିଶ୍ୱକୁ ନିଜ ମଧ୍ୟରେ ରଖିଥିବା ଅଚିନ୍ତ୍ୟର ଆଧାର ତୁମେ କିଏ ?"

ଭକ୍ତ ମାର୍କଣ୍ଡେୟଙ୍କ କଥା ଶୁଣି ମହାତେଜସ୍ୱୀ, ମହାନ୍‌ବକ୍ତା, ବାଳମୁକୁନ୍ଦ ରୂପୀ ଦେବ ଦେବ ଭଗବାନ ମୁନିଙ୍କୁ ସାନ୍ତ୍ୱନା ଦେଇ କହିଲେ—"ହେ ବ୍ରାହ୍ମଣ ! ମନୁଷ୍ୟ କଥା କ'ଣ, ଦେବତାମାନେ ମଧ୍ୟ ମୋତେ ଠିକ୍ ଭାବେ ଜାଣି ପାରନ୍ତିନାହିଁ । ତୁମ ଭକ୍ତିରେ ପ୍ରସନ୍ନ ହୋଇ ମୁଁ ମୋର ଜନ୍ମର ରହସ୍ୟ ତୁମ ଆଗରେ ବର୍ଣ୍ଣନା କରୁଛି, ଧୈର୍ଯ୍ୟର ସହିତ ତୁମେ ତାହା ଶ୍ରବଣ କର । ମୁଁ ହେଉଛି ଅବିନାଶୀ, ନିତ୍ୟ, ସର୍ବଭୂତ-ବିଧାତା ଏବଂ ସୃଷ୍ଟିକର୍ତ୍ତା । ମୁଁ ବିଷ୍ଣୁ, ବ୍ରହ୍ମା, ଶିବ, ଇନ୍ଦ୍ର, ସୂର୍ଯ୍ୟ, ଚନ୍ଦ୍ର, ଯମ, ପ୍ରଜାପତି, ଧାତା, ବିଧାତା ଓ ଯଜ୍ଞ । ଅଗ୍ନି ମୋର ମୁଖ, ପୃଥ୍ୱୀ ମୋର ଚରଣ, ସୂର୍ଯ୍ୟ ଚନ୍ଦ୍ର ମୋର ନେତ୍ର, ଊର୍ଦ୍ଧ୍ୱଭୂମି ମୋର ମସ୍ତକ, ଆକାଶ ଓ ଦିଗ ସମୂହ ମୋର ଶ୍ରୋତ୍ର ସମୁଦ୍ର ମୋର ସ୍ୱେଦ, ନଭୋମଣ୍ଡଳ ମୋର କାୟା ଏବଂ ବାୟୁ ମୋର ମନ । ଯଜ୍ଞଦ୍ୱାରା ମୁଁ ପୂଜିତ ହୁଏ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ନିଜ ନିଜ କର୍ମଦ୍ୱାରା ମୋର ଅର୍ଚ୍ଚନା କରନ୍ତି । ସୁମେରୁ ଓ ମନ୍ଦରାଚଳ ଦ୍ୱାରା ବିଭୂଷିତ ଏବଂ ସମୁଦ୍ରଦ୍ୱାରା ବେଷ୍ଟିତ ବସୁନ୍ଧରାକୁ ଶେଷ ରୂପରେ ମୁଁ ଧାରଣ କରେ । ପ୍ରାଚୀନ କାଳରେ ଜଳମଗ୍ନା ପୃଥିବୀକୁ ବରାହ ରୂପରେ ମୁଁ ହିଁ ଉଦ୍ଧାର କରିଥିଲି । ମୁଁ ହେଉଛି ସମ୍ବର୍ତ୍ତକ ନାମକ ଜ୍ୟୋତି, ଅନଳ, ସୂର୍ଯ୍ୟ ଏବଂ ଅନିଳ । ନଭୋମଣ୍ଡଳରେ ଦେଖାଯାଉଥିବା ତାରା ସମୂହ ମୋର ଲୋମକୂପ ମାତ୍ର । ସତ୍ୟ, ଦାନ, ତପ ଓ ଅହିଂସା ଦ୍ୱାରା ମନୁଷ୍ୟ ଯେଉଁ କଲ୍ୟାଣ ପ୍ରାପ୍ତ ହୁଏ, ମୁଁ ହିଁ ତାହାର ମୂଳ କାରଣ । ସମସ୍ତ ଦେହଧାରୀ ମୋ ବିଧାନରେ ବନ୍ଧିତ ଓ ମୋ ଆଜ୍ଞାରେ ସଞ୍ଚାଳିତ ହୁଅନ୍ତି । ଯେଉଁ ଶାନ୍ତ ଚିତ୍ତ ଜିତକ୍ରୋଧ ପୁରୁଷ ମୋର ପୂଜା-ଅର୍ଚ୍ଚନା କରନ୍ତି, ସେ ହିଁ ମୋତେ ଲାଭ କରନ୍ତି । ପାପୀ ମନୁଷ୍ୟ ମୋତେ କଦାପି ପାଇପାରେ ନାହିଁ । ଲୋଭୀ, କୃପଣ, ଇନ୍ଦ୍ରିୟାନୁରକ୍ତ ଓ ଅଶୁଭ କର୍ମକର୍ତ୍ତା ମୋଠାରୁ ସର୍ବଦା ଦୂରରେ ରହନ୍ତି । ଯେତେବେଳେ ଧର୍ମର ଗ୍ଲାନି ଓ ଅଧର୍ମର ଅଭ୍ୟୁଦୟ ହୁଏ, ସେତେବେଳେ ମୁଁ ପୃଥିବୀରେ ପ୍ରକଟ ହୋଇଥାଏ । ଯେତେବେଳେ ଦୈତ୍ୟଗଣ ହିଂସାପରାୟଣ ହୋଇ ଉଠନ୍ତି ଏବଂ ଦେବତାମାନଙ୍କ ଦ୍ୱାରା ବିନାଶ ପ୍ରାପ୍ତ ହୁଅନ୍ତି ନାହିଁ, ସେତେବେଳେ ଦୈତ୍ୟମାନଙ୍କୁ ସଂହାର କରି ଧର୍ମ ସ୍ଥାପନା କରିବା ପାଇଁ ମୁଁ ମାନବ ରୂପରେ ପ୍ରକଟ ହୋଇଥାଏ । ନିଜ ମାୟାରେ ମୁଁ ସମସ୍ତଙ୍କୁ ସଂହାର ଏବଂ ପୁନର୍ବାର ସୃଷ୍ଟି କରିଥାଏ । କାଳ, ମୁଁ ହିଁ କାଳଚକ୍ରର ପ୍ରବର୍ତ୍ତକ, ମୁଁ ହିଁ ବ୍ରହ୍ମ, ମୁଁ ହିଁ ସର୍ବଭୂତର ସଂହାରକର୍ତ୍ତା । ସମସ୍ତଙ୍କ ମଧ୍ୟରେ ମୁଁ ଆତ୍ମା ରୂପରେ ଅବସ୍ଥାନ କରେ । ଆଶ୍ଚର୍ଯ୍ୟ ଏହା ଯେ ସମସ୍ତଙ୍କ ମଧ୍ୟରେ ମୁଁ ଅବସ୍ଥାନ କଲେ ମଧ୍ୟ ମୋତେ କେହି ଜାଣି ପାରନ୍ତି ନାହିଁ । ହେ ବିପ୍ରର୍ଷି ! ମୁଁ ହିଁ ଶଙ୍ଖଚକ୍ର ଗଦା ପଦ୍ମଧାରୀ ନାରାୟଣ । ହଜାର ଯୁଗ ପର୍ଯ୍ୟନ୍ତ ସମସ୍ତ ବିଶ୍ୱକୁ ବିମୋହିତ କରି ମୁଁ ଏହିପରି ଶୋଇ ରହିବି । ଯେତେବେଳେ ଲୋକ-ପିତାମହ ବ୍ରହ୍ମା ପ୍ରକଟ ହେବେ, ସେତେବେଳେ ମୁଁ ପୁଣି ସମସ୍ତ ଭୂତ ତଥା ଆକାଶ, ପୃଥ୍ୱୀ, ଜ୍ୟୋତି, ବାୟୁ, ଜଳ ଆଦି ଚରାଚର ପଦାର୍ଥ ସୃଷ୍ଟି କରିବି । ସେପର୍ଯ୍ୟନ୍ତ ତୁମେ ମୋତେ ଧ୍ୟାନ କରି ସୁଖ ପୂର୍ବକ ଏଠାରେ ଅବସ୍ଥାନ କର ।"

ଭଗବାନଙ୍କର ଦିବ୍ୟବାଣୀ ଶ୍ରବଣ କରି ମହାନ ତପସ୍ୱୀ ଭକ୍ତ ମାର୍କଣ୍ଡେୟ କୃତାର୍ଥ ହୋଇଗଲେ । ଭଗବାନଙ୍କର ଅତ୍ୟଦ୍ଭୁତ ମାୟା ଦର୍ଶନ କରିଥିବାରୁ ସେ ନିଜକୁ ଭାଗ୍ୟବାନ ବୋଲି ମନେକଲେ । ପୁନଶ୍ଚ ସୃଷ୍ଟି ହେବା ପର୍ଯ୍ୟନ୍ତ ଭଗବାନଙ୍କୁ ଧ୍ୟାନ କରି ସେ ସେଠାରେ ସୁଖ ପୂର୍ବକ ଅବସ୍ଥାନ କଲେ ।

ଥରେ ଶିବ-ପାର୍ବତୀ ଭ୍ରମଣ ଉଦ୍ଦେଶ୍ୟରେ ଯାଉଥିବା ସମୟରେ ମାର୍କଣ୍ଡେୟଙ୍କୁ ତାଙ୍କ ଆଶ୍ରମ ମଧ୍ୟରେ ଧ୍ୟାନସ୍ଥ ହୋଇଥିବାର ଦେଖିଲେ । ମାର୍କଣ୍ଡେୟଙ୍କ ଧ୍ୟାନରେ ଏକାଗ୍ର ଚିତ୍ତ ଦେଖି ଭଗବତୀ ଉମା ଶିବଙ୍କୁ କହିଲେ—"ହେ ନାଥ ! ଏ ମୁନିଙ୍କର ତପସ୍ୟାରେ କେତେ ନିଷ୍ଠା ! ଏପରି ତପସ୍ୱୀ ଦେଖିବାକୁ ପ୍ରାୟ ବିରଳ । ଆପଣ ଏହାଙ୍କୁ ଅତିଶୀଘ୍ର କୃପା ପ୍ରଦାନ କରନ୍ତୁ, କାହିଁକିନା ତପସ୍ୱୀମାନଙ୍କୁ ତପସ୍ୟାର ଫଳ ପ୍ରଦାନ କରିବାପାଇଁ ଆପଣହିଁ ଏକମାତ୍ର ସମର୍ଥ ।"

ଭଗବାନ ଶିବ କହିଲେ—"ପାର୍ବତୀ ! ଏ ହେଉଛନ୍ତି ମାର୍କଣ୍ଡେୟ ମୁନି, ଭଗବାନଙ୍କର ଅନନ୍ୟ ଭକ୍ତ । ଏପରି ଭକ୍ତ କାମନାହୀନ ହୋଇଥିବାରୁ ଭଗବାନଙ୍କ ପ୍ରସନ୍ନତା ଛଡ଼ା ଅନ୍ୟ କିଛି କାମନା କରନ୍ତି ନାହିଁ । ଏପରି ଭଗବଦ୍ ଭକ୍ତଙ୍କର ଦର୍ଶନ ତଥା ତାଙ୍କ ସହିତ ବାର୍ତ୍ତାଳାପ କରିବା ଭାଗ୍ୟରେ ଥିଲେ ମିଳେ । ଏହା କହି ଶଙ୍କର ମାର୍କଣ୍ଡେୟଙ୍କ ସହିତ ବାର୍ତ୍ତାଳାପ କରିବାପାଇଁ ତାଙ୍କ ସମୀପକୁ ଗମନକଲେ, କିନ୍ତୁ ମାର୍କଣ୍ଡେୟ ଧ୍ୟାନସ୍ଥ ଥିବାରୁ କିଛି ଜାଣିପାରିଲେ ନାହିଁ । ଶଙ୍କର ଯୋଗବଳରେ ମୁନିଙ୍କର ହୃଦୟରେ ପ୍ରବେଶ କଲେ । ନିଜ ହୃଦୟରେ ତ୍ରିନୟନ, କର୍ପୂର ଗୌର ଶଙ୍କରଙ୍କୁ ଅକସ୍ମାତ୍ ଦର୍ଶନ କରିବାରୁ ମୁନିଙ୍କର ଧ୍ୟାନ ଭଙ୍ଗହେଲା । ନେତ୍ର ସମ୍ମୁଖରେ ଭଗବାନ ଶଙ୍କରଙ୍କୁ ଦର୍ଶନ କରି ସେ ଅତ୍ୟନ୍ତ ଆନନ୍ଦିତ ହେଲେ । ପାର୍ବତୀଙ୍କ ସହିତ ଶିବଙ୍କୁ ସେ ବିଧିପୂର୍ବକ ଅର୍ଚ୍ଚନା କଲେ । ଭଗବାନ ଶିବ ସନ୍ତୁଷ୍ଟ ହୋଇ ବର ମାଗିବାକୁ ମାର୍କଣ୍ଡେୟଙ୍କୁ ଅନୁରୋଧ କଲେ । ମାର୍କଣ୍ଡେୟ ପ୍ରାର୍ଥନା କଲେ —"ହେ ଦୟାମୟ ! ଆପଣ ଯଦି ମୋ ଉପରେ ପ୍ରସନ୍ନ ହୋଇଛନ୍ତି, ତେବେ ମୋତେ ଏହି ବର ଦିଅନ୍ତୁ କି ଭଗବାନଙ୍କ ଠାରେ ମୋର ଅବିଚଳ ଭକ୍ତି ରହୁ, ଆପଣଙ୍କଠାରେ ମୋର ସ୍ଥିର ଶ୍ରଦ୍ଧା ରହୁ; ଭଗବଦ୍ ଭକ୍ତଙ୍କ ପ୍ରତି ମୋ ମନରେ ଅନୁରାଗ ରହୁ ।"

ଭଗବାନ ଶଙ୍କର 'ଏବମସ୍ତୁ' କହି ମାର୍କଣ୍ଡେୟଙ୍କୁ କଳ୍ପାନ୍ତ ପର୍ଯ୍ୟନ୍ତ ଅମର ରହିବାକୁ ଓ ପୁରାଣାଚାର୍ଯ୍ୟ ଭାବରେ ପ୍ରସିଦ୍ଧି ଅର୍ଜନ କରିବାକୁ ବର ପ୍ରଦାନ କଲେ ।

ମାର୍କଣ୍ଡେୟ କେବଳ ଜଣେ ସିଦ୍ଧ ସାଧକ ନ ଥିଲେ, ସେ ଥିଲେ ଯଥାର୍ଥରେ କବି, ପଣ୍ଡିତ ଓ ଦାର୍ଶନିକ । ତାଙ୍କ ଦ୍ୱାରା ରଚିତ "ମାର୍କଣ୍ଡେୟ ପୁରାଣ", "ମାର୍କଣ୍ଡେୟ ସ୍ତୋତ୍ର", "ମାର୍କଣ୍ଡେୟ ସଂହିତା" ଓ "ମାର୍କଣ୍ଡେୟ ସ୍ମୃତି" ପୁରାଣ ଜଗତରେ ଗୋଟିଏ ଗୋଟିଏ ଅମୂଲ୍ୟ ରତ୍ନ ।

---

# ମହର୍ଷି ଅଗସ୍ତ୍ୟ

ମହର୍ଷି ଅଗସ୍ତ୍ୟ ଥିଲେ ବେଦର ଜଣେ ମନ୍ତ୍ରଦ୍ରଷ୍ଟା ଋଷି । ତାଙ୍କର ଉତ୍ପତ୍ତି ସମ୍ବନ୍ଧରେ ବିଭିନ୍ନ ପୁରାଣରେ ଭିନ୍ନ ଭିନ୍ନ ମତ ପରିଦୃଷ୍ଟ ହୁଏ । କୌଣସି କୌଣସି ପୁରାଣରେ ତାଙ୍କୁ ମିତ୍ରା ବରୁଣଙ୍କର ପୁତ୍ର ଭାବରେ ବର୍ଣ୍ଣନା କରାଯାଇଛି ତ ଅନ୍ୟ କେତେକ ପୁରାଣରେ ତାଙ୍କୁ ପୁଲସ୍ତ୍ୟଙ୍କ ପୁତ୍ର ଭାବରେ ଅଭିହିତ କରାଯାଇଛି । କୌଣସି କୌଣସି ଗ୍ରନ୍ଥରେ ମଧ୍ୟ ବର୍ଣ୍ଣିତ ହୋଇଛି ଯେ ପୁଲସ୍ତ୍ୟ ତନୟ ଦତ୍ତୋଳି ଅଗସ୍ତ୍ୟ ନାମରେ ପ୍ରସିଦ୍ଧ ହୋଇଥିଲେ । ସେ ଥିଲେ ବ୍ରାହ୍ମଣମାନଙ୍କ ମଧ୍ୟରେ ଶ୍ରେଷ୍ଠ ଓ ସର୍ବଜନ ପୂଜ୍ୟ । ବହୁକାଳ ପର୍ଯ୍ୟନ୍ତ ସେ ଗୃହସ୍ଥାଶ୍ରମରେ ପ୍ରବେଶ କରି ନଥିଲେ । କିନ୍ତୁ ଦୁଃଖଭାଗୀ ପିତୃଗଣଙ୍କ ମୁକ୍ତି ନିମନ୍ତେ ସେ ଗାର୍ହସ୍ଥ୍ୟ ଜୀବନ ଅତିବାହିତ କରିବା ଉଦ୍ଦେଶ୍ୟରେ କନ୍ୟା ସନ୍ଧାନରେ ବାହାରିଥିଲେ । ନିଃସନ୍ତାନ ବିଦର୍ଭ ଦେଶର ରାଜା ତାଙ୍କ ଆଶୀର୍ବାଦରେ ଲୋପାମୁଦ୍ରା ନାମ୍ନୀ ଏକ କନ୍ୟାରତ୍ନ ଲାଭ କରିଥିଲେ । ଅସାମାନ୍ୟା ରୂପବତୀ ସେହି ରାଜକନ୍ୟା ଲୋପାମୁଦ୍ରା ହୋଇଥିଲେ ଅଗସ୍ତ୍ୟ ମୁନିଙ୍କ ପତ୍ନୀ । ସେ ସ୍ୱାମୀଙ୍କର ଉପଯୁକ୍ତ ଆଦର୍ଶ ଋଷିପତ୍ନୀ ହୋଇପାରିଥିଲେ । ମହର୍ଷି ଅଗସ୍ତ୍ୟଙ୍କର ଜୀବନ କେବଳ ଘଟଣାବହୁଳ ନଥିଲା, ତାହା ଥିଲା ନାନା ପ୍ରକାର ଅଲୌକିକତାରେ ପରିପୂର୍ଣ୍ଣ । ଅଲୌକିକ କାର୍ଯ୍ୟମାନ ସମ୍ପାଦନ କରି ସେ ବିଶ୍ୱର ନାନାବିଧ କଲ୍ୟାଣ ସାଧନ କରିଥିଲେ ।

ପୂର୍ବକାଳରେ ବୃତ୍ରାସୁର ନାମରେ ଜଣେ ରାକ୍ଷସ ଥିଲା । ଜଗତର କଲ୍ୟାଣ ପାଇଁ ଦେବରାଜ ଇନ୍ଦ୍ର ସେହି ରାକ୍ଷସକୁ ବିନାଶ କରିଥିଲେ । ସେହି ରାଗରେ କାଳେୟ ନାମକ ଦୈତ୍ୟ ମୁନି ଋଷିମାନଙ୍କ ଉପରେ ଅତ୍ୟାଚାର ଆରମ୍ଭ କରିଦେଲା । ଦିନରେ ସେ ସମୁଦ୍ର ଭିତରେ ଲୁଚି ରହୁଥିଲା ଏବଂ ରାତିରେ ସମୁଦ୍ରରୁ ବାହାରି ଜଙ୍ଗଲରେ ବାସକରୁଥିବା ମୁନିଋଷିମାନଙ୍କୁ ଭକ୍ଷଣ କରୁଥିଲା । ଏପରିକି ସେ ବଶିଷ୍ଠ, ଚ୍ୟବନ, ଭରଦ୍ୱାଜ ଆଦି ପ୍ରସିଦ୍ଧ ମହର୍ଷିମାନଙ୍କ ଆଶ୍ରମ ଉପରେ ଆକ୍ରମଣ କରି ସେମାନଙ୍କର ହଜାର ହଜାର ଶିଷ୍ୟଙ୍କୁ ଭୋଜନ କରିଥିଲା । ରାକ୍ଷସର ଏପରି କୁକର୍ମ ଦେଖି ଦେବତାମାନେ ଭୀତତ୍ରସ୍ତ ହୋଇ ପଡ଼ିଲେ । ଏହାର ପ୍ରତିବିଧାନ ପାଇଁ ସେମାନେ ମହର୍ଷି ଅଗସ୍ତ୍ୟଙ୍କର ଶରଣଭିକ୍ଷା କଲେ । ମୁନିଋଷିମାନଙ୍କର କଷ୍ଟ ଦୂର କରିବାପାଇଁ ମହର୍ଷି ଅଗସ୍ତ୍ୟ ଏକ ଚଳୁରେ ସାରା ସମୁଦ୍ରର ଜଳପାନ କରିଦେଲେ । ସମୁଦ୍ର ଶୁଖିଯିବାରୁ ଦେବତାମାନେ ଆସି ସମୁଦ୍ର ଗର୍ଭରେ ଆଶ୍ରୟ ନେଇଥିବା କାଳେୟ ଦୈତ୍ୟ ସହିତ ଅନ୍ୟାନ୍ୟ ଦୈତ୍ୟମାନଙ୍କୁ ବଧ କରିଥିଲେ ।

ଥରେ ବ୍ରହ୍ମହତ୍ୟା ଯୋଗୁଁ ଦେବରାଜ ଇନ୍ଦ୍ର ସ୍ଥାନଚ୍ୟୁତ ହୋଇଯିବାରୁ ମହାରାଜା ନହୁଷ ଇନ୍ଦ୍ରପଦ ଲାଭ କରିଥିଲେ । ଇନ୍ଦ୍ରପଦ ଲାଭକରିବା ପରେ ଅଧିକାର ମଦରେ ମତ୍ତ ହୋଇ ସେ ଇନ୍ଦ୍ରାଣୀଙ୍କୁ ନିଜର ସ୍ତ୍ରୀ କରିବାପାଇଁ ଚେଷ୍ଟା ଚଳାଇଲେ । ନହୁଷଙ୍କ କବଳରୁ ରକ୍ଷା ପାଇବା ପାଇଁ ଦେବଗୁରୁ ବୃହସ୍ପତିଙ୍କ ପରାମର୍ଶ କ୍ରମେ ଇନ୍ଦ୍ରାଣୀ ସର୍ତ୍ତ ରଖିଲେ ଯେ ଯଦି ନହୁଷ ଏପରି ଏକ ସବାରୀରେ ଚଢ଼ି ତାଙ୍କ ନିକଟକୁ ଆସନ୍ତି, ଯେଉଁ ସବାରୀରେ କି ପୂର୍ବରୁ କେହି ଚଢ଼ି ନଥିବେ । ତେବେ ସେ ତାଙ୍କୁ ସ୍ୱାମୀ ପଦରେ ବରଣ କରିବେ । ମଦମତ୍ତ ନହୁଷ ସବାରୀ ବୋହିବା ପାଇଁ ଋଷିମାନଙ୍କୁ ଧରିଆଣିଲେ । ଋଷିମାନଙ୍କର ତ ମାନ ଅପମାନ ପ୍ରତି ଦୃଷ୍ଟି ନଥାଏ । ତେଣୁ ସେମାନେ ନହୁଷଙ୍କୁ ସବାରୀରେ ବସାଇ ଇନ୍ଦ୍ରାଣୀଙ୍କ ନଅର ଆଡ଼କୁ ଗତି କରିବାକୁ ଲାଗିଲେ । ଋଷିମାନଙ୍କର ସବାରୀ ବୋହିବା ଅଭ୍ୟାସ ନଥିବାରୁ ପଥ ମଧ୍ୟରେ ସେମାନଙ୍କର ଗତି ମନ୍ଥର ହୋଇଗଲା । ତେଣୁ ଶୀଘ୍ର ଗତି କରିବାପାଇଁ ରାଜା ନହୁଷ ଋଷି-ମାନଙ୍କୁ କୋରଡ଼ାରେ ପ୍ରହାର କରି ପାଟିକଲେ — "ସର୍ପ, ସର୍ପ" (ଶୀଘ୍ର ଚାଲ, ଶୀଘ୍ର ଚାଲ) ! ଋଷିମାନଙ୍କ ମଧ୍ୟରେ ମହର୍ଷି ଅଗସ୍ତ୍ୟ ଜଣେ ସବାରୀ ବାହକ ଥିଲେ । ସେ ଋଷିମାନଙ୍କର କଷ୍ଟ ସହି ନପାରି ନହୁଷଙ୍କୁ ଏକ ସର୍ପ ହେବାକୁ ଅଭିଶାପ ଦେଲେ । ସଙ୍ଗେ ସଙ୍ଗେ ନହୁଷ ଏକ ମହାକାୟ ସର୍ପରେ ପରିଣତ ହୋଇ ସ୍ୱର୍ଗ ରାଜ୍ୟରୁ ବିଚ୍ୟୁତ ହେଲେ । ଧନ-ମଦ ଓ ପଦ ମଦ ହେତୁ ଅନ୍ଧ ହେବାର ଉପଯୁକ୍ତ ପ୍ରତିଫଳ ସେ ଭୋଗ କଲେ ।

ଭଗବାନ ଶ୍ରୀରାମ ବନ ଗମନ କାଳରେ ମହର୍ଷି ଅଗସ୍ତ୍ୟଙ୍କ ଆଶ୍ରମକୁ ଆଗମନ କରିଥିଲେ । ମହର୍ଷି ବଡ଼ ଶ୍ରଦ୍ଧା, ଭକ୍ତି ଓ ପ୍ରେମର ସହିତ ଶ୍ରୀରାମଙ୍କର ସତ୍କାର କରିଥିଲେ । ସେ ଶ୍ରୀରାମଙ୍କୁ କେତେକ ଦିବ୍ୟ ଅସ୍ତ୍ର ପ୍ରଦାନ କରି ସୂର୍ଯ୍ୟୋପସ୍ଥାନର ପଦ୍ଧତି ଶିକ୍ଷା ଦେଇଥିଲେ । ଭଗବାନ ଶ୍ରୀରାମ ଲଙ୍କାଯୁଦ୍ଧରେ ସେହିସବୁ ଦିବ୍ୟଅସ୍ତ୍ର ପ୍ରୟୋଗ କରି ତାହାର ସୁଫଳ ଲାଭ କରିଥିଲେ । ମହର୍ଷି ଅଗସ୍ତ୍ୟ ଭଗବାନ ଶ୍ରୀରାମଙ୍କୁ ଯେଉଁ ମହତ୍ତ୍ୱପୂର୍ଣ୍ଣ ଭାବରେ ସନ୍ତୁଷ୍ଟ କରିଥିଲେ, ତାହାର କିଛି ଅଂଶ ଅଧ୍ୟାତ୍ମ ରାମାୟଣରୁ ଏଠାରେ ଉଦ୍ଧାର କରାଯାଉଛି —

ଲୋକେ ତ୍ୱଦ୍‌ଭକ୍ତି ନିରତାସ୍ତ୍ୱନ୍ମନ୍ତ୍ରୋପାସକାଶ୍ଚ ଯେ ।
ବିଦ୍ୟା ପ୍ରାଦୁର୍ଭବେତ୍ତେଷାଂ ନେତରେଷାଂ କଦାଚନ ॥
ଅତସ୍ତ୍ୱଦ୍ ଭକ୍ତି ସମ୍ପନ୍ନା ମୁକ୍ତା ଏବ ନ ସଂଶୟଃ ।
ତ୍ୱଦ୍‌ଭକ୍ତ୍ୟ ମୃତ ହୀନା ନାଂ ମୋକ୍ଷଃ ସ୍ୱପ୍ନେଽପି ନୋ ଭବେତ୍ ॥
କିଂ ରାମ ବହୁନୋକ୍ତେନ ସାରଂ କିଞ୍ଚିଦ୍ ବ୍ରବୀମିତେ ।
ସାଧୁ ସଙ୍ଗତିରେବାତ୍ର ମୋକ୍ଷ ହେତୁରୁଦାହୃତା ॥
ସାଧବଃ ସମଚିତ୍ତା ଯେ ନିଃସ୍ପୃହା ବିଗତୈଷିଣଃ ।
ଦାନ୍ତାଃ ପ୍ରଶାନ୍ତାସ୍ତ୍ୱଦ୍ ଭକ୍ତା ନିବୃତ୍ତାଖିଳ କାମନାଃ ॥

ଇଷ୍ଟପ୍ରାପ୍ତି ବିପଦ୍ଭ୍ୟୋଶ୍ଚ ସମାଃ ସଙ୍ଗ ବିବର୍ଜିତାଃ ।
ସନ୍ୟସ୍ତାଖିଳ କର୍ମାଣଃ ସର୍ବଦା ବ୍ରହ୍ମତତ୍ପରାଃ ॥
ସମାଦିଗୁଣ ସମ୍ପନ୍ନାଃ ସନ୍ତୁଷ୍ଟା ଯେନ କେନଚିତ୍ ।
ସତ୍ସଙ୍ଗ ମୋ ଭବେଦ୍ ଯର୍ହି ତ୍ୱତ୍କଥା ଶ୍ରବଣେ ରତିଃ ।
ସମୁଦେତି ତତୋ ଭକ୍ତି ସ୍ତ୍ୱୟି ରାମ ସନାତନେ ।
ତ୍ୱଦ୍ଭକ୍ତା ବୁ୍ୟପନ୍ନାୟାଂ ବିଜ୍ଞାନଂ ବିପୁଲଂ ସ୍ଫୁଟମ୍ ॥
ଉଦେତି ମୁକ୍ତିମାର୍ଗୋଽୟ ମାଦ୍ୟଶ୍ଚତୁର ସେବିତଃ ।
ତସ୍ମାଦ୍ ରାଘବ ସଦ୍ଭକ୍ତି ସ୍ତ୍ୱୟି ମେ ପ୍ରେମ ଲକ୍ଷଣା ॥
ସଦାଭୂୟାଦ୍ଧରେ ସଙ୍ଗ ସ୍ତ୍ୱଦ୍ଭକ୍ତେଷୁ ବିଶେଷତଃ ।
ଅଦ୍ୟମେ ସଫଳଂ ଜନ୍ମ ଭବତ୍ସନ୍ଦର୍ଶନାଦଭୂତ୍ ॥
(ଅଦ୍ୟମେ କ୍ରତବଃ ସର୍ବେ ବଭୂବୁଃ ସଫଳାଃ ପ୍ରଭୋ ॥)
ସଦାମେ ସୀତୟା ସାର୍ଦ୍ଧଂ ହୃଦୟେ ବସ ରାଘବ ।
ଗଚ୍ଛତସ୍ତିଷ୍ଠତୋ ବାପି ସ୍ମୃତିଃ ସ୍ୟାନ୍ମେ ସଦା ତ୍ୱୟି ।

(ଅରଣ୍ୟ କାଣ୍ଡ : ୩/୩୪-୪୪)

'ସଂସାରରେ ଯେଉଁ ଲୋକ ଆପଣଙ୍କ ଭକ୍ତିରେ ତତ୍ପର ତଥା ଆପଣଙ୍କ ମନ୍ତ୍ରୋପାସନାରେ ଯତ୍ନଶୀଳ ହୁଏ, ତାହାର ଅନ୍ତଃକରଣରେ ବିଦ୍ୟାର ପ୍ରାଦୁର୍ଭାବ ହୋଇଥାଏ, କିନ୍ତୁ ଅନ୍ୟ ଲୋକର ହୃଦୟରେ ସେପରି ହୁଏନାହିଁ । ତେଣୁ ଯେଉଁ ଲୋକ ଆପଣଙ୍କ ଭକ୍ତିସମ୍ପନ୍ନ ସେହିଁ ମୁକ୍ତ, ଏଥିରେ କୌଣସି ସନ୍ଦେହ ନାହିଁ । ଆପଣଙ୍କ ଭକ୍ତିରୂପ ଅମୃତ ବିନା ସ୍ୱପ୍ନରେ ମଧ୍ୟ ମୋକ୍ଷ ମିଳେ ନାହିଁ । ହେ ରାମଚନ୍ଦ୍ର ! ଆଉ ଅଧିକ କ'ଣ କହିବି ? ଏ ବିଷୟରେ ଯାହା କିଛି ସାର କଥା, ତାହା ହିଁ ଆପଣଙ୍କୁ କହୁଛି । ସଂସାରରେ ମୋକ୍ଷର କାରଣ ହେଉଛି ସାଧୁସଙ୍ଗ । ସଂସାରରେ ଯେଉଁ ଲୋକ ସମ୍ପଦ ବିପଦରେ ସମଚିତ୍ତ, ସ୍ପୃହାରହିତ, ପୁତ୍ର-ବିତ୍ତାଦି ଏଷଣା ରହିତ, ଇନ୍ଦ୍ରିୟ ଦମନକାରୀ, ଶାନ୍ତଚିତ୍ତ, ଆପଣଙ୍କର ଭକ୍ତ, କାମନାଶୂନ୍ୟ, ଇଷ୍ଟ-ଅନିଷ୍ଟ ପ୍ରାପ୍ତିରେ ସମଭାବାପନ୍ନ, ଆସକ୍ତିରହିତ, ସର୍ବକର୍ମତ୍ୟାଗୀ, ସର୍ବଦା ବ୍ରହ୍ମପରାୟଣ, ଶମାଦିଗୁଣ ସମ୍ପନ୍ନ ତଥା ଯାହା କିଛି ମିଳିଲେ ମଧ୍ୟ ସେଥିରେ ସନ୍ତୁଷ୍ଟ ଚିତ୍ତ, ସେହି ପ୍ରକୃତରେ ସାଧୁପଦବାଚ୍ୟ । ଏପରି ସାଧୁପୁରୁଷଙ୍କର ସଙ୍ଗଲାଭ ହେଲେ ଆପଣଙ୍କ କଥା ଶ୍ରବଣରେ ପ୍ରେମଜାତ ହୋଇଥାଏ । ତଦନନ୍ତର ସନାତନ-ପୁରୁଷ ଆପଣଙ୍କ ପ୍ରତି ଭକ୍ତିଜାତ ହୁଏ ତଥା ଆପଣଙ୍କ ପ୍ରତି ଭକ୍ତିଜାତ ହେଲେ ହୃଦୟରେ ବିଶଦ ସ୍ଫୁଟ ଜ୍ଞାନର ଉଦୟ ହୋଇଥାଏ । ଏହାହିଁ ଚତୁରଜନସେବିତ ମୁକ୍ତିର ଆଦ୍ୟ ମାର୍ଗ । ଅତଏବ୍ ହେ ରାଘବ ! ଆପଣଙ୍କ ପ୍ରତି ମୋ ମନରେ ସର୍ବଦା ପ୍ରେମଲକ୍ଷଣା ଭକ୍ତି ଜାଗରିତ ହେଉ । ଅଧିକରୁ ଅଧିକ ଆପଣଙ୍କ ଭକ୍ତମାନଙ୍କ ସହିତ ସତ୍ସଙ୍ଗ

କରିବା ପାଇଁ ମୋ ମନରେ ସ୍ପୃହା ଜାତ ହେଉ । ହେ ନାଥ ! ଆଜି ଆପଣଙ୍କ ଦର୍ଶନରେ ମୋର ଜନ୍ମ ସଫଳ ହୋଇଗଲା । (ହେ ପ୍ରଭୋ ! ଆଜି ମୋର ସମ୍ପୂର୍ଣ୍ଣ ଯଜ୍ଞ ସଫଳ ହୋଇଗଲା । ) ହେ ରାଘବ ! ଆପଣ ସୀତାଙ୍କ ସହିତ ସର୍ବଦା ମୋ ହୃଦୟରେ ନିବାସ କରନ୍ତୁ । ଚାଲିବା, ବୁଲିବା ତଥା ଛିଡ଼ାହେବା, ସବୁ ଅବସ୍ଥାରେ ଯେପରି ମୁଁ ଆପଣଙ୍କୁ ସ୍ମରଣ କରିବାକୁ ସମର୍ଥ ହୁଏଁ ।''

ପ୍ରେମଭକ୍ତିର ମୂର୍ତ୍ତିମାନ୍ ସ୍ୱରୂପ ଭକ୍ତ ସୁତୀକ୍ଷ୍ଣ ଥିଲେ ମହର୍ଷି ଅଗସ୍ତ୍ୟଙ୍କର ପ୍ରଧାନ ଶିଷ୍ୟ । ଲଙ୍କା ଜୟ ପରେ ଭଗବାନ ଶ୍ରୀରାମ ଅଯୋଧ୍ୟାକୁ ଫେରି ଯେତେବେଳେ ରାଜସିଂହାସନରେ ଅଧିଷ୍ଠିତ ହେଲେ, ସେତେବେଳେ ମହର୍ଷି ଅଗସ୍ତ୍ୟ ସେଠାକୁ ଆସିଥିଲେ ଏବଂ ଶ୍ରୀରାମଙ୍କୁ ନାନା-ପ୍ରକାର ଉପଦେଶ ଦେଇଥିଲେ । ବାଲ୍ମୀକି ରାମାୟଣର ଉତ୍ତର କାଣ୍ଡର ଅଧିକାଂଶ କଥା ଅଗସ୍ତ୍ୟଙ୍କ ଦ୍ୱାରା କଥିତ ହୋଇଥିଲା । ସେ ନିଜର ଉପଦେଶ ଓ ସତ୍ ସଂକଳ୍ପ ଦ୍ୱାରା ଜଗତର ମହାନ୍ କଲ୍ୟାଣ ସାଧନ କରିଥିଲେ । ସେ ''ଅଗସ୍ତ୍ୟ ସଂହିତା'' ନାମକ ଉପାସନା ସମ୍ବନ୍ଧୀ ଯେଉଁ ସୁନ୍ଦର ଗ୍ରନ୍ଥ ରଚନା କରିଥିଲେ, ତାହା ଏକ ମହତ୍ତ୍ୱପୂର୍ଣ୍ଣ ଗ୍ରନ୍ଥ ଭାବରେ ସୁପ୍ରସିଦ୍ଧ ।

ଥରେ ସ୍ୱାମୀ ପୁଷ୍କରିଣୀ ତୀର୍ଥରେ ମହାରାଜା ଶଙ୍ଖଙ୍କ ସହିତ ମହର୍ଷି ଅଗସ୍ତ୍ୟ ଭଗବାନ ବିଷ୍ଣୁଙ୍କର ଦିବ୍ୟ ଦର୍ଶନ ଲାଭ କରିଥିଲେ । ତାହାର ସଂକ୍ଷିପ୍ତ ଇତିହାସ ହେଉଛି

ହୈହୟ ବଂଶର ନୀତିଜ୍ଞ, ପ୍ରଜାବତ୍ସଳ ଧର୍ମାତ୍ମା ରାଜା ଶଙ୍ଖ ଶ୍ରୁତାଭିଧାନଙ୍କର ପୁତ୍ର ଥିଲେ । ଧର୍ମ ଅନୁସାରେ ସେ ପ୍ରଜାମାନଙ୍କୁ ପାଳନ କରୁଥିଲେ ଏବଂ ନିୟମିତ ରୂପେ ଭଗବାନଙ୍କର ପୂଜା ଓ ଧ୍ୟାନ କରୁଥିଲେ । କାମନାଶୂନ୍ୟ ହୋଇ କେବଳ ଭଗବାନଙ୍କୁ ପ୍ରସନ୍ନ କରିବାପାଇଁ ସେ ପୁଣ୍ୟ, ଦାନ, ବ୍ରତ ତଥା ବଡ଼ ବଡ଼ ଦକ୍ଷିଣାଯୁକ୍ତ ଯଜ୍ଞ ଅନୁଷ୍ଠାନ କରୁଥିଲେ । ତାଙ୍କ ରାଜ୍ୟର ବିଭିନ୍ନ ସ୍ଥାନରେ କୂପ, ପୁଷ୍କରିଣୀ ଓ ଧର୍ମଶାଳାମାନ ନିର୍ମିତ ହୋଇଥିଲା । ବିଦ୍ୱାନ ବ୍ରାହ୍ମଣମାନଙ୍କ ମୁଖରୁ ସେ ଭଗବାନଙ୍କର ମଙ୍ଗଳମୟ ଚରିତ ଶ୍ରବଣ କରୁଥିଲେ । ବିଭିନ୍ନ ପର୍ବମାନଙ୍କରେ ଭଗବାନଙ୍କ ପାଇଁ ସେ ଧୁମ୍‌ଧାମର ସହିତ ମହୋତ୍ସବ ପାଳନ କରୁଥିଲେ । ଭଗବତ୍ ନାମ କୀର୍ତ୍ତନ ଓ ଭଗବତ୍ ସ୍ୱରୂପ ସ୍ମରଣ ତାଙ୍କର ପରମ ପ୍ରିୟ କାର୍ଯ୍ୟ ଥିଲା । ଭଗବାନଙ୍କୁ ଲାଭ କରିବାପାଇଁ ଦିନକୁ ଦିନ ସେ ଉତ୍କଣ୍ଠିତ ହେଉଥିଲେ । ଅତ୍ୟନ୍ତ ବ୍ୟାକୁଳତାର ସହିତ ସେ ଚିନ୍ତା କରୁଥିଲେ—''କେଉଁଦିନ ମୁଁ ଭଗବାନଙ୍କର ଦର୍ଶନ ପାଇବି ? ସେହି ଦୟାମୟ ପ୍ରଭୁ କେଉଁଦିନ ମୋତେ ନିଜର କରିବେ ? ମୁଁ ତ ଏପରି ଅଧମ ଯେ ତାଙ୍କର ଶ୍ରୀଚରଣ ସମ୍ମୁଖକୁ ଯିବାକୁ ମୋର ଅଧିକାର ମଧ୍ୟ ନାହିଁ । କିନ୍ତୁ ସେ ତ କରୁଣାର ସମୁଦ୍ର । ମୋ ପରି କ୍ଷୁଦ୍ର ମାନବ ପ୍ରତି ତାଙ୍କର କ'ଣ କରୁଣା ହେବ ନାହିଁ ? ସେହି ସୌନ୍ଦର୍ଯ୍ୟ ସିନ୍ଧୁରୁ ଏକ ବିନ୍ଦୁ ଲାଭ କରିବା ମୋ ଭାଗ୍ୟରେ କ'ଣ ନାହିଁ ?'' ଏହିପରି ଚିନ୍ତାକରି ତାଙ୍କର ପ୍ରାଣ ବ୍ୟାକୁଳତାରେ ଛଟପଟ ହେଉଥିଲା ।

ତପନେ ସହସା ରାଜା ଶଙ୍ଖ ମଧୁର ଧ୍ୱନି ଶୁଣିବାକୁ ପାଇଲେ—"ରାଜନ୍ ! ହୃଦୟରୁ ଶୋକ ପରିତ୍ୟାଗ କର । ତୁମେ ତ ମୋର ଅତି ଅନ୍ତରଙ୍ଗ ଭକ୍ତ । ତୁମେ ମୋ ପାଇଁ ଯେତେ କଷ୍ଟ ସହିଛ, ଯେତେ ତପସ୍ୟା କରିଛ, ସେଥିରେ ତୁମ ପ୍ରତି ମୁଁ ସନ୍ତୁଷ୍ଟ ହୋଇଛି । କିନ୍ତୁ ବର୍ତ୍ତମାନ ତୁମେ ମୋର ଦର୍ଶନ ପାଇବ ନାହିଁ । ମୋର ଦର୍ଶନ ପାଇବାପାଇଁ ତୁମକୁ ଆହୁରି ଏକ ସହସ୍ର ବର୍ଷ ଅପେକ୍ଷା କରିବାକୁ ପଡ଼ିବ । ତୁମ ପରି ମହର୍ଷି ଅଗସ୍ତ୍ୟ ମଧ୍ୟ ମୋତେ ଦର୍ଶନ କରିବାକୁ ବ୍ୟାକୁଳ ହେଉଛନ୍ତି । ବ୍ରହ୍ମାଙ୍କ ଆଦେଶ ଅନୁସାରେ ସେ ଭେଙ୍କଟେଶ ପର୍ବତ ଉପରେ ତପସ୍ୟା କରୁଛନ୍ତି । ତୁମେ ସେଠାକୁ ଯାଇ ମୋର ଭଜନ କର । ସେହିଠାରେ ହିଁ ତୁମେ ମୋର ଦର୍ଶନ ପାଇବ ।"

ରାଜା ଶଙ୍ଖ ଏକଥା ଶୁଣି ଆନନ୍ଦରେ ବିହ୍ୱଳ ହୋଇ ପଡ଼ିଲେ । ଏକ ସହସ୍ର ବର୍ଷ ହେଉପଛେ ଭଗବାନଙ୍କର ଦର୍ଶନ ମିଳିବ—ଏହି ଆନନ୍ଦରେ ତାଙ୍କର ମନପ୍ରାଣ ତୃପ୍ତ ହୋଇଗଲା । ଏକ ସହସ୍ର ବର୍ଷକୁ ସେ ଏକକ୍ଷଣ ବୋଲି ମନେ କରିବାକୁ ଲାଗିଲେ । ସଙ୍ଗେ ସଙ୍ଗେ ସେ ନିଜର ଜ୍ୟେଷ୍ଠ ପୁତ୍ର ବଜ୍ରକୁ ରାଜ୍ୟ ପ୍ରଦାନ କରି ଭେଙ୍କଟେଶ ପର୍ବତକୁ ଯାତ୍ରା କଲେ । ସେଠାରେ ସେ ସ୍ୱାମୀ ପୁଷ୍କରିଣୀ ତୀରରେ ଗୋଟିଏ ପର୍ଣ୍ଣ କୁଟୀର ନିର୍ମାଣ କରି କଠୋର ତପସ୍ୟା କରିବାକୁ ଲାଗିଲେ ।

ମହର୍ଷି ଅଗସ୍ତ୍ୟ ହରିନାମ ଗାନ କରି କରି ଭେଙ୍କଟେଶ ପର୍ବତ ପରିକ୍ରମା କରୁଥିଲେ । ଦେବଗଣ ଓ ଋଷିଗଣ ଜାଣି ପାରିଲେ ଯେ ଭଗବାନ ବିଷ୍ଣୁ ମହର୍ଷି ଅଗସ୍ତ୍ୟଙ୍କୁ ଦର୍ଶନ ଦେବେ । ତେଣୁ ସେମାନେ ମଧ୍ୟ ଭଗବାନଙ୍କୁ ଦର୍ଶନ କରିବାପାଇଁ ଭେଙ୍କଟେଶ ପର୍ବତ ନିକଟରେ ଏକତ୍ରିତ ହେଲେ । ଯେତେବେଳେ ଭଜନ ଓ ତପସ୍ୟା କରି କରି ଏକ ସହସ୍ର ବର୍ଷ ବିତିଗଲା, ଅଥଚ ଭଗବାନଙ୍କର ଦର୍ଶନ ମିଳିଲା ନାହିଁ, ସେତେବେଳେ ମହର୍ଷି ଅଗସ୍ତ୍ୟ ଅତ୍ୟନ୍ତ ବ୍ୟାକୁଳ ହୋଇ ପଡ଼ିଲେ । ସେହି ସମୟରେ ବ୍ରହ୍ମାଙ୍କ ନିର୍ଦ୍ଦେଶ କ୍ରମେ ବୃହସ୍ପତି, ଶୁକ୍ରାଚାର୍ଯ୍ୟ ଆଦି ମହର୍ଷିଗଣ ସେଠାକୁ ଆସି ତାଙ୍କୁ କହିଲେ—"ବ୍ରହ୍ମାଙ୍କ ନିର୍ଦ୍ଦେଶ କ୍ରମେ ଆମ୍ଭେମାନେ ଆପଣଙ୍କୁ ସ୍ୱାମୀ ପୁଷ୍କରିଣୀ ତୀର୍ଥରେ ତପସ୍ୟା କରୁଥିବା ମହାରାଜା ଶଙ୍ଖଙ୍କ ନିକଟକୁ ନେବାକୁ ଆସିଛୁ । ସେଠାକୁ ଗଲେ ଆପଣ ଭଗବାନ ବିଷ୍ଣୁଙ୍କର ଦର୍ଶନ ପାଇବେ ।"

ମହର୍ଷି ଅଗସ୍ତ୍ୟ ଋଷିମାନଙ୍କ ସହିତ ମହାରାଜା ଶଙ୍ଖଙ୍କ କୁଟୀରକୁ ଗମନ କଲେ । ରାଜା ଶଙ୍ଖ ସମସ୍ତଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇଲେ । ସେଠାରେ ଶଙ୍ଖ ଓ ଅଗସ୍ତ୍ୟଙ୍କ ଉପସ୍ଥିତିରେ ଋଷିଗଣ ଓ ଦେବଗଣ ଭଗବାନଙ୍କର ମଙ୍ଗଳମୟ ନାମ ଗାନ କରିବାକୁ ଲାଗିଲେ । ଅଖଣ୍ଡ କୀର୍ତ୍ତନରେ ଦିନରାତି ଅତିବାହିତ ହେଲା ।

ତୃତୀୟ ଦିନ ରାତ୍ରିର ଶେଷ ପ୍ରହରରେ ସମସ୍ତେ ଶଙ୍ଖଚକ୍ର ଗଦା-ପଦ୍ମଧାରୀ ଭଗବାନ ବିଷ୍ଣୁଙ୍କୁ ସ୍ୱପ୍ନରେ ଦର୍ଶନ କଲେ । ତେଣୁ ଚତୁର୍ଥ ଦିନ ପ୍ରଭାତରେ ସମସ୍ତେ ନିଶ୍ଚିତ ହୋଇଗଲେ ଯେ ସେହିଦିନ ଭଗବାନ ସେମାନଙ୍କୁ ଦର୍ଶନ ଦେବେ । ଏହି ଆନନ୍ଦରେ ସମସ୍ତେ ପୁଷ୍କରିଣୀରେ ସ୍ନାନ କରି ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ । "ଓଁ ନମୋ ନାରାୟଣାୟ" ଏହି ଅଷ୍ଟାକ୍ଷର ମନ୍ତ୍ରରେ ଭେଙ୍କଟେଶ ପର୍ବତର ବାୟୁମଣ୍ଡଳ ନିନାଦିତ ହୋଇ ଉଠିଲା ।

ହଠାତ୍ ସେଠାରେ ଉଦ୍ଭାସିତ ହେଲା ଏକ ଅଦ୍ଭୁତ ତେଜ । ସେହି ତେଜର ଉଜ୍ଜ୍ୱଳତା ଏତେ ଅଧିକ ଥିଲା ଯେ କୋଟି କୋଟି ସୂର୍ଯ୍ୟର ଉଜ୍ଜ୍ୱଳତା ତାହା ସହିତ ତୁଳନୀୟ ହୋଇ ନ ପାରେ । କିନ୍ତୁ ସେହି ତେଜରେ କୌଣସି ତାପ ନ ଥିଲା । ସେହି ତେଜ ଥିଲା ସ୍ନିଗ୍ଧ, ଶୀତଳ ଓ ପ୍ରକାଶ ଯୁକ୍ତ । ସେହି ଦିବ୍ୟ ତେଜ ଦର୍ଶନ କରି ସମସ୍ତେ ଭଗବାନଙ୍କୁ ଧ୍ୟାନ କରିବାକୁ ଲାଗିଲେ । ତତ୍‌କ୍ଷଣାତ ଭଗବାନ ବିଷ୍ଣୁ ନିଜର ବିଶ୍ୱରୂପ ପ୍ରକାଶ କଲେ । ତାଙ୍କର ସହସ୍ର ମସ୍ତକ, ସହସ୍ର ନେତ୍ର, ସହସ୍ର ନାସିକା, ସହସ୍ର କର୍ଣ୍ଣ, ସହସ୍ର ମୁଖ ଏବଂ ଅଗଣିତ ହସ୍ତପଦ ସମସ୍ତଙ୍କର ଦୃଷ୍ଟି ଗୋଚର ହେଲା । ତାଙ୍କର ଆକୃତି ମନୋହର ହେଲେ ମଧ୍ୟ ଅତ୍ୟନ୍ତ ଭୟଙ୍କର ଦିଶୁଥିଲା । ସେହି ଅନାଦି, ଅନନ୍ତ, ଅଚିନ୍ତ୍ୟ, ସର୍ବେଶ୍ୱର, ସର୍ବଶକ୍ତିମାନ ପ୍ରଭୁଙ୍କର ବିଶ୍ୱରୂପ ଦର୍ଶନ କରି ସମସ୍ତେ ତାଙ୍କର ଜୟ-ଜୟକାର କଲେ ଓ ସ୍ତୁତି କରିବାକୁ ଲାଗିଲେ । ବ୍ରହ୍ମା, ଶିବ, ସନକାଦି ଋଷି, ସିଦ୍ଧ, ଯୋଗୀ ଓ ଭଗବତ୍ ପାର୍ଷଦ ମଧ୍ୟ ଭଗବାନଙ୍କର ବିଶ୍ୱରୂପ ଦର୍ଶନ କରିବାକୁ ସେଠାରେ ଆସି ଏକତ୍ରିତ ହେଲେ । କିନ୍ତୁ ଭଗବାନଙ୍କର ବିଶ୍ୱରୂପ ଏତେ ଭୟଙ୍କର ଥିଲା ଯେ ବେଶିକ୍ଷଣ ତାହା ଦର୍ଶନ କରିବା କାହାରି ପକ୍ଷରେ ସମ୍ଭବ ନ ଥିଲା । ସମସ୍ତେ ସେହି ସୌନ୍ଦର୍ଯ୍ୟଘନ ପ୍ରଭୁଙ୍କର ପରମ ସୁନ୍ଦର ଚତୁର୍ଭୁଜ ରୂପ ଦେଖିବାକୁ ଇଚ୍ଛା କରୁଥିଲେ । ଭକ୍ତବାଞ୍ଛା କଳ୍ପତରୁ ଭଗବାନ ବିଷ୍ଣୁ ସମସ୍ତଙ୍କର ଇଚ୍ଛା ପୂର୍ଣ୍ଣ କରିବାପାଇଁ ନିଜର ବିଶ୍ୱରୂପ ଅନ୍ତର୍ହିତ କରି ନେଲେ ଏବଂ ଏକ ସୁନ୍ଦର ରତ୍ନ ଖଚିତ ବିମାନରେ ଚତୁର୍ଭୁଜ, ପୀତାମ୍ବରଧାରୀ, ପରମ ସୁନ୍ଦର ସ୍ୱରୂପରେ ପ୍ରକଟ ହେଲେ । ଭଗବାନଙ୍କର ଏହି ମଧୁରିମାମୟ ସ୍ୱରୂପ ଦର୍ଶନ କରି ସମସ୍ତଙ୍କର ହୃଦୟ ଆନନ୍ଦମଗ୍ନ ହେଲା । ସମସ୍ତେ ଭକ୍ତିର ସହିତ ଭଗବାନଙ୍କୁ ସ୍ତୁତି କରିବାକୁ ଲାଗିଲେ । ଭଗବାନ ଅଗସ୍ତ୍ୟଙ୍କୁ କହିଲେ—"ତୁମେ ମୋତେ ଲାଭ କରିବାପାଇଁ କଠୋର ତପସ୍ୟା କରିଛ । ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇଛି । ତୁମେ ତୁମର ଅଭିଳାଷିତ ବର ପ୍ରାର୍ଥନା କର ।"

ମହର୍ଷି ଅଗସ୍ତ୍ୟ କହିଲେ—"ଭଗବାନ୍ ! ଆପଣଙ୍କ ଚରଣ ପଙ୍କଜରେ ମୋର ଭକ୍ତି ସର୍ବଦା ଜାଗ୍ରତ ରହୁ, ମୋତେ ଏହି ବର ପ୍ରଦାନ କରନ୍ତୁ । ଆଜିଠାରୁ ଆପଣ

ଏହି ରୂପରେ ଏହି ପର୍ବତରେ ଅବସ୍ଥାନ କରନ୍ତୁ ଏବଂ ଯେଉଁମାନେ ଆପଣଙ୍କ ଦର୍ଶନ କରିବାକୁ ଏହି ପର୍ବତକୁ ଆସିବେ, ସେମାନଙ୍କର କାମନା ପୂର୍ଣ୍ଣ ହେଉ ।"

ମହର୍ଷିଙ୍କ ଇଚ୍ଛା ପୂର୍ଣ୍ଣ କରିବାପାଇଁ ସେହିଦିନଠାରୁ ଭଗବାନ ଭେଙ୍କଟେଶ ପର୍ବତରେ ଅବସ୍ଥାନ କଲେ । ଭେଙ୍କଟେଶ ପର୍ବତ ସେହିଦିନଠାରୁ ମହାନ୍ ତୀର୍ଥରେ ପରିଣତ ହେଲା । ଏବେ ମଧ୍ୟ ସେହି ତୀର୍ଥ ସୁପ୍ରସିଦ୍ଧ ହୋଇଅଛି ।

ତଦନନ୍ତର ଭଗବାନ ରାଜା ଶଙ୍ଖଙ୍କୁ ବର ମାଗିବାକୁ ଅନୁରୋଧ କଲେ । ଶଙ୍ଖ ମଧ୍ୟ ଭଗବାନଙ୍କୁ ଭକ୍ତି ପ୍ରାର୍ଥନା କରିଥିଲେ ।

ଦଣ୍ଡକାରଣ୍ୟ ଭିତରେ ମହର୍ଷି ଅଗସ୍ତ୍ୟଙ୍କର ଆଶ୍ରମ ଥିଲା । ରାକ୍ଷସମାନେ ସେହି ଅରଣ୍ୟରେ ଉତ୍ପାତ କରୁଥିଲେ ମଧ୍ୟ ମହର୍ଷିଙ୍କ ତେଜରେ ଭୟଭୀତ ହୋଇ ତାଙ୍କ ଆଶ୍ରମ ଉପରେ ଉପଦ୍ରବ କରିବାକୁ ସାହସ କରୁ ନଥିଲେ । ଏପରିକି ତ୍ରିଭୁବନ ବିଜୟୀ ରାବଣ ମଧ୍ୟ ମହର୍ଷିଙ୍କୁ ଭୟ କରୁଥିଲେ । ଥରେ ବିନ୍ଧ୍ୟାଚଳ ସୂର୍ଯ୍ୟଙ୍କ ଗତିପଥ ଅବରୋଧ କରିବାପାଇଁ ଉଚ୍ଚତାରେ ବୃଦ୍ଧି ପାଇବାକୁ ଲାଗିଲା । ଜଗତର କଲ୍ୟାଣପାଇଁ ମହର୍ଷି ଅଗସ୍ତ୍ୟ ବିନ୍ଧ୍ୟାଚଳକୁ ଭୂମିରେ ପ୍ରଣତ ହେବାକୁ ଆଦେଶ ଦେଲେ । ସେହିଦିନଠାରୁ ବିନ୍ଧ୍ୟାଚଳ ଭୂମିରେ ପ୍ରଣତ ହୋଇଅଛି ।

ମହର୍ଷି ଅଗସ୍ତ୍ୟ ଭଗବାନଙ୍କ ପ୍ରତି ଅନନ୍ୟ ଭକ୍ତି ପ୍ରଦର୍ଶନ କରି ସପ୍ତର୍ଷିମଣ୍ଡଳ ମଧ୍ୟରେ ସ୍ଥାନ ପାଇଛନ୍ତି ଏବଂ କଳ୍ପାନ୍ତ ପର୍ଯ୍ୟନ୍ତ ଅମରତ୍ୱ ଲାଭ କରିଛନ୍ତି ।







# କଣ୍ଡୁ ମୁନି

ପ୍ରାଚୀନ କାଳରେ କଣ୍ଡୁ ନାମକ ଜଣେ ତପୋନିଷ୍ଠ ମୁନି ଥିଲେ । ଗୋମତୀ ତୀରସ୍ଥ ଏକ ଏକାନ୍ତ ସ୍ଥଳରେ ତାଙ୍କର ଫଳପୁଷ୍ପ ସୁଶୋଭିତ ପରମ ରମଣୀୟ ଆଶ୍ରମ ଥିଲା । ମୁନି ସେହି ଆଶ୍ରମରେ ବାସ କରି ବ୍ରତ, ଉପବାସ, ନିୟମ, ସ୍ନାନ ଓ ସଂଯମାଦି ସହିତ କଠୋର ତପସ୍ୟା ଅନୁଷ୍ଠାନ କରୁଥିଲେ । ଗ୍ରୀଷ୍ମ ଦିନରେ ପଞ୍ଚାଗ୍ନି ଭିତରେ, ବର୍ଷା ଦିନରେ ଉନ୍ମୁକ୍ତ ସ୍ଥାନରେ ଓ ଶୀତ ଦିନରେ ଜଳ ମଧ୍ୟରେ ଛିଡ଼ା ହୋଇ ସେ ତପସ୍ୟା କରୁଥିଲେ । ତାଙ୍କର ଏପରି ଉଗ୍ରତପ ଦେଖି ଦେବତା, ଗନ୍ଧର୍ବ, ସିଦ୍ଧ ଓ ବିଦ୍ୟାଧରାଦି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଦେବରାଜ ଇନ୍ଦ୍ର ନିଜର ଇନ୍ଦ୍ରପଦ ଚାଲିଯିବା ଆଶଙ୍କାରେ ଭୟଭୀତ ହୋଇ ପଡ଼ିଲେ । ମୁନିଙ୍କର ତପରେ ବିଘ୍ନ ଘଟାଇବା-ପାଇଁ ସେ ପ୍ରମ୍ଲୋଚା ନାମ୍ନୀ ଅତି ସୁନ୍ଦରୀ, ସ୍ଥିର ଯୌବନା ଏକ ଅପ୍ସରାକୁ ମୁନିଙ୍କ ନିକଟକୁ ପ୍ରେରଣ କଲେ । ପ୍ରମ୍ଲୋଚା ମୁନିଙ୍କ ଆଶ୍ରମରେ ଉପସ୍ଥିତ ହୋଇ ମଧୁର ସ୍ୱରରେ ଗୀତ ଗାଇବାକୁ ଲାଗିଲା । ବସନ୍ତ ସେଠାରେ ନିଜର ଶକ୍ତି ପ୍ରୟୋଗ କଲା । ପୁଷ୍ପଧନ୍ୱା ମଦନ ମୁନିଙ୍କ ମନରେ କ୍ଷୋଭ ଉତ୍ପନ୍ନ କରିବାକୁ ବାରମ୍ବାର ଚେଷ୍ଟା ଚଳାଇଲା । ଏହା ଫଳରେ ମୁନିଙ୍କର ଚିତ୍ତ ଚାଞ୍ଚଲ୍ୟ ଘଟିଲା । ଭଗବାନଙ୍କର ଶରଣା-ପନ୍ନ ନ ହୋଇ ନିଜର ତପୋବଳ ଦ୍ୱାରା ଅଭିମାନଯୁକ୍ତ ମୁନି ମଦନମୋହିତ ହୋଇ ପ୍ରମ୍ଲୋଚାର ବଶୀଭୂତ ହୋଇଗଲେ । ତପୋବଳରେ ସେ ଏକ ସୁନ୍ଦର ଷୋଡ଼ଶବର୍ଷୀୟ ଯୁବକ ହୋଇ ପ୍ରମ୍ଲୋଚା ସହିତ ନିଜ ଆଶ୍ରମରେ ବାସ କରିବାକୁ ଲାଗିଲେ ।

ଦିନକୁ ଦିନ କଣ୍ଡୁ ମୁନି ଏପରି କାମବଶ ହୋଇ ପଡ଼ିଲେ ଯେ ସେ ସ୍ନାନ, ସନ୍ଧ୍ୟା, ହୋମ, ସ୍ୱାଧ୍ୟାୟ, ଦେବତାର୍ଚ୍ଚନ, ବ୍ରତ, ଉପବାସ, ନିୟମ, ଧ୍ୟାନଆଦି ଭୁଲି ରାତିଦିନ କେବଳ ସେହି ଅପ୍ସରା ସହିତ ଆସକ୍ତ ହେବାକୁ ଲାଗିଲେ । ଏପରିକି ସେ ରାତି, ଦିନ, ପକ୍ଷ, ମାସ, ବର୍ଷ ଆଦି ଭୁଲିଗଲେ ।

ସ୍ନାନଂ ସନ୍ଧ୍ୟାଂ ଜପଂ ହୋମଂ ସ୍ୱାଧ୍ୟାୟଂ ଦେବତାର୍ଚ୍ଚନମ୍ ।
ବ୍ରତୋପବାସନିୟମଂ ଧ୍ୟାନଂ ଚ ମୁନି ସତ୍ତମଃ ॥

[୧]ଭୁକ୍ତ୍ୱା ସ ରେମେ ମୁଦିତସ୍ତୟା ସାର୍ଦ୍ଧମହର୍ନିଶମ୍ ।
ମନ୍ମଥାବିଷ୍ଟ ହୃଦୟୋ ନ ବୁବୋଧ ତପଃକ୍ଷୟମ୍ ॥
ସନ୍ଧ୍ୟାଗର୍ଜିତବା ପକ୍ଷ ମାସର୍ତ୍ତ୍ୱୟନ ହାୟନମ୍ ।
ନ ବୁବୋଧ ଗତଂ କାଳଂ ବିଷୟାସକ୍ତ ମାନସଃ ॥

ଏହିପରି ବିଷୟ ସେବନରେ କଣ୍ଡୁ ମୁନିଙ୍କର ଏକ ଶହରୁ ଅଧିକ ବର୍ଷ ଅତିବାହିତ ହୋଇଗଲା । ତାହାପରେ ଦିନେ ପ୍ରମ୍ଳୋଚା କହିଲା—"ଭଗବନ୍ ! ମୁଁ ଏବେ ସ୍ୱର୍ଗକୁ ଯିବାକୁ ଇଚ୍ଛା କରୁଛି । କୃପାକରି ମୋତେ ଆଜ୍ଞା ଦିଅନ୍ତୁ ।"

ଆସକ୍ତଚିତ୍ତ କଣ୍ଡୁ ମୁନି କହିଲେ—"କଲ୍ୟାଣି ! ସ୍ୱର୍ଗକୁ ତ ଯିବ, ଆଉ କିଛି ଦିନ ରହିଯାଅ ।"

ପ୍ରମ୍ଳୋଚା ପୁଣି ମୁନିଙ୍କ ସହିତ ବାସ କରିବାକୁ ଲାଗିଲେ । ଆଉ ଏକ ଶହ ବର୍ଷ ଅତୀତ ହେବାପରେ ପୁଣି ଯେତେବେଳେ ପ୍ରମ୍ଳୋଚା ସ୍ୱର୍ଗକୁ ଯିବାକୁ ଅନୁମତି ମାଗିଲା, ସେତେବେଳେ ମୁନି ଆଉ କିଛି ଦିନ ରହିବାପାଇଁ ପ୍ରମ୍ଳୋଚାକୁ ଅନୁରୋଧ କଲେ । ଏହିପରି ଶତାବ୍ଦୀ ପରେ ଶତାବ୍ଦୀ ବିତିବାକୁ ଲାଗିଲା । ତଥାପି ମଧ୍ୟ ମୁନି ପ୍ରମ୍ଳୋଚାକୁ ସ୍ୱର୍ଗକୁ ଯିବାକୁ ଅନୁମତି ଦେଲେ ନାହିଁ । ତପସ୍ୱୀ ମୁନିଙ୍କର ଅଭିଶାପ ଭୟରେ ପ୍ରମ୍ଳୋଚା ସ୍ୱେଚ୍ଛାରେ ସ୍ୱର୍ଗକୁ ଯାଇ ପାରିଲା ନାହିଁ । ଦିନେ ସନ୍ଧ୍ୟା ସମୟରେ ପୂର୍ବ ସୁକୃତ ହେତୁ ମୁନିଙ୍କ ହୃଦୟରେ ସାମାନ୍ୟ ଚେତା ପଶିଲା । ସେ ତରତର ହୋଇ କୁଟୀରରୁ ବାହାରକୁ ବାହାରି ଆସିଲେ । ଏହା ଦେଖି ପ୍ରମ୍ଳୋଚା ପଚାରିଲା— "ଭଗବନ୍ ! କୁଆଡ଼େ ଯାଉଛନ୍ତି ?"

ମୁନି ଉତ୍ତର ଦେଲେ—"ସୂର୍ଯ୍ୟାସ୍ତ ହେବାକୁ ଅଉ ଅଳ୍ପ ଛଣ ବାକୀ ଅଛି । ସେଥିପାଇଁ ମୁଁ ସନ୍ଧ୍ୟା ଉପାସନା କରିବାକୁ ଯାଉଛି ।"

ପ୍ରମ୍ଳୋଚା ଦୁଇ ହାତ ଯୋଡ଼ି ବିନୟ ପୂର୍ବକ କହିଲା—"ଭଗବନ୍ ! ଅଜି କ'ଣ ପ୍ରଥମ ଥର ପାଇଁ ସୂର୍ଯ୍ୟାସ୍ତ ହେଉଛି ? ସୂର୍ଯ୍ୟାସ୍ତ ତ ପ୍ରତିଦିନ ହେଉଛି । କିନ୍ତୁ ଆପଣତ କେଉଁଦିନ ସନ୍ଧ୍ୟା ଉପାସନା କରିବାକୁ ଯାଉ ନ ଥିଲେ !"

ମୁନି ଅତ୍ୟନ୍ତ ବିସ୍ମିତ ହୋଇ କହିଲେ—"କଲ୍ୟାଣି ! ତୁମେ ଏପରି କ'ଣ କହୁଛ ? ଅଜି ପ୍ରଭାତରେ ତୁମେ ତ ଏଠାକୁ ଆସିଥିଲ !"

ଅପ୍ସରା କହିଲା—"ଭଗବନ୍ ! ଅବଶ୍ୟ ଏହା ସତ୍ୟ ଯେ ମୁଁ ଯେତେବେଳେ ଏଠାକୁ ଆସିଥିଲି ତାହା ଆଜିର ପ୍ରଭାତ ପରି ଗୋଟିଏ ପ୍ରଭାତ ଥିଲା । କିନ୍ତୁ ସେହି

ପ୍ରସ୍ଥିତ ଓ ଆଜିର ପ୍ରଭାତ ମଧ୍ୟରେ ନ'ଶହ ସାତ ବର୍ଷ, ଛ'ମାସ ଓ ତିନିଦିନ ବିତି ଯାଇଛି ।"

ଏକଥା ଶୁଣି କଣ୍ଡୁ ମୁନି ଚକିତ ହୋଇଗଲେ । ସହଜରେ ସେ ଏକଥା ବିଶ୍ୱାସ କରି ପାରିଲେ ନାହିଁ । ତେଣୁ ପ୍ରମ୍ଲୋଚା ତାଙ୍କୁ ବୁଝାଇବାକୁ ଲାଗିଲା । "ଭଗବନ୍ ! ଆପଣଙ୍କୁ ମିଛ କହିବାକୁ କିଏ ସାହସ କରିବ ? ତା'ଛଡ଼ା ଆପଣ ଆଜି ସତ୍ପଥରେ ପୁଣି ଥରେ ପାଦ ରଖିଛନ୍ତି । ମୋ ପରି ଜଣେ ଅଧମ ଅପ୍ସରା ଆପଣଙ୍କୁ କ'ଣ ମିଛ କହିପାରେ ?"

ପ୍ରମ୍ଲୋଚାର କଥା ଶୁଣି ମୁନିଙ୍କ ମନରେ ଭୀଷଣ ଦୁଃଖ ଜାତ ହେଲା । ସେ କହିଲେ—"ପାପିନୀ ! ତୁ ଆସି ମୋର ତପସ୍ୟାକୁ ନଷ୍ଟ କରି ଦେଲୁ ! ଅବଶ୍ୟ ତୋତେ ମୁଁ ଅଭିଶାପ ଦିଅନ୍ତି । କିନ୍ତୁ ସତ୍ପୁରୁଷ ଯାହା ସହିତ ସାତ ପାଦ ଏକାଠି ଚାଲନ୍ତି, ତାକୁ ନିଜର ମିତ୍ର ଭାବରେ ଗ୍ରହଣ କରନ୍ତି । ମୁଁ ତ ତୋ' ସହିତ ଦୀର୍ଘଦିନ ଧରି ଏକାଠି ରହିଛି । ତା'ଛଡ଼ା ତୋର ବା ଦୋଷ କ'ଣ ? ମୁଁ ନିଜେ ତ ଇନ୍ଦ୍ରିୟର ଦାସ ହୋଇ ପଡ଼ିଛି । ମୋତେ ଧିକ୍ । ବିଷୟ ଲୋଲୁପତାରେ ପଡ଼ି ମୁଁ ନିଜର ସର୍ବନାଶ କରିଛି । ବର୍ତ୍ତମାନ ତୁ ଏଠାରୁ ଶୀଘ୍ର ଚାଲି ଯା' ।"

ପ୍ରମ୍ଲୋଚା ଭୟରେ ସେଠାରୁ ପଳାୟନ କଲା । ଯିବା ସମୟରେ ସେ ଗର୍ଭବତୀ ଥିଲା । ତାହା ଗର୍ଭରୁ ଯେଉଁ କନ୍ୟା ଜନ୍ମଲାଭ କରିଥିଲା, ସେ ମାରିଷା ନାମରେ ପ୍ରସିଦ୍ଧ ହୋଇଥିଲା । ଦକ୍ଷ ପ୍ରଜାପତି ଥିଲେ ଏହି ମାରିଷାର ପୁତ୍ର ।

ପ୍ରମ୍ଲୋଚା ଚାଲିଯିବା ପରେ ତପୋଭ୍ରଷ୍ଟ କଣ୍ଡୁ ମୁନି ପଶ୍ଚାତ୍ତାପ-ଅଗ୍ନିରେ ଜଳିବାକୁ ଲାଗିଲେ । କୃତ ପାପରୁ ଉଦ୍ଧାର ପାଇବାପାଇଁ ସେ ଅବିଳମ୍ବେ ସେହି ସ୍ଥାନ ପରିତ୍ୟାଗ କରି ଶ୍ରୀ ଜଗନ୍ନାଥ ଧାମକୁ ଆଗମନ କଲେ । ପବିତ୍ର ପୁରୁଷୋତ୍ତମ କ୍ଷେତ୍ରରେ ପରମ ଶ୍ରଦ୍ଧାର ସହିତ ସେ ନିୟମ-ବ୍ରତ ପାଳନ କରି ଶ୍ରୀ ଜଗନ୍ନାଥଙ୍କର ଶରଣାପନ୍ନ ହେଲେ ଏବଂ ଭଗବାନଙ୍କର ଅତି ପ୍ରିୟ 'ବ୍ରହ୍ମପାର' ସ୍ତୋତ୍ର ଜପ କରିବାକୁ ଲାଗିଲେ । 'ବ୍ରହ୍ମପାର ସ୍ତୋତ୍ର, ହେଉଛି—

ପାରଂ ପରଂ ବିଷ୍ଣୁର ପାରପାରଃ ପରଃ ପରେଭ୍ୟଃ ପରମାତ୍ମରୂପଃ
ସ ବ୍ରହ୍ମପାରଃ ପରପାର ଭୂତଃ ପରଃ ପରାଣାମପି ପାରପାରଃ ।।
ସ କାରଣଂ କାରଣସଂ ଶ୍ରିତୋଽପି ତସ୍ୟାପି ହେତୁଃ ପରହେତୁ ହେତୁଃ
କାର୍ଯ୍ୟେଽପି ଚୈବଂ ସହ କର୍ମ କର୍ତ୍ତୃରୂପୈରନେକୈରବତୀ ହ୍ୟସବମ୍ ।।

ବ୍ରହ୍ମ ବିଭୁର୍ବ୍ରହ୍ମ ସ ସର୍ବଭୂତୋ ବ୍ରହ୍ମ ପ୍ରଜାନାଂ ପରିରଚ୍ୟତୋଽସୌ
ବ୍ରହ୍ମାବ୍ୟୟଂ ନିତ୍ୟମଜଂ ସ ବିଷ୍ଣୁରପକ୍ଷ ୟାଦୌରଖିଳୈରସଙ୍ଗଃ ॥
ବ୍ରହ୍ମାକ୍ଷରମଜଂ ନିତ୍ୟଂ ଯଥାସୌ ପୁରୁଷୋତ୍ତମଃ ।
ତଥା ରାଗାଦୟୋ ଦୋଷାଃ ପ୍ରଯାନ୍ତୁ ପ୍ରଶମଂ ମମ ॥

( ବ୍ରହ୍ମପୁରାଣ, ୧୭୮ ଅଧ୍ୟାୟ, ୧୧୪-୧୧୭ )

ଭଗବାନଙ୍କର ଅନନ୍ୟ ଶରଣାପନ୍ନ କଣ୍ଡୁ ମୁନି ଭଗବାନଙ୍କୁ ଦର୍ଶନ କରିବା-ପାଇଁ ଅତ୍ୟନ୍ତ ଉତ୍ସୁକ ହୋଇ ନିରନ୍ତର ଉପର୍ଯ୍ୟୁକ୍ତ ବ୍ରହ୍ମପାର ସ୍ତୋତ୍ର ଜପ କରିବାକୁ ଲାଗିଲେ । ମୁନିଙ୍କର ସୁଦୃଢ଼ ଭକ୍ତି ଦେଖି ତଥା ତାଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଭକ୍ତବତ୍ସଳ ଗରୁଡ଼ ବାହନ ଭଗବାନ ଦିନେ ଧ୍ୟାନମଗ୍ନ ମୁନିଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ଏବଂ ଗମ୍ଭୀର ସ୍ୱରରେ କହିଲେ—"ହେ ମୁନିବର ! ତୁମର ଅଭୀଷ୍ଟ ବର ପ୍ରଦାନ କରିବାପାଇଁ ମୁଁ ତୁମ ସମ୍ମୁଖରେ ଆବିର୍ଭୂତ ହୋଇଛି । ତୁମେ ତୁମର ଅଭୀଷ୍ଟ ବର ମାଗିନିଅ ।" ଧ୍ୟାନମଗ୍ନ ମୁନି ଭଗବାନଙ୍କର ଦିବ୍ୟବାଣୀ ଶ୍ରବଣ କରି ଚକ୍ଷୁ ଉନ୍ମୀଳନ କଲେ ଏବଂ ସମ୍ମୁଖରେ ଭଗବାନଙ୍କର ଅପରୂପ ଶୋଭା ଦେଖିବାକୁ ପାଇଲେ—

ଅତସୀପୁଷ୍ପସଙ୍କାଶଂ ପଦ୍ମପତ୍ରାୟତେକ୍ଷଣମ୍ ।
ଶଙ୍ଖ, ଚକ୍ର, ଗଦା, ପାଣିଂ ମୁକୁଟାଙ୍ଗଦ ଧାରିଣମ୍ ॥
ଚତୁର୍ବାହୁ ମୁଦାରାଙ୍ଗଂ ପୀତବସ୍ତ୍ରଧରଂ ଶୁଭମ୍ ।
ଶ୍ରୀବତ୍ସଲକ୍ଷଣଂ ଯୁକ୍ତଂ ବନମାଳା ବିଭୂଷିତମ୍ ।
ସର୍ବ ଲକ୍ଷଣ ସଂଯୁକ୍ତଂ ସର୍ବରତ୍ନ ବିଭୂଷିତମ୍ ।
ଦିବ୍ୟ ଚନ୍ଦନ ଲିପ୍ତାଙ୍ଗଂ ଦିବ୍ୟମାଲ୍ୟ ସମନ୍ୱିତମ୍ ॥
ତତଃ ସ ବିସ୍ମୟାବିଷ୍ଟୋ ରୋମାଞ୍ଚିତ ତନୂରୁହଃ ।
ଦଣ୍ଡବତ୍ ପ୍ରଣିପତ୍ୟୋର୍ବ୍ୟାଂ ପ୍ରଣାମମ କରୋତ୍ତଦା ॥
ଅଦ୍ୟମେ ସଫଳଂ ଜନ୍ମ ଅଦ୍ୟମେ ସଫଳଂ ତପଃ ।
ଇତ୍ୟୁକ୍ତ୍ୱା ମୁନିଶାର୍ଦ୍ଦୂଳସ୍ତଂ ସ୍ତୋତୁ ମୁପଚକ୍ରମେ ॥

(ବ୍ରହ୍ମପୁରାଣ—୧୯୮-୧୬୩-୧୬୭ )

ଯେଉଁ ପ୍ରଭୁଙ୍କର ନୀଳବର୍ଣ୍ଣ କମଳ ସଦୃଶ ବିଶାଳ ନେତ୍ରଯୁଗଳ ଅତସୀ କୁସୁମ ପରି ଶୋଭାଯୁକ୍ତ, ଯାହାଙ୍କର ହସ୍ତ ଶଙ୍ଖ-ଚକ୍ର-ଗଦା ମଣ୍ଡିତ, ଯିଏ ମୁକୁଟାଙ୍ଗଦ ଧାରୀ, ଚତୁର୍ଭୁଜ, ଅତି ସୁନ୍ଦର କଳେବର ଯୁକ୍ତ, ପୀତାମ୍ବରଧାରୀ, ଶୁଭଦର୍ଶନ, ଯାହାଙ୍କର ହୃଦୟରେ ଶ୍ରୀବତ୍ସ ଚିହ୍ନ ଅଙ୍କିତ, ଯାହାଙ୍କର କଳେବର ବନମାଳା ଓ ସମସ୍ତ ରତ୍ନ-ବିଭୂଷିତ, ଦିବ୍ୟଚନ୍ଦନ ଓ ଦିବ୍ୟମାଳାରେ ଯାହାଙ୍କର ଅଙ୍ଗ ଭୂଷିତ, ସେହି

ପ୍ରଭୁଙ୍କୁ ଦର୍ଶନ କରି କଣ୍ଡୁ ମୁନି ଅତ୍ୟନ୍ତ ମୁଗ୍ଧ ହୋଇ ପଡ଼ିଲେ ଏବଂ ପୁଲକିତ ହୋଇ ଭୂମିରେ ପଡ଼ି ଦଣ୍ଡ ପ୍ରଣାମ କଲେ । ତାହାପରେ ପ୍ରଭୁଙ୍କର ଚରଣ ବନ୍ଦନା କରି କହିଲେ—"ଅହୋ ! ଆଜି ମୋର ଜନ୍ମ ସାର୍ଥକ ହେଲା, ଆଜି ମୋର ତପସ୍ୟା ସଫଳ ହେଲା । ଏହା କହି ମୁନି ଭଗବାନଙ୍କର ଗୁଣ, ପ୍ରଭାବ ଓ ରହସ୍ୟ ଯୁକ୍ତ ସର୍ବଶାସ୍ତ୍ରମୟୀ ସ୍ତୁତି ଗାନ କରିବାକୁ ଲାଗିଲେ ।"

ମୁନିଙ୍କ ସ୍ତୁତିରେ ପ୍ରେମବିହ୍ୱଳ ହୋଇ ଭଗବାନ କହିଲେ—"ହେ ମୁନିଶ୍ରେଷ୍ଠ ! ତୁମର ଯାହା ଅଭିଳାଷ ତାହା ଅତିଶୀଘ୍ର ମୋଠାରୁ ମାଗିନିଅ ।" କଣ୍ଡୁ ମୁନି କହିଲେ—"ହେ ଜଗନ୍ନାଥ ! ହେ ସ୍ୱାମୀ ! ଏ ସଂସାର ବଡ଼ ଦୁସ୍ତର, ହୃଦୟବିଦାରକ, ଅନିତ୍ୟ, ଦୁଃଖମୟ, ରମ୍ଭାବୃକ୍ଷ ପରି ସାରହୀନ, ମାୟାଯୁକ୍ତ, ବୁଦ୍ ବୁଦ୍ ପରି ଚଞ୍ଚଳ, ମହାନ୍ ଉପଦ୍ରବ ପୂର୍ଣ୍ଣ ଓ ଅତି ଭୟାନକ । ତୁମ ମାୟାରେ ମୋହିତ ହୋଇ ଅନାଦି କାଳରୁ ମୁଁ ଏହି ସଂସାର ଚକ୍ରରେ ବୁଲୁଅଛି । ଦୀର୍ଘ ସମୟ ଧରି ବିଷୟ ରସରେ ବୁଡ଼ି ରହିଲେ ମଧ୍ୟ ମୋର ବିଷୟ ତୃଷ୍ଣା ମେଣ୍ଟିଲା ନାହିଁ । ତେଣୁ ସଂସାର ଭୟରେ ପୀଡ଼ିତ ହୋଇ ମୁଁ ତୁମର ଶରଣାପନ୍ନ ହୋଇଛି । ହେ ଦେବେଶ ! ହେ କୃଷ୍ଣ ! ମୋ ପ୍ରତି ସଦୟ ହୁଅ, ମୋତେ କରୁଣା କର । ମୋତେ ସ୍ନେହ ସନାତନ ପରମ ପଦ ପ୍ରଦାନ କର, ଯାହା ଲାଭ କଲେ ଆଉ ଏ ସଂସାରକୁ ଫେରି ଆସିବାକୁ ହୁଏ ନାହିଁ ।"

ଭଗବାନ କହିଲେ—"ହେ ମୁନିବର ! ମୋ ଆଶୀର୍ବାଦରେ ତୁମେ ନିଶ୍ଚୟ ମୁକ୍ତିଲାଭ କରିବ । କ୍ଷତ୍ରିୟ, ବୈଶ୍ୟ, ସ୍ତ୍ରୀ, ଶୂଦ୍ର ଓ ଅନ୍ତ୍ୟଜ ଜାତିର ଯିଏ କେହି ମୋତେ ଭକ୍ତି କରେ, ସେ ପରମ ସିଦ୍ଧି ଲାଭ କରେ । ଆଉ ତୁମେ ତ ସହଜେ ମୋର ଭକ୍ତ; ତୁମ କଥା କ'ଣ କହିବ ? ଚଣ୍ଡାଳ ଯଦି ସମ୍ୟକ୍ ଶ୍ରଦ୍ଧାର ସହିତ ମୋତେ ଭକ୍ତି କରେ, ତେବେ ସେ ମଧ୍ୟ ମନୋବାଞ୍ଛିତ ସିଦ୍ଧି ପ୍ରାପ୍ତ ହୁଏ । ଆଉ ଅନ୍ୟମାନଙ୍କ କଥା କ'ଣ ବା କହିବ ?"

ମଦ୍‌ଭକ୍ତାଃ କ୍ଷତ୍ରିୟା ବୈଶ୍ୟାଃ ସ୍ତ୍ରୀୟଃ ଶୂଦ୍ରାସ୍ତଥାନ୍ତ୍ୟଜାଃ
ପ୍ରାପ୍ନୁବନ୍ତି ପରାଂ ସିଦ୍ଧିଂ କିଂ ପୁନସ୍ତ୍ୱଂ ଦ୍ୱିଜୋତ୍ତମ ॥
ଶ୍ୱପାକୋଽପି ଚ ମଦ୍‌ଭକ୍ତଃ ସମ୍ୟକ୍ ଶ୍ରଦ୍ଧା ସମନ୍ୱିତଃ ।
ପ୍ରାପ୍ନୋତ୍ୟଭିମତାଂ ସିଦ୍ଧିମନ୍ୟେଷାଂ ତତ୍ର କା କଥା ॥

ଏହାକହି ଭକ୍ତବତ୍ସଳ ଜଗନ୍ନାଥ ମୁନିଙ୍କ ସମ୍ମୁଖରୁ ଅନ୍ତର୍ଦ୍ଧାନ ହୋଇଗଲେ । ତଦନନ୍ତର କଣ୍ଡୁ ମୁନି ସବୁକାମନା ପରିତ୍ୟାଗ କରି, ମମତା ଓ ଅହଙ୍କାର ଦୂରକୁ ନିକ୍ଷେପ କରି ଏବଂ ଇନ୍ଦ୍ରିୟଗଣଙ୍କୁ ସଂଯମ କରି ଏକାଗ୍ର ଚିତ୍ତରେ ବିଜ୍ଞାନାନନ୍ଦ ଘନ ଚେତନ ଭଗବାନଙ୍କ ଧ୍ୟାନରେ ନିମଗ୍ନ ରହିଲେ ଏବଂ ଅନ୍ତକାଳରେ ଦେବଦୁର୍ଲ୍ଲଭ ପରମ ମୋକ୍ଷପଦ ପ୍ରାପ୍ତ ହେଲେ ।

●

# ୭ ଆରଣ୍ୟକ ମୁନି

ତ୍ରେତୟା ଯୁଗରେ ଭଗବାନ ଶ୍ରୀରାମଙ୍କର ଅବତାର ହେବା ପୂର୍ବରୁ ଆରଣ୍ୟକ ମୁନି ଜନ୍ମ ଗ୍ରହଣ କରିଥିଲେ । ପରମାତ୍ମ ତତ୍ତ୍ୱ ଉପଲବ୍ଧି କରି ପରମ ଶାନ୍ତି ଲାଭ କରିବାପାଇଁ ସେ ବାଲ୍ୟକାଳରୁ ଘୋର ତପସ୍ୟା କରିଥିଲେ । ଦୀର୍ଘକାଳ ତପସ୍ୟା କରିବା ପରେ ମଧ୍ୟ ତାଙ୍କୁ ସଫଳତା ମିଳିଲା ନାହିଁ । ତେଣୁ ସେ ଜଣେ ଜ୍ଞାନୀ ମହାପୁରୁଷଙ୍କୁ ସନ୍ଧାନ କରିବାପାଇଁ ବାହାରିଲେ । ସେ ଅନେକ ତୀର୍ଥ ଭ୍ରମଣ କଲେ ଓ ଅନେକ ସାଧୁ ପୁରୁଷଙ୍କୁ ସାକ୍ଷାତ କଲେ । କିନ୍ତୁ ତାଙ୍କର ତୃଷ୍ଣା ମେଣ୍ଟିଲା ନାହିଁ । ଦିନେ ସେ ଦୀର୍ଘଜୀବୀ ଲୋମଶ ଋଷିଙ୍କୁ ଦେଖିବାର ସୁଯୋଗ ପାଇଲେ । ଲୋମଶ ଋଷି ତୀର୍ଥଯାତ୍ରା ଉଦ୍ଦେଶ୍ୟରେ ତପଲୋକରୁ ପୃଥ୍ୱୀଲୋକକୁ ଆଗମନ କରିଥିଲେ । ଲୋମଶ ଋଷିଙ୍କୁ ଦେଖି ସେ ତାଙ୍କ ନିକଟକୁ ଗଲେ ଓ ତାଙ୍କ ପାଦତଳେ ପ୍ରଣାମ କରି ନମ୍ରତା ପୂର୍ବକ କହିଲେ—"ଭଗବନ୍ ! ଦୁର୍ଲ୍ଲଭ ମନୁଷ୍ୟ-ଶରୀର ଲାଭ କରି ଜୀବ କେଉଁ ଉପାୟରେ ଦୁସ୍ତର ସଂସାର ସାଗର ପାରି ହୋଇପାରେ ? ଆପଣ ଦୟାକରି ମୋତେ ଏପରି କୌଣସି ବ୍ରତ, ଦାନ, ଜପ, ଯଜ୍ଞ ଅଥବା ଦେବାରାଧନା ବତାଇ ଦିଅନ୍ତୁ, ଯାହା ଦ୍ୱାରା କି ମୁଁ ଏହି ଭବସାଗରରୁ ସହଜରେ ଉଦ୍ଧାର ପାଇ ପାରିବି ।"

ମହର୍ଷି ଲୋମଶ କହିଲେ—"ଦାନ, ତୀର୍ଥ, ବ୍ରତ, ଯମ, ନିୟମ, ଯଜ୍ଞ, ଯୋଗ, ତପ ଆଦି ଅତି ଉତ୍ତମ କର୍ମ ମଧ୍ୟରେ ପରିଗଣିତ, କିନ୍ତୁ ଏ ସବୁର ଫଳ ହେଉଛି ସ୍ୱର୍ଗଲାଭ । ଯେପର୍ଯ୍ୟନ୍ତ ପୁଣ୍ୟ ରହିଥାଏ, ସେ ପର୍ଯ୍ୟନ୍ତ ପ୍ରାଣୀ ସ୍ୱର୍ଗସୁଖ ଭୋଗ କରେ । କିନ୍ତୁ ପୁଣ୍ୟ ସମାପ୍ତ ହେଲେ ସେ ପୁଣି ପୃଥିବୀରେ ଜନ୍ମଲାଭ କରେ । ଯେଉଁ ଲୋକ ସ୍ୱର୍ଗସୁଖ ପାଇଁ ପୁଣ୍ୟ କର୍ମ ଅନୁଷ୍ଠାନ କରେ, ସେ ଅବଶ୍ୟ ଆଦୌ ଶୁଭ କର୍ମ କରୁ ନଥିବା ମୂଢ଼ ଲୋକଠାରୁ ଉତ୍ତମ, କିନ୍ତୁ ବୁଦ୍ଧିମାନ୍ ନୁହେଁ । ବର୍ତ୍ତମାନ ମୁଁ ତୁମ ନିକଟରେ ଏକ ଉତ୍ତମ ରହସ୍ୟ ଉଦ୍‌ଘାଟନ କରୁଛି । ଭଗବାନ ଶ୍ରୀରାମଙ୍କଠାରୁ ବଳି ବଡ଼ ଦେବତା ଆଉ କେହି ନାହାନ୍ତି । ରାମଙ୍କଠାରୁ ଉତ୍ତମ କୌଣସି ବ୍ରତ ନାହିଁ, ରାମଙ୍କଠାରୁ ଶ୍ରେଷ୍ଠ କୌଣସି ଯୋଗ ନାହିଁ ଏବଂ ରାମଙ୍କଠାରୁ ଉତ୍କୃଷ୍ଟ କୌଣସି ଯଜ୍ଞ ନାହିଁ । ରାମ-ନାମ ଜପ ତଥା ଶ୍ରୀରାମଙ୍କୁ ପୂଜା କଲେ ମନୁଷ୍ୟ ଇହଲୋକ ତଥା ପରଲୋକରେ

ସୁଖୀ ହୋଇଥାଏ । ଶ୍ରୀରାମଙ୍କର ଶରଣାପନ୍ନ ହେଲେ ପ୍ରାଣୀ ଅନାୟାସରେ ସଂସାର-ସାଗର ପାର ହୋଇଯାଏ । ଶ୍ରୀରାମଙ୍କୁ ସ୍ମରଣ ଓ ଧ୍ୟାନ କଲେ ମନୁଷ୍ୟର ସମସ୍ତ କାମନା ପୂର୍ଣ୍ଣ ହୋଇଯାଏ । ଏପରକି ଚଣ୍ଡାଳ ମଧ୍ୟ ପ୍ରେମ ପୂର୍ବକ ଶ୍ରୀରାମଙ୍କୁ ସ୍ମରଣ କଲେ ପରମ ଗତି ପ୍ରାପ୍ତ ହୁଏ । ଶ୍ରୀରାମ ହିଁ ଏକମାତ୍ର ପରମ ଦେବତା, ଶ୍ରୀରାମଙ୍କ ପୂଜା ହିଁ ପ୍ରଧାନ ବ୍ରତ, ରାମ-ନାମ ହିଁ ସର୍ବୋତ୍ତମ ମନ୍ତ୍ର ଏବଂ ଯେଉଁ ଶାସ୍ତ୍ରରେ ରାମଙ୍କ ସ୍ତୁତି ଅଛି, ତାହାହିଁ ଉତ୍ତମ ଶାସ୍ତ୍ର । ଅତଏବ ତୁମେ ମନପ୍ରାଣ ଦେଇ ଶ୍ରୀରାମଙ୍କୁ ପୂଜା ଓ ଧ୍ୟାନ କର ।”

ମହର୍ଷି ଲୋମଶଙ୍କ କଥା ଶୁଣି ଆରଣ୍ୟକ ମୁନି ଅତ୍ୟନ୍ତ ଆନନ୍ଦିତ ହେଲେ । ଭଗବାନଙ୍କର ଦିବ୍ୟ କୃପା ଲାଭ କରିବାପାଇଁ ଆଶାଯୁକ୍ତ ହୋଇ ସେ ପୁଣି ପଚାରିଲେ—“ଭଗବନ୍ ! ଯଦି ମୋ ପ୍ରତି ଆପଣଙ୍କର କରୁଣା ଥାଏ, ତେବେ ଅନୁଗ୍ରହ କରି ମୋ ଆଗରେ ଶ୍ରୀରାମଙ୍କର ସ୍ୱରୂପ ବର୍ଣ୍ଣନା କରନ୍ତୁ, ଯାହା ଦ୍ୱାରା କି ସେହି ସ୍ୱରୂପ ଧ୍ୟାନ କରି ମୁଁ କୃତାର୍ଥ ହୋଇ ପାରିବି ।”

ମହର୍ଷି ଲୋମଶ କହିଲେ—“ହେ ମୁନିବର ! ଭଗବାନ ଶ୍ରୀରାମଚନ୍ଦ୍ରଙ୍କର ଯେଉଁ ସ୍ୱରୂପ ଧ୍ୟାନ କଲେ ତୁମର ମନୋରଥ ନିଶ୍ଚୟ ପୂର୍ଣ୍ଣ ହେବ, ସେହି ସ୍ୱରୂପ ମୁଁ ତୁମ ଆଗରେ ବର୍ଣ୍ଣନା କରୁଛି, ମନଯୋଗ ଦେଇ ତାହା ତୁମେ ଶ୍ରବଣ କର—

‘ରମଣୀୟ ଅଯୋଧ୍ୟା ନଗରୀରେ କଳ୍ପତରୁ ମୂଳରେ ଯେଉଁ ବିଚିତ୍ର ମଣ୍ଡପ ଅଛି, ସେହି ମଣ୍ଡପରେ ଭଗବାନ ଶ୍ରୀରାମଚନ୍ଦ୍ର ବିରାଜମାନ କରୁଛନ୍ତି । ମହାମରକତ ମଣି’ ନୀଳକାନ୍ତ ମଣି ଓ ସ୍ୱର୍ଣ୍ଣ ନିର୍ମିତ ତାଙ୍କର ସିଂହାସନ ଅତ୍ୟନ୍ତ ମନୋହର ଦିଶୁଛି । ସିଂହାସନର ପ୍ରଭା ଚତୁର୍ଦ୍ଦିଗରେ ବିଚ୍ଛୁରିତ ହେଉଛି । ନବଦୂର୍ବାଦଳ ଶ୍ୟାମ ସୌନ୍ଦର୍ଯ୍ୟ-ସାଗର ଦେବେନ୍ଦ୍ର ପୂଜିତ ଭଗବାନ ଶ୍ରୀ ରଘୁନାଥ ସେହି ସିଂହାସନ ଉପରେ ବସି ନିଜର ଅନୁପମ ସୌନ୍ଦର୍ଯ୍ୟ ରାଶି ଦ୍ୱାରା ମୁନିମାନଙ୍କର ମନ ହରଣ କରୁଛନ୍ତି । ତାଙ୍କର ମନୋମୁଗ୍ଧକାରୀ ମୁଖମଣ୍ଡଳ କୋଟି ଚନ୍ଦ୍ରର ରୂପ ସମ୍ଭାରକୁ ଲଜ୍ଜିତ କରୁଛି । ତାଙ୍କର କର୍ଣ୍ଣ ଯୁଗଳରେ ମକରାକୃତି କୁଣ୍ଡଳ ଝଲମଲ ହେଉଛି ଏବଂ ମସ୍ତକରେ କିରୀଟ ଶୋଭା ପାଉଛି । କିରୀଟରେ ଜଡ଼ିତ ମଣିମୁକ୍ତାର ରଙ୍ଗବେରଙ୍ଗର ଦ୍ୟୁତି ଦ୍ୱାରା ସାରା ଶରୀର ରଞ୍ଜିତ ହୋଇଛି । ମସ୍ତକରେ ଘନକୃଷ୍ଣ କୁଞ୍ଚିତ କେଶ ସୁନ୍ଦର ଦିଶୁଛି । ତାଙ୍କ ମୁଖରେ ଦ୍ୟୁତିକରର କିରଣ ପରି ଦନ୍ତପଂକ୍ତି ଶୋଭା ପାଉଛି । ତାଙ୍କର ଓଷ୍ଠ ଓ ଅଧର ବିଦ୍ରୁମ ମଣି ପରି ମନୋହର କାନ୍ତିମୟ ହୋଇଛି । ଯେଉଁ ରସନାରେ ଅନ୍ୟାନ୍ୟ ଶାସ୍ତ୍ର ସହିତ ଋକ୍, ସାମ ଆଦି ଚତୁର୍ବେଦର ନିତ୍ୟସ୍ଫୁର୍ତ୍ତି ଘଟେ, ଜବା କୁସୁମ ପରି ସେହି

ମଧୁମୟୀ ରସନା, ତାଙ୍କ ମୁଖ ମଧ୍ୟରେ ଶୋଭା ପାଉଛି । ତାଙ୍କର ସୁନ୍ଦର ଦେହ କମ୍ବୁପରି କମନୀୟ କଣ୍ଠ ଦ୍ୱାରା ସୁଶୋଭିତ ହୋଇଛି । ତାଙ୍କର କନ୍ଧଯୁଗଳ ସିଂହ-ସ୍କନ୍ଧ ପରି ଉଚ୍ଚା ଓ ମାଂସଳ ଦେଖାଯାଉଛି । ତାଙ୍କର ବାହୁଦ୍ୱୟ ଆଜାନୁଲମ୍ବିତ ହୋଇଛି । ତାଙ୍କ ଅଙ୍ଗୁଳିରେ ଶୋଭା ପାଉଛି ହୀରକ ଖଚିତ ଅମୂଲ୍ୟ ମୁଦି । ତାଙ୍କ ବାହୁର କେୟୁର ଓ କଙ୍କଣ ଅତ୍ୟନ୍ତ ଶୋଭାଯୁକ୍ତ ହୋଇଛି । ତାଙ୍କର ସୁମନୋହର ବିଶାଳ ବକ୍ଷସ୍ଥଳ ଶ୍ରୀଲକ୍ଷ୍ମୀ ଓ ଶ୍ରୀବତ୍ସାଦି ବିଚିତ୍ର ଚିହ୍ନଦ୍ୱାରା ବିଭୂଷିତ ହୋଇଛି । ତାଙ୍କର ଉଦର ତ୍ରିବଳୀଯୁକ୍ତ, ନାଭିଦେଶ ଗମ୍ଭୀର ଏବଂ ମନୋହର କଟିଦେଶ ମଣିମୁକ୍ତା ଖଚିତ କଟିମେଖଳା ଦ୍ୱାରା ସୁଶୋଭିତ । ମୁନିଋଷିମାନଙ୍କର ଧ୍ୟେୟ ତାଙ୍କର ପରମ ମଙ୍ଗଳମୟ ଚରଣଯୁଗଳରେ ବଜ୍ର, ଅଙ୍କୁଶ, ଜବ ଓ ଧ୍ୱଜାଦି ଚିହ୍ନ ଅଙ୍କିତ । ତାଙ୍କ ହସ୍ତରେ ଧନୁର୍ବାଣ ଯେପରି ଶୋଭା ପାଉଛି, ତାଙ୍କ କାନ୍ଧରେ ଅକ୍ଷୟ ତୂଣୀର ସେହିପରି ସୁନ୍ଦର ଦିଶୁଛି । ଭଗବାନ ଶ୍ରୀରାମ ଏହିପରି ଅନୁପମ ସୌନ୍ଦର୍ଯ୍ୟରେ ମଣ୍ଡିତ ହୋଇ ସମସ୍ତଙ୍କୁ ନିଜ ଆଡ଼କୁ ଆକୃଷ୍ଟ କରୁଛନ୍ତି ।"

ଏହିପରି ଭଗବାନଙ୍କର ଧ୍ୟାନ-ସ୍ୱରୂପ ବର୍ଣ୍ଣନା କରି ଲୋମଶ ଋଷି କହିଲେ— "ହେ ମୁନି ! ତୁମେ ଯଦି ଏହିପରି ଶ୍ରୀରାମଙ୍କୁ ଧ୍ୟାନ ଓ ସ୍ମରଣ କରିବ ତେବେ ଅନାୟାସରେ ସଂସାର-ସାଗର ପାରି ହୋଇଯିବ ।"

ଲୋମଶ ମହର୍ଷିଙ୍କ କଥା ଶୁଣି ଆରଣ୍ୟକ ମୁନି ବିନମ୍ର ହୋଇ କହିଲେ— "ଭଗବନ୍ ! ଆପଣ କୃପାକରି ମୋ ଆଗରେ ଶ୍ରୀରାମଙ୍କର ଯେଉଁ ଧ୍ୟାନ ସ୍ୱରୂପ ବର୍ଣ୍ଣନା କଲେ, ତାହା ମୋର ମହାନ୍ କଲ୍ୟାଣ ସାଧନ କରିବ, ଏଥିରେ କୌଣସି ସନ୍ଦେହ ନାହିଁ । ସେଥିପାଇଁ ଆପଣଙ୍କ ନିକଟରେ ମୁଁ ଚିର କୃତଜ୍ଞ । ପରନ୍ତୁ ନାଥ ! ଆପଣ ଦୟାକରି କୁହନ୍ତୁ ସେହି ଶ୍ରୀରାମ କିଏ, ତାଙ୍କର ମୂଳ ସ୍ୱରୂପ କ'ଣ ଏବଂ ସେ କାହିଁକି ଅବତାର ଗ୍ରହଣ କରନ୍ତି ?"

ଲୋମଶ ମହର୍ଷି କହିଲେ—"ହେ ବତ୍ସ ! ପୂର୍ଣ୍ଣ ସନାତନ ପରାତ୍ପର ପରମାତ୍ମା ହିଁ ଶ୍ରୀରାମ ଅଟନ୍ତି । ସମସ୍ତ ବିଶ୍ୱବ୍ରହ୍ମାଣ୍ଡ ତାଙ୍କଠାରୁ ଉତ୍ପତ୍ତି ଲାଭ କରେ । ସେ ସମସ୍ତଙ୍କର ଆଧାର, ସର୍ବବ୍ୟାପୀ, ସମସ୍ତଙ୍କର ସ୍ୱାମୀ, ସମସ୍ତଙ୍କର ସୃଷ୍ଟିକର୍ତ୍ତା, ପାଳନ-କର୍ତ୍ତା ଓ ସଂହାର କର୍ତ୍ତା । ସାରା ବିଶ୍ୱ ତାଙ୍କ ଲୀଳାର ବିଂଶ ମାତ୍ର । ଯୋଗେଶ୍ୱର-ମାନଙ୍କର ମଧ୍ୟ ପରମ ଈଶ୍ୱର ସେହି ଦୟାସାଗର ପ୍ରଭୁ ଜୀବଗଣଙ୍କର ଦୁର୍ଗତି ଦେଖି ସେମାନଙ୍କୁ ଘୋର ନରକରୁ ଉଦ୍ଧାର କରିବାପାଇଁ ଜଗତରେ ନିଜର ଅପୂର୍ବ ଲୀଳା ଓ ଗୁଣ ବିସ୍ତାର କରନ୍ତି । ଏହା ହିଁ ତାଙ୍କର ଅବତାର ଗ୍ରହଣ କରିବାର ମୂଳ କାରଣ ।"

ତା'ପରେ ଲୋମଶ ମହର୍ଷି ସଂକ୍ଷେପରେ ସମ୍ପୂର୍ଣ୍ଣ ରାମ ଚରିତ ବର୍ଣ୍ଣନା କରି କହିଲେ—"ଭଗବାନ ଶ୍ରୀରାମ ଯେତେବେଳେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରିବେ, ସେତେବେଳେ ରାମାନୁଜ ଶତ୍ରୁଘ୍ନ ଯଜ୍ଞାଶ୍ୱ ପଛେ ପଛେ ଆସି ତୁମ ଆଶ୍ରମରେ ଅବସ୍ଥାନ କରିବେ । ତାଙ୍କଠାରୁ ଶ୍ରୀରାମଙ୍କ ବିଷୟ ଅବଗତ ହୋଇ ତୁମେ ଶ୍ରୀରାମଙ୍କୁ ଦର୍ଶନ କରିବାକୁ ଯିବ ଏବଂ ତାଙ୍କର ସାକ୍ଷାତ୍ ଦର୍ଶନ ପାଇ ପରମାର୍ଥ ଲାଭର ଅଧିକାରୀ ହେବ ।"

ମହର୍ଷି ଲୋମଶଙ୍କ ଉପଦେଶ ଅନୁସାରେ ଆରଣ୍ୟକ ମୁନି ରେବା ନଦୀ କୂଳରେ ଏକ କ୍ଷୁଦ୍ର କୁଟୀର ନିର୍ମାଣ କଲେ ଏବଂ ସେଠାରେ ରହି ନିଜର ସବୁ ସମୟ ଶ୍ରୀରାମଙ୍କ ଭଜନ ଓ ଧ୍ୟାନରେ ଅତିବାହିତ କଲେ ।

ଏହିପରି ବହୁକାଳ ଅତୀତ ହେଲା । ଇତି ମଧ୍ୟରେ ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମ ଅଯୋଧ୍ୟାରେ ଅବତାର ଗ୍ରହଣ କରି ଲଙ୍କା ବିଜୟ ଆଦି ଲୀଳା ସମ୍ପନ୍ନ କଲେ ଏବଂ ଏକ ମହାନ୍ ଅଶ୍ୱମେଧ ଯଜ୍ଞର ଆୟୋଜନ କଲେ । ଅଶ୍ୱମେଧ ଯଜ୍ଞର ଅଶ୍ୱ ନାନାସ୍ଥାନ ବୁଲିବୁଲି ରେବା ନଦୀକୂଳରେ ଆସି ପହଞ୍ଚିଲା । ଯଜ୍ଞାଶ୍ୱକୁ ରକ୍ଷା କରୁଥିବା ରାମାନୁଜ ଶତ୍ରୁଘ୍ନ ସେଠାରେ ଆରଣ୍ୟକ ମୁନିଙ୍କର ଆଶ୍ରମ ଦେଖି ନିଜର ସାଥୀ ସୁମନ୍ତଙ୍କୁ ପଚାରିଲେ—"ଏ କାହାର ଆଶ୍ରମ ?" ସୁମନ୍ତଠାରୁ ଉପଯୁକ୍ତ ଉତ୍ତର ପାଇ ଶତ୍ରୁଘ୍ନ କୁଟୀର ନିକଟକୁ ଗମନ କଲେ । ଆରଣ୍ୟକ ମୁନି ଶତ୍ରୁଘ୍ନଙ୍କୁ ଦେଖି ସ୍ୱାଗତ କଲେ ଏବଂ ତାଙ୍କର ପରିଚୟ ପାଇ ଆନନ୍ଦରେ ମଗ୍ନ ହୋଇଗଲେ ! ଆନନ୍ଦମଗ୍ନ ଅବସ୍ଥାରେ ସେ ଚିନ୍ତା କଲେ—"ଆହା ! ଆଜି ମୋର କି ଭାଗ୍ୟ ! ଆଜି ମୋର ଚିରକାଳର କାମନା ପୂର୍ଣ୍ଣ ହେବ । ଚର୍ମ ନେତ୍ରରେ ଆଜି ମୁଁ ଭଗବାନ ଶ୍ରୀରାମଙ୍କର ଦର୍ଶନ ପାଇବି । ମୋର ଜୀବନ ଧାରଣ ଆଜି ସଫଳ ହେବ ।" ଏହା ଚିନ୍ତା କରି ଆରଣ୍ୟକ ମୁନି ଅଯୋଧ୍ୟା ପୁରକୁ ଗମନ କଲେ ।

ଦେବଦୁର୍ଲ୍ଲଭ ପରମ ରମଣୀୟ ଅଯୋଧ୍ୟାନଗରୀରେ ପହଞ୍ଚି ଆରଣ୍ୟକ ମୁନି ସରଯୂ ନଦୀ କୂଳରେ ଯଜ୍ଞପାଇଁ ଉଦ୍ଦିଷ୍ଟ ଯଜ୍ଞଶାଳା ଦେଖିବାକୁ ପାଇଲେ । ସେଠାରେ ସୁରମ୍ୟ ମଣ୍ଡପ ଉପରେ ବିରାଜମାନ କରିଥିଲେ ପଦ୍ମପଲାଶ-ଲୋଚନ ନବ ଦୁର୍ବା-ଦଳ ଶ୍ୟାମ ଭଗବାନ ଶ୍ରୀରାମଚନ୍ଦ୍ର । ଯଜ୍ଞ ଦୀକ୍ଷା ନେଇଥିବାରୁ ନିୟମାନୁସାରେ ସେ ଆଭୂଷଣ ରହିତ ହୋଇଥିଲେ, ମୃଗଚର୍ମ ପରିଧାନ କରିଥିଲେ ଏବଂ ହସ୍ତରେ କୁଶ ଧାରଣ କରିଥିଲେ । ତାଙ୍କର ଦୁଇ ପାଖରେ ଛିଡ଼ା ହୋଇ ଭ୍ରାତୃଭକ୍ତ ଭରତ ଓ ଲକ୍ଷ୍ମଣ ତାଙ୍କୁ ଯଜ୍ଞ କାର୍ଯ୍ୟରେ ସାହାଯ୍ୟ କରୁଥିଲେ । ସେଠାରେ ଦୀନ ଦରିଦ୍ରମାନଙ୍କୁ ନାନାବିଧ ଦ୍ରବ୍ୟ ବିତରଣ କରାଯାଉ ଥିଲା । ଋଷିଗଣ ମନ୍ତ୍ରପାଠ କରୁଥିଲେ ଏବଂ ବିପ୍ରମାନଙ୍କର

ସଞ୍ଚାର ହୋଇଯାଉଥିଲା । ଆରଣ୍ୟକ ମୁନି ଶ୍ରୀରାମଙ୍କର ଅପରୂପ ସୌନ୍ଦର୍ଯ୍ୟ ଦର୍ଶନ କରି ନିଷ୍ପଲକ ନୟନରେ ଛିଡ଼ା ହୋଇଗଲେ । ତାଙ୍କ ଚକ୍ଷୁ ଯୁଗଳରୁ ପ୍ରେମାଶ୍ରୁ ଧାରା ଝରି ଆସିଲା । ସେ ନିଜକୁ କୃତାର୍ଥ ମନେ କଲେ ।

ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମ ଯେତେବେଳେ ପରମ ତେଜସ୍ୱୀ ଆରଣ୍ୟକ ମୁନିଙ୍କୁ ଦେଖିଲେ, ସେତେବେଳେ ସେ ସହସା ଛିଡ଼ା ହୋଇଗଲେ ଏବଂ ମୁନିଙ୍କ ପାଦ ତଳେ ପ୍ରଣାମ କଲେ । ଇନ୍ଦ୍ରାଦି ଦେବଗଣ ଯାହାଙ୍କ ପାଦ ତଳେ ପ୍ରଣାମ କରି ନିଜ ନିଜର ଜୀବନକୁ କୃତାର୍ଥ କରନ୍ତି, ସେହି ପ୍ରଭୁ ଯଥାବିଧିରେ ମୁନିଙ୍କ ପାଦ ବନ୍ଦନା କରି କହିଲେ—"ହେ ମୁନିବର ! ଆପଣଙ୍କ ଆଗମନରେ ଆଜି ମୋର ଜୀବନ ସାର୍ଥକ ହୋଇଗଲା । ବନ୍ଧୁ ବାନ୍ଧବଙ୍କ ସହିତ ମୁଁ ଆଜି ପବିତ୍ର ହୋଇଗଲି । ରାବଣ କୁମ୍ଭକର୍ଣ୍ଣାଦି ବ୍ରାହ୍ମଣ ସନ୍ତାନଙ୍କୁ ବଧ କରି ମୁଁ ଯେଉଁ ଦୋଷରେ ଦୋଷୀ ହୋଇଥିଲି ଆଜି ମୋର ସେହି ଦୋଷ ଦୂର ହୋଇଗଲା ।" ଏହା କହି ଶ୍ରୀରାମ ମୁନିଙ୍କୁ ଉଚ୍ଚ ଆସନରେ ବସାଇ ତାଙ୍କର ପାଦ ଧୋଇ ଦେଲେ ଏବଂ ସେହି ଜଳ ନେଇ ନିଜ ମସ୍ତକରେ ସିଞ୍ଚିବାକୁ ଲାଗିଲେ ।

ଭଗବାନ ଶ୍ରୀରାମଙ୍କ କଥା ଶୁଣି ଓ ତାଙ୍କ ଆଚରଣ ଦେଖି ଆରଣ୍ୟକ ମୁନି ହସି ହସି କହିଲେ—"ହେ ପ୍ରଭୋ ! ଆପଣ ମର୍ଯ୍ୟାଦା ପୁରୁଷୋତ୍ତମ, ଆପଣ ବେଦ ରକ୍ଷକ । ବ୍ରହ୍ମହତ୍ୟା ପାପରୁ ଉଦ୍ଧାର ପାଇବାପାଇଁ ଆପଣ ଯେ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରୁଛନ୍ତି, ତାହା ଜାଣି ମୁଁ ନ ହସି ରହିପାରୁ ନାହିଁ । ବାସ୍ତବିକ୍ ଧନ୍ୟ ଆପଣଙ୍କର ମର୍ଯ୍ୟାଦା ପାଳନ ! ସମସ୍ତ ଶାସ୍ତ୍ରର ବିରୁଦ୍ଧାଚରଣ କରୁଥିବା ମୂର୍ଖ ଓ ମହାପାପୀ ମଧ୍ୟ ଯାହାଙ୍କ ନାମ ସ୍ମରଣ କରି ପାପ-ସମୁଦ୍ର ଲଙ୍ଘନ ପୂର୍ବକ ପରମପଦ ପ୍ରାପ୍ତ ହୁଏ, ସେହି ପ୍ରଭୁ ବ୍ରହ୍ମହତ୍ୟା ପାପରୁ ଉଦ୍ଧାର ପାଇବାପାଇଁ ଅଶ୍ୱମେଧ ଯଜ୍ଞ ଅନୁଷ୍ଠାନ କରିବା କ'ଣ କମ୍ ମଜାର କଥା ! ଭଗବନ୍ ! ଯେ ପର୍ଯ୍ୟନ୍ତ ମନୁଷ୍ୟ ଠିକ୍ ଭାବେ ଆପଣଙ୍କ ନାମ ଉଚ୍ଚାରଣ ନ କରେ, ସେ ପର୍ଯ୍ୟନ୍ତ ତାକୁ ଭୟଭୀତ କରିବାପାଇଁ ବଡ଼ ବଡ଼ ପାପ ଗର୍ଜନ କରି ଉଠନ୍ତି । କିନ୍ତୁ ରାମନାମରୂପୀ ସିଂହ-ଗର୍ଜନ ଶୁଣିବା ମାତ୍ରେ ମହାପାପ ରୂପୀ ହସ୍ତୀଗଣ ଭୟରେ ପଳାୟନ କରନ୍ତି । ହେ ରାମ ! ଆଜି ମୋର ଜୀବନ ଧନ୍ୟ ହୋଇଗଲା । ଆପଣଙ୍କ ଦର୍ଶନ ଲାଭକରି ସଂସାର-ତାପରୁ ମୁଁ ଉଦ୍ଧାର ପାଇଗଲି ।" ଆରଣ୍ୟକ ମୁନିଙ୍କର ଏପରି ଭାବୋଦ୍ଦୀପକ କଥା ଶୁଣି ଭଗବାନ ଶ୍ରୀରାମ ତାଙ୍କ ପାଦ ତଳେ ପ୍ରଣାମ କଲେ । ଶ୍ରୀରାମଙ୍କର ଏହି ଲୀଳା ଦେଖି ଉପସ୍ଥିତ ମୁନିଗଣ ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ମୁନିଗଣଙ୍କୁ ଲକ୍ଷ୍ୟ କରି ଆରଣ୍ୟକ ମୁନି

କହିଲେ—"ହେ ମୁନିଗଣ ! ଆପଣମାନେ ସମସ୍ତେ ମୋର ମହାଭାଗ୍ୟକୁ ଦେଖନ୍ତୁ । ସ୍ୱୟଂ ଭଗବାନ ରାମଚନ୍ଦ୍ର ଯେତେବେଳେ ମୋତେ ପ୍ରଣାମ କରି ସ୍ୱାଗତ କରୁଛନ୍ତି, ସେତେବେଳେ ମୋ'ପରି ଭାଗ୍ୟବାନ ଆଉ କିଏ ଜଗତରେ ଅଛି ? ଶ୍ରୁତିଗଣ ଯାହାଙ୍କର ପାଦପଦ୍ମ ସନ୍ଧାନରେ ନିତ୍ୟ ତତ୍ପର, ସେହି ଭଗବାନ ମୋର ଚରଣୋଦକ ନେଇ ନିଜକୁ ପବିତ୍ର ମନେ କରୁଛନ୍ତି ! ଅହୋ ! ଆଜି ମୋର ଜୀବନ ଧନ୍ୟ ହୋଇଗଲା ।"

ଏହା କହୁ କହୁ ମୁନିଙ୍କର ବ୍ରହ୍ମରନ୍ଧ୍ର ଖୋଲିଗଲା । ସ୍ୱର୍ଗରେ ଦୁନ୍ଦୁଭି ବାଜି ଉଠିଲା । ଦେବତାମାନେ ଆକାଶରୁ ପୁଷ୍ପ ବୃଷ୍ଟି କଲେ । ସେଠାରେ ଉପସ୍ଥିତ ମୁନି ଋଷି-ଗଣ ଆଶ୍ଚର୍ଯ୍ୟ ଚକିତ ହୋଇ ଦେଖିଲେ, ଆରଣ୍ୟକ ମୁନିଙ୍କର ବ୍ରହ୍ମରନ୍ଧ୍ର ଦେଇ ଏକ ବିଚିତ୍ର ତେଜ ନିର୍ଗତ ହେଲା ଏବଂ ତାହା ଶ୍ରୀରାମଙ୍କ ମୁଖ ମଧ୍ୟରେ ପ୍ରବିଷ୍ଟ ହୋଇଗଲା । ଭକ୍ତ ଆରଣ୍ୟକ ମୁନି ନିଜର ଏକନିଷ୍ଠ ସାଧନାର ଉପଯୁକ୍ତ ପୁରସ୍କାର ଲାଭ କଲେ ।



# ଭକ୍ତମୁନି ଉତଙ୍କ

ପୂର୍ବକାଳରେ ସୌବୀର ନାମକ ନଗରରେ ଏକ ସୁନ୍ଦର ଉଦ୍ୟାନ ମଧ୍ୟରେ ଭଗବାନ ବିଷ୍ଣୁଙ୍କର ଗୋଟିଏ ବୃହତ୍ ମନ୍ଦିର ଥିଲା । ସେହି ମନ୍ଦିରରେ ଭଗବାନ ବିଷ୍ଣୁଙ୍କୁ ପ୍ରତ୍ୟହ ପୂଜା କରୁଥିଲେ ମହାତ୍ମା ଉତଙ୍କ । ସେ ଉଦ୍ୟାନ ମଧ୍ୟରେ ଅବସ୍ଥାନ କରୁଥିଲେ ଏବଂ ନିଜର ଚିତ୍ତବୃତ୍ତି ଅନ୍ୟ ସମସ୍ତ କର୍ମରୁ ସଙ୍କୁଚିତ କରି ନିରନ୍ତର ଭଗବାନଙ୍କ ଧ୍ୟାନରେ ନିମଗ୍ନ ରହୁଥିଲେ । ସ୍ୱଭାବତଃ ସେ ଥିଲେ ଶାନ୍ତ, ନିସ୍ପୃହ, ଜ୍ଞାନୀ ଓ ଦୟାଳୁ ।

ଦିନେ କଣିକ ନାମକ ଏକ ବ୍ୟାଧ ଡାକୁ ଅକସ୍ମାତ୍ ମନ୍ଦିର ନିକଟରେ ଆସି ପହଞ୍ଚିଲା । ତାହାର ହୃଦୟ ଥିଲା ଅତ୍ୟନ୍ତ କଠୋର । ପରନିନ୍ଦା, ପରଧନ ହରଣ, ପରପୀଡ଼ନ ଆଦି ତାହାର ଦୈନନ୍ଦିନ କର୍ମ ଥିଲା । ମନ୍ଦିରର ଶିଖର ଉପରେ ଏକ ବୃହତ୍ ସ୍ୱର୍ଣ୍ଣ କଳସ ଦେଖି ସେ ଚିନ୍ତା କଲା—"ଏ ମନ୍ଦିର ଭିତରେ ନିଶ୍ଚୟ ଅନେକ ଧନରତ୍ନ ଗଚ୍ଛିତ ଅଛି ।" ଏହା ଚିନ୍ତାକରି ସେହିଦିନ ରାତିରେ ସେ ମନ୍ଦିର ଭିତରେ ପ୍ରବେଶ କଲା । ସେତେବେଳେ ଉତଙ୍କ ମୁନି ଏକାକୀ ବସି ଭଗବାନଙ୍କୁ ଧ୍ୟାନ କରୁଥିଲେ । କଣିକ ନିଜ କାର୍ଯ୍ୟରେ ମୁନିଙ୍କୁ ଏକ ପ୍ରତିବନ୍ଧକ ବୋଲି ମନେକରି ତାଙ୍କୁ ହତ୍ୟା କରିବାକୁ ମନସ୍ଥ କଲା ଏବଂ ତରବାରି ଧରି ଚିତ୍କାର କରିବାକୁ ଲାଗିଲା । କିନ୍ତୁ ଉତଙ୍କ ଗଭୀର ଧ୍ୟାନରେ ନିମଗ୍ନ ଥିବାରୁ ଡାକୁର ଚିତ୍କାର ଶୁଣି ପାରିଲେ ନାହିଁ । ତେଣୁ ଡାକୁ କଣିକ ତାଙ୍କୁ ଧକ୍କା ମାରି ତଳେ ପକାଇ ଦେଲା ଏବଂ ତାଙ୍କ ଛାତିରେ ପାଦରଖି ଓ କେଶ ଧରି ଶିର କାଟିବାକୁ ପ୍ରସ୍ତୁତ ହେଲା । ଏହି ସମୟରେ ଉତଙ୍କ ମୁନିଙ୍କର ଧ୍ୟାନ ଭଙ୍ଗ ହେବାରୁ ସେ ନେତ୍ର ଖୋଲି କଣିକକୁ ଚାହିଁଲେ । ତାଙ୍କର କରୁଣାର୍ଦ୍ର ନେତ୍ର ଯୁଗଳରୁ ସତେ ଯେପରି ଶାନ୍ତି ଓ ପ୍ରେମର ଧାରା ଝରି ଆସୁଥିଲା । ମୁନିଙ୍କ ନେତ୍ରକୁ ଚାହିଁ କଣିକ ସ୍ତମ୍ଭୀଭୂତ ହୋଇଗଲା । ତା'ହାତରୁ ତରବାରି ଖସି ପଡ଼ିଲା । ସେ ମନ୍ତ୍ରମୁଗ୍ଧ ହୋଇ ନିର୍ନିମେଷ ଦୃଷ୍ଟିରେ ମୁନିଙ୍କୁ ଚାହିଁ ରହିଲା । ମୁନି ଉତଙ୍କ ନମ୍ର ତଥା ସ୍ନେହଯୁକ୍ତ ସ୍ୱରରେ କହିଲେ—"ଭାଇ ! ମୋ ପରି ଜଣେ ନିରପରାଧୀକୁ ମାରିବାକୁ ତୁମେ କାହିଁକି ଉଦ୍ୟତ ହୋଇଛ ? ମୁଁ ତ ତୁମର କିଛି ଅନିଷ୍ଟ କରିନାହିଁ ।

ସଂସାରରେ ଯିଏ ଅପରାଧ କରେ, ସାଧାରଣତଃ ତାକୁ ହିଁ ଦଣ୍ଡ ଦିଆଯାଏ । ଜ୍ଞାତ ସାରରେ ମୁଁ ଅପରାଧ କରିଥିବା ମୋର ତ ମନେ ପଡ଼ୁନାହିଁ । ହେ ସୌମ୍ୟ ! ସଜ୍ଜନ ବ୍ୟକ୍ତି ପାପୀକୁ ମଧ୍ୟ ବିନାଶ କରନ୍ତି ନାହିଁ । ସେ କେବଳ ପାପୀର ପାପକୁ ବିନାଶ କରନ୍ତି । ଯେଉଁ ଲୋକ ମୂର୍ଖ ଓ ବିରୋଧୀ, ତା'ମଧ୍ୟରେ ଗୁଣର ସନ୍ଧାନ ପାଇ ଶାନ୍ତ ଚିତ୍ତ ସାଧୁ ବ୍ୟକ୍ତି ତା'ର ଭୂୟସୀ ପ୍ରଶଂସା କରିଥା'ନ୍ତି । ଅପରାଧୀ ଅପରାଧ କଲେ ମଧ୍ୟ ଯେଉଁ ବ୍ୟକ୍ତି ତାକୁ କ୍ଷମା ପ୍ରଦାନ କରିଥାନ୍ତି ତଥା ତା'ର କଲ୍ୟାଣ ସାଧନ କରିଥାନ୍ତି ତାକୁ ତୁମେ ଭଗବାନଙ୍କର ପ୍ରିୟଭକ୍ତ ଓ ସାଧୁ ପୁରୁଷ ବୋଲି ଜାଣ । ଅନ୍ୟର କଲ୍ୟାଣ ସାଧନ କରୁଥିବା ସନ୍ଥପୁରୁଷ କାହାଦ୍ୱାରା ନିହତ ହେବାକୁ ଯାଉଥିଲେ ମଧ୍ୟ ତା' ସହିତ ଶତ୍ରୁତା ଆଚରଣ କରି ନ ଥା'ନ୍ତି । ଚନ୍ଦନ ବୃକ୍ଷ ନିଜକୁ କାଟୁଥିବା କୁରାଢ଼ୀ ମୁହଁରେ ମଧ୍ୟ ସୁଗନ୍ଧ ଭରି ଦେଇଥାଏ । ବିଧାତାର ବିଧାନ ଏତେ ବିଚିତ୍ର ଯେ ସର୍ବ ସଙ୍ଗ ପରିତ୍ୟାଗ କରି ନିର୍ଲିପ୍ତ ଭାବରେ ରହିଲେ ମଧ୍ୟ ସାଧୁପୁରୁଷଙ୍କୁ ଦୁର୍ଜ୍ଜନ ଲୋକମାନଙ୍କ-ଠାରୁ ନାନାବିଧ କଷ୍ଟ ସହିବାକୁ ପଡ଼ିଥାଏ । ସଂସାରରେ ଦୁର୍ଜ୍ଜନ ଲୋକ ଅନ୍ୟ ଲୋକମାନଙ୍କୁ ନାନା ଭାବରେ ହଇରାଣ କରିଥା'ନ୍ତି । ସରଳ ପ୍ରକୃତିର ସାଧୁପୁରୁଷ ହିଁ ବେଶି ସେମାନଙ୍କର ଶିକାର ହୋଇଥା'ନ୍ତି । କିନ୍ତୁ ଯିଏ ବଳବାନ୍, ତାର କେହି ଅନିଷ୍ଟ କରନ୍ତି ନାହିଁ । କେବଳ ଘାସ ଓ ପାଣିରେ ସନ୍ତୁଷ୍ଟ ରହୁଥିବା ହରିଣ ଓ ମାଛମାନଙ୍କୁ ବ୍ୟାଧ ଓ ଧୀବର ବିନାଶ କରି ଦିଅନ୍ତି । ବାସ୍ତବିକ୍ ମାୟାର ମହିମା ବଡ଼ ବିଚିତ୍ର ! ମନୁଷ୍ୟ, ସ୍ତ୍ରୀ, ପୁତ୍ର ଓ ପରିବାରର ମୋହରେ ପଡ଼ି ଜାଣିଶୁଣି ଅନେକ ଦୁଃଖ ବରଣ କରିଥାଏ । ଯିଏ ନିଜ ପରିବାରର ପାଳନ-ପୋଷଣପାଇଁ ଅନ୍ୟର ସମ୍ପତ୍ତି ଲୁଣ୍ଠନ କରେ, ଦିନେ ତାକୁ ସମସ୍ତଙ୍କୁ ପରିତ୍ୟାଗ କରି ଏକାକୀ ସଂସାରରୁ ବିଦାୟ ନେବାକୁ ପଡ଼େ । ମୋ' ମାତା, ମୋ' ପିତା, ମୋ' ସ୍ତ୍ରୀ, ମୋ' ସ୍ୱାମୀ, ମୋ' ପୁତ୍ର, ମୋ' ଧନ, ମୋ' ଶରୀର—ଏହି ପ୍ରକାର ମମତା ଜୀବକୁ ସର୍ବଦା କ୍ଳେଶ ପ୍ରଦାନ କରିଥାଏ । ମନୁଷ୍ୟ ଯେତେବେଳେ ମୃତ୍ୟୁ ବରଣ କରେ, ସେତେବେଳେ ତା' ସହିତ ପାପ ଓ ପୁଣ୍ୟ ଯାଇଥାଏ । ଯେଉଁ ଲୋକ ପାପରେ ଧନ ସଂଗ୍ରହ କରି ପରିବାରର ପୋଷଣ କରେ, ସେ ପାପର ଫଳ ଭୋଗ କରିବା ସମୟରେ ତା' ପରିବାରର ଲୋକେ ଆସି ତାକୁ କୌଣସି ସହାୟତା ଦେଇ ପାରନ୍ତି ନାହିଁ । ବିଷୟାସକ୍ତ ମନୁଷ୍ୟ 'ମୁଁ ଧନ ରୋଜଗାର କରି ସୁଖି ହେବି' ଏପରି ମିଥ୍ୟା ଆଶାରେ ନାନା ପ୍ରକାର ପାପ କରିଥାଏ ଏବଂ ଯେଉଁ ମନୁଷ୍ୟ ଜୀବନ ପରମ ଦୁର୍ଲ୍ଲଭ ଓ କେବଳ ଭଗବତ୍ ପ୍ରାପ୍ତି ପାଇଁ ଉଦ୍ଦିଷ୍ଟ, ସେହି ଜୀବନକୁ ପାପ କାର୍ଯ୍ୟ କରି ନଷ୍ଟ କରି ଦିଅନ୍ତି । ଭାଇ ! ତୁମେ ଥରେ ବିଚାର କରିଚ, ତୁମେ ଯାହା କରୁଛ, ତାହା କ'ଣ ତୁମର କର୍ତ୍ତବ୍ୟ ? ଏହି ପାପର ଫଳ କେତେ ଭୟାନକ ନ ହେବ ? ଏକଥା କ'ଣ କେବେ ବିଚାର କରିଛ ? ମୋହ ପରିତ୍ୟାଗ କରି ମନୁଷ୍ୟ ଜୀବନକୁ ସଫଳ କରିବାପାଇଁ ଥରେ ଚେଷ୍ଟା କର । ପାପକୁ

ଦୂରକୁ ନିକ୍ଷେପ କରି ଭଗବାନଙ୍କ ଭଜନରେ ଥରେ ମନୋନିବେଶ କର । ତାହା କଲେ ଭଗବାନଙ୍କ କୃପାରେ ତୁମର ପରମ କଲ୍ୟାଣ ହେବ ।"

ସତ୍‌ସଙ୍ଗର ମହିମା ଶତ ମୁଖରେ ମଧ୍ୟ ଅବର୍ଣ୍ଣନୀୟ । ମହାତ୍ମା ଉତଙ୍କଙ୍କ ଉପଦେଶ ତାକୁ କଣିକର ହୃଦୟକୁ ସମ୍ପୂର୍ଣ୍ଣ ଭାବରେ ବଦଳାଇ ଦେଇଥିଲା । ପଶ୍ଚାତ୍ତାପରେ ଅତ୍ୟନ୍ତ ବ୍ୟାକୁଳ ହୋଇ ସେ ମୁନିଙ୍କ ପାଦତଳେ ଲୋଟି ପଡ଼ିଲା । ନିଜର ଘୋର କୁକର୍ମ ସ୍ମରଣ କରି ବିକଳ ସ୍ୱରରେ ସେ କାନ୍ଦିବାକୁ ଲାଗିଲା । କାନ୍ଦି କାନ୍ଦି ସେ କହିଲା—"ହାୟ ! ମୁଁ ବଡ଼ ଅଧମ । ଜୀବନରେ ମୁଁ ଏତେ ପାପ କରିଛି ଯେ କେଉଁ ନରକକୁ ମୋର ଗତି ହେବ ତାହା ଜାଣେନାହିଁ । ହେ ଭଗବନ୍ ! ହେ ଉଦ୍ଧାର କର୍ତ୍ତା ହରି ! ହେ ନାରାୟଣ ! ମୋତେ ଦୟାକର ! ତୁମ ବିନା ମୋ'ପରି ପାପୀକୁ ଆଉ କିଏ ଆଶ୍ରୟ ଦେବ ।"

ଏହିପରି ଆତ୍ମନିନ୍ଦା ଓ ଅନୁତାପ କରି କରି ତଥା ଭଗବାନଙ୍କର ଆଶ୍ରୟ ପ୍ରାର୍ଥୀ ହୋଇ ତାକୁ କଣିକ ଟଳି ପଡ଼ିଲା ଏବଂ ସଙ୍ଗେ ସଙ୍ଗେ ତାର ମୃତ୍ୟୁ ହେଲା । ମହାମତି ଦୟାଳୁ ଉତଙ୍କ ବ୍ୟାଧକୁ ହଠାତ ପଡ଼ିଯିବାର ଦେଖି ଭଗବାନଙ୍କର ଚରଣୋଦକ ଆଣି ତା' ଉପରେ ସିଞ୍ଚିଦେଲେ । ଅନ୍ତକାଳରେ ପାପପାଇଁ ପଶ୍ଚାତ୍ତାପ କରିଥିବାରୁ, ଭଗବାନଙ୍କୁ ସ୍ମରଣ କରିଥିବାରୁ ଏବଂ ମୃତ୍ୟୁ ପରେ ମଧ୍ୟ ଭଗବାନଙ୍କର ଚରଣାମୃତ ସ୍ପର୍ଶ କରିଥିବା ହେତୁ ବ୍ୟାଧ ପାପ ମୁକ୍ତ ହୋଇ ଭଗବାନଙ୍କର ପରମ ଧାମର ଅଧିକାରୀ ହେଲା । ଭଗବାନଙ୍କର ପାର୍ଷଦଗଣ ଦିବ୍ୟ ବିମାନ ଧରି କଣିକ ନିକଟରେ ଉପସ୍ଥିତ ହେଲେ । କଣିକ ଦିବ୍ୟ ଦେହ ଧାରଣ କରି ବିମାନ ଆରୋହଣ ପୂର୍ବକ ପରମ ଧାମକୁ ଯିବାକୁ ପ୍ରସ୍ତୁତ ହେଲା । ଯିବା ସମୟରେ ନମ୍ରତା ପୂର୍ବକ ସେ ଉତଙ୍କ ମୁନିଙ୍କୁ କହିଲା—"ହେ ମୁନିଶ୍ରେଷ୍ଠ ଉତଙ୍କ ! ଆପଣ ମୋର ଗୁରୁ । ଆପଣଙ୍କ ଆଶୀର୍ବାଦ ଲାଭକରି ମୋର ମହାପାତକ ଦୂର ହୋଇଛି । ଆପଣ ମୋତେ ଯେଉଁ ଅମୂଲ୍ୟ ଉପଦେଶ ପ୍ରଦାନ କଲେ, ତାହା ଦ୍ୱାରା ଭଗବାନଙ୍କ ପ୍ରତି ମୋ ମନରେ ଅନୁରାଗ ଜାତ ହୋଇଛି । ମୋର ମୃତ ଶରୀର ଉପରେ ଅନୁଗ୍ରହ କରି ଆପଣ ଯେଉଁ ହରି ଚରଣାମୃତ ସିଞ୍ଚନ କଲେ ତାହାରି ଫଳ ସ୍ୱରୂପ ଆଜି ମୁଁ ପରମଧାମର ଅଧିକାରୀ ହୋଇଛି । ହେ ମହାମୁନି ! ଆପଣଙ୍କ ପରି ଗୁରୁଲାଭ କରି ଥିବାରୁ ମୁଁ ନିଜକୁ କୃତାର୍ଥ ମନେ କରୁଛି । ସେଥିପାଇଁ ଆପଣଙ୍କୁ ବାରମ୍ବାର ନମସ୍କାର । ଆପଣ ମୋର ସମସ୍ତ ଅପରାଧ କ୍ଷମା କରନ୍ତୁ ।" ଏହା କହି କଣିକ ମୁନିଙ୍କ ଉପରେ ଦିବ୍ୟପୁଷ୍ପ ବୃଷ୍ଟି କଲା ଏବଂ ମୁନିଙ୍କୁ ତିନିଥର ପ୍ରଦକ୍ଷିଣା କରି ଭଗବାନ ବିଷ୍ଣୁଙ୍କର ପରମଧାମକୁ ପ୍ରସ୍ଥାନ କଲା ।

ବ୍ୟାଧ ଡାକୁର ଏପରି ସଦ୍‌ଗତି ଦେଖି ତପୋନିଧି ଉତଙ୍କ ଚକିତ ହୋଇଗଲେ । ସେ ଦୁଇହାତ ଯୋଡ଼ି ଭଗବାନଙ୍କ ସ୍ତୁତି କରିବାକୁ ଲାଗିଲେ—"ହେ ନାରାୟଣ ! ହେ ଆଦିଦେବ ! ତୁମେ ହିଁ ଜଗତର ଉତ୍ପତ୍ତି ଏବଂ ପ୍ରଳୟର କାରଣ । ହେ ଶଙ୍ଖ-ଚକ୍ର ଗଦା-ପଦ୍ମଧାରୀ ମହାତ୍ମନ୍ ! ଯିଏ ତୁମକୁ ସ୍ମରଣ କରେ, ତୁମେ ତାର ସମସ୍ତ ଯନ୍ତ୍ରଣା ଦୂର କରିଥାଅ । ତୁମକୁ ବାରମ୍ବାର ନମସ୍କାର । ତୁମ ନାଭି କମଳରୁ ଉତ୍ପନ୍ନ ହୋଇ ବ୍ରହ୍ମା ଚରାଚର ବିଶ୍ୱ ଉତ୍ପତ୍ତି କରନ୍ତି । ତୁମ ତେଜରୁ ଉତ୍ପନ୍ନ ହୋଇ ରୁଦ୍ର ସମସ୍ତ ବିଶ୍ୱକୁ ସଂହାର କରନ୍ତି । ହେ ପଦ୍ମପଲାଶ ଲୋଚନ ! ହେ ବିଶାଳବୀର୍ଯ୍ୟ ! ହେ ଅଖିଳ ବିଶ୍ୱକର୍ତ୍ତା ! ତୁମେ ହିଁ ଆଦିନାଥ ! ତୁମେ ହିଁ ବେଦାନ୍ତ ବେଦ୍ୟ ପରମ ପୁରୁଷ । ତୁମେ ହିଁ ସର୍ବଗତ ଆତ୍ମା । ତୁମେ ହିଁ ବିଷ୍ଣୁ, ଅଚ୍ୟୁତ, ଜ୍ଞାନ ସ୍ୱରୂପ ଓ ଜ୍ଞାନୀ ଶ୍ରେଷ୍ଠ । ତୁମେ ହିଁ କରୁଣାନିଧି ପରମାତ୍ମା । ହେ ପ୍ରଭୁ ! ହେ ଶରଣାଗତ ବତ୍ସଳ ! ଏ ଅଧମର କଲ୍ୟାଣ କର । ତୁମ ଚରଣ କମଳରେ ମୋର ବାରମ୍ବାର ପ୍ରଣାମ ।"

ଏପରି ନାନା ପ୍ରକାର ବେଦ ବିହିତ ତତ୍ତ୍ୱପୂର୍ଣ୍ଣ ବାକ୍ୟରେ ଭଗବାନଙ୍କ ସ୍ତୁତି କରି ଶେଷରେ ଉତଙ୍କ ମୁନି କହିଲେ—

ସଂସାର ସିନ୍ଧୌ ପତିତଂ ଜଡ଼ଂମାଂ
ମୋହାକୁଳଂ କାମଶତେନ ବଦ୍ଧମ୍ ।
ବିଜ୍ଞାନ ଭେଦଭ୍ରମିତାତ୍ମ ବୁଦ୍ଧିଂ
ତ୍ରାହ୍ୟସ୍ୱ ବିଷ୍ଣୋ ସତତଂ ନମସ୍ତେ ॥
ଲଜ୍ଜା ବିହୀନଂ ଚ ଦୟାବିହୀନଂ
ତୁଚ୍ଛଂ ପରଦ୍ରବ୍ୟ ପରାୟଣଂ ମାମ୍ ।
ମମତ୍ୱ ପାଶାନ୍ତର ବଞ୍ଚିତଂ ଚ
ତ୍ରାହ୍ୟସ୍ୱ ବିଷ୍ଣୋ ସତତଂ ନମସ୍ତେ ॥
ଅକୀର୍ତ୍ତି ଭାଜଂ ପିଶୁନଂ କୃତଘ୍ନଂ
ସଦାଶୁଚିଂ ପାପରତଂ ପ୍ରମନ୍ୟୁମ୍ ।
ଦୟାମ୍ବୁଧେ ତ୍ରାହି ଭୟାକୁଳଂ ମାଂ
ପୁନଃ ପୁନସ୍ତ୍ୱାଂ ଶରଣଂ ପ୍ରପଦ୍ୟେ ॥

(ବୃହନ୍ନାରଦୀୟ ପୁରାଣ, ୩୮।୩୬—୩୮)

"ହେ ଭଗବନ୍ ! ସଂସାର ସମୁଦ୍ରରେ ପଡ଼ିଥିବା, ମୋହରେ ବ୍ୟାକୁଳ ହେଉଥିବା, ଶତ ଶତ କାମନାରେ ବନ୍ଧା ହୋଇଥିବା ଏବଂ ନାନା ପ୍ରକାର ଜ୍ଞାନ ଦ୍ୱାରା

ଭ୍ରାନ୍ତ ବୁଦ୍ଧି ହୋଇଥିବା ମୋ ପରି ମୂର୍ଖକୁ ପରିତ୍ରାଣ କର; ତୁମକୁ ବାରମ୍ବାର ନମସ୍କାର । ହେ ବିଷ୍ଣୋ ! ଲଜ୍ଜାହୀନ, ନିର୍ଦ୍ଦୟ, ପରଦ୍ରବ୍ୟ ପରାୟଣ ଏବଂ ମମତା-ପାଶରେ ବନ୍ଧା ହୋଇଥିବା ମୋ ପରି ନୀଚକୁ ପରିତ୍ରାଣ କର, ତୁମକୁ ବାରମ୍ବାର ନମସ୍କାର । ହେ ଦୟାସାଗର ! ଅକୀର୍ତ୍ତିଭାଜନ, ଚୁଗୁଲିଖୋର କୃତଘ୍ନ, ସଦା ଅପବିତ୍ର, ପାପରତ ଏବଂ ଭୟରେ ପୀଡ଼ିତ ମୋ ପରି ଦୀନକୁ ପରିତ୍ରାଣ କର; ମୁଁ ବାରମ୍ବାର ତୁମର ଶରଣ ପଶୁଛି ।”

ଭକ୍ତମୁନି ଉତଙ୍କଙ୍କର ଏପରି ବିନୟପୂର୍ଣ୍ଣ ସ୍ତୁତିରେ ପ୍ରସନ୍ନ ହୋଇ ଭଗବାନ ବିଷ୍ଣୁ ତାଙ୍କ ସମ୍ମୁଖରେ ସହସା ପ୍ରକଟ ହେଲେ । ଦ୍ୱିଜବର ଉତଙ୍କ ଦେଖିଲେ, ଭଗବାନ ବିଷ୍ଣୁ ଏକ ଦିବ୍ୟ ଜ୍ୟୋତି ମଧ୍ୟରେ ପ୍ରକଟ ହୋଇଛନ୍ତି । ଅତସୀ କୁସୁମ ପରି ତାଙ୍କ ଶରୀର ସୁନ୍ଦର ନୀଳବର୍ଣ୍ଣ ଦିଶୁଛି । ତାଙ୍କ ମସ୍ତକରେ ମନୋହର କିରୀଟ, କର୍ଣ୍ଣରେ ମକରକୁଣ୍ଡଳ, ଗଳାରେ ରତ୍ନହାର, ବକ୍ଷସ୍ଥଳରେ କୌସ୍ତୁଭ ମଣି ଓ ଶ୍ରୀବତ୍ସ ଚିହ୍ନ, ନାସିକାର ଅଗ୍ରଭାଗରେ ଦିବ୍ୟ ମୋତି, କଟି ଦେଶରେ ପୀତ ବସନ ଏବଂ ପାଦରେ ନୂପୁର ଅତ୍ୟନ୍ତ ଶୋଭା ପାଉଛି । ସେ ସ୍ୱର୍ଣ୍ଣ ଯଜ୍ଞୋପବୀତ ଧାରଣ କରିଛନ୍ତି । ତାଙ୍କର ମନୋହର ଓ ମହାନ୍ ପ୍ରକାଶମୟ ପାଦପଦ୍ମ ତୁଳସୀ ଜଳ ଦ୍ୱାରା ଚର୍ଚ୍ଚିତ ହୋଇଛି । ସେ ମନ୍ଦ ମନ୍ଦ ହାସ୍ୟ ପ୍ରକାଶ କରୁଛନ୍ତି । ତାଙ୍କ ନେତ୍ର ଯୁଗଳରେ ଆନନ୍ଦ, ସ୍ନେହ ଓ ଶାନ୍ତିର ସୁଧାମୟୀ ଧାରା ଲହଡ଼ି ଭାଙ୍ଗୁଛି । ଏହିପରି ଗରୁଡ଼ଧ୍ୱଜ ଭଗବାନଙ୍କୁ ସାକ୍ଷାତ ଦର୍ଶନ କରି ମୁନି ଉତଙ୍କ ତାଙ୍କ ପାଦପଦ୍ମରେ ଲୋଟି ପଡ଼ିଲେ ଏବଂ ଆନନ୍ଦାଶ୍ରୁର ପବିତ୍ର ଧାରାରେ ସେହି ପାଦପଦ୍ମକୁ ଧୋଇବାକୁ ଲାଗିଲେ । ତାଙ୍କର କଣ୍ଠ ଗଦ୍‌ଗଦ୍ ହୋଇଗଲା । କେତେ ସମୟ ପରେ ସେ କେବଳ, “ହେ ମୁରାରି ! ରକ୍ଷା କର, ରକ୍ଷା କର” ଏତିକି କହିବାକୁ ସମର୍ଥ ହେଲେ ।

କୃପାସିନ୍ଧୁ ଭଗବାନ ଉତଙ୍କଙ୍କୁ ତଳୁ ଉଠାଇ ଆଲିଙ୍ଗନ କଲେ ଏବଂ ମଧୁର ବାକ୍ୟରେ କହିଲେ—“ହେ ବତ୍ସ ! ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇଛି । ଆଉ ତୁମର ଅସାଧ୍ୟ ବୋଲି କିଛି ନାହିଁ । ତୁମେ ମୋ'ଠାରୁ ମନ ଇଚ୍ଛା ବର ମାଗିନିଅ ।”

ଉତଙ୍କ ମୁନି ଭଗବାନଙ୍କୁ ପୁନଶ୍ଚ ପ୍ରଣାମ କରି କହିଲେ—

କିଂ ମାଂ ମୋହୟସୀଶ ତ୍ୱଂ କମନୈ୍ୟର୍ଦେବ ମେ ବରୈଃ ।
ତ୍ୱୟି ଭକ୍ତିର୍ଦୃଢ଼ା ମେଽସ୍ତୁ ଜନ୍ମ ଜନ୍ମାନ୍ତରେଷ୍ୱପି ।।
କୀଟେଷୁ ପକ୍ଷିଷୁ ମୃଗେଷୁ ସରୀସୃପେଷୁ

ରକ୍ଷଃ ପିଶାଚ ମନୁଜେଷ୍ୱପି ଯତ୍ର ତତ୍ର ।
ଜାତସ୍ୟ ମେ ଭବତୁ କେଶବ ତେ ପ୍ରସାଦାତ୍
ତ୍ୱୟ୍ୟେବ ଭକ୍ତିର ଚଳାବ୍ୟଭିଚାରିଣୀ ଚ ॥

(ବୃହନ୍ନାରଦୀୟ ପୁରାଣ, ୩୩।୪୮-୪୯)

"ହେ ପ୍ରଭୋ ! ମୋତେ କାହିଁକି ଆଉ ମୋହରେ ପକାଉଛ ? ମୋର ଅନ୍ୟ କୌଣସି ବରର ଆବଶ୍ୟକତା ନାହିଁ । ଜନ୍ମ ଜନ୍ମାନ୍ତରରେ ତୁମ ପାଦ ପଦ୍ମରେ ମୋର ଅଟଳ ତଥା ଅଚଳ ଭକ୍ତି ରହୁ, ଏହାହିଁ ମୋର ପ୍ରାର୍ଥନା । ହେ କେଶବ ! ମୋତେ ଏହି କୃପା କର, ଯେ—ପରକ କୀଟ-ପତଙ୍ଗ, ପଶୁପକ୍ଷୀ, ସର୍ପ-ଅଜଗର, ରାକ୍ଷସ-ପିଶାଚ ଅଥବା ମନୁଷ୍ୟ—ଯେ କୌଣସି ଯୋନିରେ ଜନ୍ମ ଗ୍ରହଣ କଲେ ମଧ୍ୟ ମୋ ମଧ୍ୟରେ ସଦା ସର୍ବଦା ଅଚଳ ତଥା ଅବ୍ୟଭିଚାରିଣୀ ଭକ୍ତି ଉଦୟ ହେଉ ।"

ଭଗବାନ ବିଷ୍ଣୁ ଉତଙ୍କଙ୍କର ଏହି ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ "ତଥାସ୍ତୁ" ଉଚ୍ଚାରଣ ପୂର୍ବକ ନିଜର ଦିବ୍ୟ ଶଙ୍ଖ ମୁନିଙ୍କ ଅଙ୍ଗରେ ସ୍ପର୍ଶ କରାଇଲେ ଏବଂ ତାଙ୍କୁ ଦୁର୍ଲ୍ଲଭ ଦିବ୍ୟଜ୍ଞାନ ପ୍ରଦାନ କଲେ । ତଦନନ୍ତର ମୁନିଙ୍କ ମସ୍ତକରେ କର ସ୍ଥାପନ କରି ସେଠାରୁ ସେ ଅନ୍ତର୍ଦ୍ଧାନ ହୋଇଗଲେ ।

ଉତଙ୍କ ମୁନି ଭଗବାନଙ୍କର ଦିବ୍ୟ ସ୍ପର୍ଶ ଲାଭକରି କୃତାର୍ଥ ହେଲେ ଏବଂ ଅବଶିଷ୍ଟ ଜୀବନ ଭଗବାନଙ୍କ ସେବାରେ ମନୋନିବେଶ କରି ଅନ୍ତକାଳରେ ପରମ-ଧାମକୁ ପ୍ରସ୍ଥାନ କଲେ ।



# ମହର୍ଷି ଦଧୀଚ

ବ୍ରହ୍ମପୁତ୍ର ଅଥବା ଋଷିଙ୍କର ପୁତ୍ରଭାବରେ ମହର୍ଷି ଦଧୀଚ ସୁପ୍ରସିଦ୍ଧ । ତାଙ୍କର ଅନ୍ୟନାମ ଅଶ୍ବଶିର । ତାଙ୍କର ଅଶ୍ବଶିର ନାମକରଣ ବିଷୟରେ ଗୋଟିଏ ମନୋରମ ଆଖ୍ୟାୟିକା ପରିଦୃଷ୍ଟ ହୁଏ ।

ଥରେ ସ୍ୱର୍ଗ ବୈଦ୍ୟ ଅଶ୍ବିନୀ କୁମାରଦ୍ୱୟ ବ୍ରହ୍ମବିଦ୍ୟା ଲାଭ କରିବା ଉଦ୍ଦେଶ୍ୟରେ ଉପଯୁକ୍ତ ଗୁରୁ ଅନ୍ୱେଷଣରେ ବାହାରିଲେ । ଏକଥା ଜାଣି ଦେବରାଜ ଇନ୍ଦ୍ର ପ୍ରତିଜ୍ଞା କଲେ—"ଯିଏ ଅଶ୍ବିନୀ କୁମାରଙ୍କୁ ବ୍ରହ୍ମବିଦ୍ୟା ପ୍ରଦାନ କରିବ, ମୁଁ ତାହାର ମସ୍ତକ ଛିନ୍ନ କରିଦେବି" ବୈଦ୍ୟ ହୋଇଥିବାରୁ ଦେବରାଜ ଇନ୍ଦ୍ର ଅଶ୍ବିନୀ କୁମାରଙ୍କୁ ହୀନ ଦୃଷ୍ଟିରେ ଦେଖୁଥିଲେ । ତେଣୁ ଅଶ୍ବିନୀ କୁମାରଦ୍ୱୟ ବ୍ରହ୍ମବିଦ୍ୟା ଲାଭ କରିବାକୁ ସେ ପସନ୍ଦ କରୁ ନଥିଲେ । ଇନ୍ଦ୍ରଙ୍କର ପ୍ରତିଜ୍ଞା ଶୁଣି ବଡ଼ ବଡ଼ ମୁନି ଋଷିମାନେ ମଧ୍ୟ ଅଶ୍ବିନୀକୁମାରଙ୍କୁ ବ୍ରହ୍ମବିଦ୍ୟା ପ୍ରଦାନ କରିବାକୁ ମନା କରିଦେଲେ । ସବୁଠାରୁ ନିରାଶ ହୋଇ ଶେଷରେ ଅଶ୍ବିନୀ କୁମାରଦ୍ୱୟ ମହର୍ଷି ଦଧୀଚଙ୍କ ନିକଟରେ ପହଞ୍ଚିଲେ । ଜଣେ ଜିଜ୍ଞାସୁ ଅଧିକାରୀର ପ୍ରାର୍ଥନାକୁ ଉପେକ୍ଷା କରି ଲୋଭ କମ୍ବା ଭୟ ହେତୁ ତାହାକୁ ବ୍ରହ୍ମବିଦ୍ୟା ପ୍ରଦାନ ନ କରିବା ପ୍ରକୃତରେ ଧର୍ମ ନୁହେଁ—ଏହା ଚିନ୍ତା କରି ମହର୍ଷି ଦଧୀଚ ଅଶ୍ବିନୀ କୁମାରଙ୍କୁ ବ୍ରହ୍ମବିଦ୍ୟା ପ୍ରଦାନ କରିବାକୁ ସ୍ୱୀକାର କଲେ । ଅଶ୍ବିନୀ କୁମାରଦ୍ୱୟ ମହର୍ଷିଙ୍କ ସ୍ୱୀକୃତି ଲାଭକରି ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ସେମାନେ ମହର୍ଷିଙ୍କ ମସ୍ତକ କାଟି ଔଷଧ ଦ୍ୱାରା ତାହାକୁ ସୁରକ୍ଷିତ ଭାବରେ ଅଲଗା ରଖିଦେଲେ ଏବଂ ମହର୍ଷିଙ୍କ ବେକରେ ଗୋଟିଏ ଘୋଡ଼ାମୁଣ୍ଡ ଆଣି ଯୋଡ଼ିଦେଲେ । ମହର୍ଷି ଦଧୀଚ ସେହି ଘୋଡ଼ାମୁଣ୍ଡ ସାହାଯ୍ୟରେ ଅଶ୍ବିନୀ କୁମାରଙ୍କୁ ବ୍ରହ୍ମବିଦ୍ୟା ପ୍ରଦାନ କଲେ । ଏହା ଦେଖି ଦେବରାଜ ଇନ୍ଦ୍ର କ୍ରୁଦ୍ଧ ହୋଇ ମହର୍ଷିଙ୍କର ସେହି ଘୋଡ଼ା ମୁଣ୍ଡକୁ କାଟି ପକାଇଲେ । ସଙ୍ଗେ ସଙ୍ଗେ ଅଶ୍ବିନୀ କୁମାରଦ୍ୱୟ ମହର୍ଷିଙ୍କର ପ୍ରଥମ ମୁଣ୍ଡକୁ ଆଣି ତାଙ୍କ ବେକରେ ଯୋଡ଼ିଦେଲେ ଏବଂ ଔଷଧ ପ୍ରୟୋଗ କରି ତାଙ୍କୁ ବଞ୍ଚାଇ ଦେଲେ । ଘୋଡ଼ା ମୁଣ୍ଡରେ ବ୍ରହ୍ମବିଦ୍ୟା ପ୍ରଦାନ କରିଥିବାରୁ ସେହିଦିନଠାରୁ ମହର୍ଷିଙ୍କୁ ଅଶ୍ବଶିର କୁହାଗଲା ।

ମହର୍ଷି ଦଧୀଚିଙ୍କ ଜୀବନର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଘଟଣା ହେଉଛି, ବିଶ୍ୱର ହିତପାଇଁ ତାଙ୍କର ଅସ୍ଥି ପ୍ରଦାନ । ଥରେ ବୃତ୍ରାସୁର ନାମରେ ଜଣେ ରାକ୍ଷସ ତ୍ୱଷ୍ଟାଙ୍କର ଅଗ୍ନିକୁଣ୍ଡରୁ ଉତ୍ପନ୍ନ ହୋଇ ପୃଥିବୀ ତଥା ସ୍ୱର୍ଗରେ ନିଜର ଆଧିପତ୍ୟ ବିସ୍ତାର କଲା । ଇନ୍ଦ୍ର ସମେତ ଅନ୍ୟ ଦେବତାଗଣ ତାକୁ ଯେଉଁ ସବୁ ଅସ୍ତ୍ରଶସ୍ତ୍ରରେ ଆଘାତ କଲେ ସେହି ସବୁ ଅସ୍ତ୍ରଶସ୍ତ୍ରକୁ ସେ ଗିଳି ପକାଇଲା । ଫଳରେ ଦେବତାଗଣ ନିରସ୍ତ୍ର ହୋଇ ଛନ୍ଦଭଙ୍ଗ ହେଲେ । ବୃତ୍ରାସୁରକୁ ପରାସ୍ତ କରିବାପାଇଁ ଅନ୍ୟ କୌଣସି ଉପାୟ ନ ଦେଖି ଶେଷରେ ସେମାନେ ବ୍ରହ୍ମାଙ୍କର ଶରଣାପନ୍ନ ହେଲେ । ଦେବତାମାନଙ୍କୁ ରକ୍ଷା କରିବାପାଇଁ ବ୍ରହ୍ମା ଭଗବାନ ବିଷ୍ଣୁଙ୍କୁ ସ୍ତୁତି କରିବାକୁ ଲାଗିଲେ । ବ୍ରହ୍ମାଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ଭଗବାନ ବିଷ୍ଣୁ ଦେବତାଗଣଙ୍କ ସମ୍ମୁଖରେ ପ୍ରକଟ ହୋଇ କହିଲେ—"ଉଗ୍ର ତପସ୍ୟା ପ୍ରଭାବରେ ମହର୍ଷି ଦଧୀଚିଙ୍କ ଅସ୍ଥି ଦୃଢ଼ ଓ ତେଜସ୍ୱିନୀ ହୋଇଅଛି । ମହର୍ଷିଙ୍କ ଅସ୍ଥିରେ ବଜ୍ର ତିଆରି ହେଲେ ସେହି ବଜ୍ର ପ୍ରୟୋଗ କରି ବୃତ୍ରାସୁରକୁ ବଧ କରିବାକୁ ଦେବରାଜ ଇନ୍ଦ୍ର ସମର୍ଥ ହେବେ । କିନ୍ତୁ ମହର୍ଷି ଦଧୀଚି ମୋର ପରମ ଭକ୍ତ । ତେଣୁ ବଳପୂର୍ବକ ତାଙ୍କୁ ହତ୍ୟା କରି ତାଙ୍କ ଅସ୍ଥି ସଂଗ୍ରହ କରିବା ଅସମ୍ଭବ । ତୁମ୍ଭେମାନେ ତାଙ୍କ ନିକଟକୁ ଯାଇ ବିନମ୍ର ପୂର୍ବକ ତାଙ୍କ ଅସ୍ଥି ଯାଚଞ୍ଚା କର । ଯାଚଞ୍ଚା କଲେ ସେ ତାଙ୍କ ଶରୀର ପ୍ରଦାନ କରିବେ ।"

ଭଗବାନଙ୍କ ନିର୍ଦ୍ଦେଶ ମାନି ଇନ୍ଦ୍ର ସମେତ ଦେବତାଗଣ, ସାଭ୍ରମତୀ ଓ ଚନ୍ଦ୍ରଭାଗାର ସଙ୍ଗମ ସ୍ଥଳରେ ଥିବା ଦଧୀଚି ଋଷିଙ୍କ ଆଶ୍ରମରେ ଯାଇ ଉପସ୍ଥିତ ହେଲେ । ସେମାନେ ନାନାପ୍ରକାର ସ୍ତୁତି କରି ଋଷିଙ୍କୁ ସନ୍ତୁଷ୍ଟ କଲେ ଏବଂ ତାଙ୍କ ଅସ୍ଥି ଭିକ୍ଷା କଲେ । ଦଧୀଚି କହିଲେ—"ସମସ୍ତ ତୀର୍ଥ ଭ୍ରମଣ କରିବା ମୋର ଇଚ୍ଛା ଥିଲା । ତେଣୁ ତୀର୍ଥଯାତ୍ରା ସମାପ୍ତ କରି ମୁଁ ମୋର ଅସ୍ଥି ପ୍ରଦାନ କରିବି ।"

ଏକଥା ଶୁଣି ଇନ୍ଦ୍ର ନୈମିଷାରଣ୍ୟରେ ତୀର୍ଥ ସମୂହକୁ ଆବାହନ କଲେ । ଏକ ସ୍ଥାନରେ ସମସ୍ତ ତୀର୍ଥ ଏକତ୍ର ହେବାର ଦେଖି ମହର୍ଷି ଦଧୀଚି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ତୀର୍ଥ ଜଳରେ ସ୍ନାନ କରି ଯୋଗାସନରେ ବସିଲେ । ତାଙ୍କର ଅନ୍ତରାତ୍ମା ପରମାତ୍ମାଙ୍କ ମଧ୍ୟରେ ବିଲୀନ ହୋଇଗଲା । ଯେଉଁ ଇନ୍ଦ୍ର ମହର୍ଷିଙ୍କ ଉପରେ କ୍ରୋଧ ପ୍ରକାଶ କରି ତାଙ୍କର ଘୋଡ଼ା ମୁଣ୍ଡକୁ କାଟି ପକାଇଥିଲେ ସେହି ଇନ୍ଦ୍ରଙ୍କର ହିତ ସାଧନପାଇଁ ସେ ନିଜର ଅସ୍ଥି ପ୍ରଦାନ କରିବାକୁ ସଙ୍କୋଚ କରି ନ ଥିଲେ । ପ୍ରକୃତରେ ଦଧୀଚିଙ୍କର କୌଣସି ଦେହାସକ୍ତି ନଥିଲା । ନଶ୍ୱର ଶରୀରର ପତନ ହେବା ପୂର୍ବରୁ ତାହାକୁ ଅନ୍ୟର ଉପକାରରେ ଲଗାଇ ପାରିବାହିଁ ପରମ ପୁରୁଷାର୍ଥ—ଏହାହିଁ ଥିଲା

ଦଧୀଚିଙ୍କର ଧାରଣା । ସେଥିପାଇଁ ସେ ଅସ୍ଥି ପ୍ରଦାନ କରିବାକୁ ସ୍ୱୀକୃତ ଦେଇ ଯୋଗାସନରେ ବସିଥିଲେ । ଶରୀର ପ୍ରତି ତାଙ୍କର ଦୃଷ୍ଟି ନ ଥିବାରୁ ତାଙ୍କ ଅନ୍ତରାତ୍ମା ପରମାତ୍ମାଙ୍କ ମଧ୍ୟରେ ବିଲୀନ ହୋଇ ଶାଶ୍ୱତ ଶାନ୍ତି ଉପଲବ୍ଧି କରୁଥିଲା । ଏହି ସମୟରେ ଇନ୍ଦ୍ର ତାଙ୍କ ଅସ୍ଥି ନେଇ ବିଶ୍ୱକର୍ମା ଦ୍ୱାରା ବଜ୍ର ନିର୍ମାଣ କରିଥିଲେ ଏବଂ ସେହି ବଜ୍ର ପ୍ରୟୋଗ କରି ବୃତ୍ରାସୁରକୁ ବଧ କରିଥିଲେ । ଏହିପରି ଜଣେ ତପସ୍ୱୀଙ୍କର ଅନୁପମ ତ୍ୟାଗ ଦ୍ୱାରା ପୃଥିବୀ ଲୋକ ଓ ସ୍ୱର୍ଗ ଲୋକ ରକ୍ଷା ପାଇଥିଲା ।

# ସୁତୀକ୍ଷ୍ଣ ମୁନି

ସୁତୀକ୍ଷ୍ଣ ମୁନି ଥିଲେ ମହର୍ଷି ଅଗସ୍ତ୍ୟଙ୍କର ଶିଷ୍ୟ । ଅଗସ୍ତ୍ୟଙ୍କ ନିକଟରେ ରହି ସେ ବିଦ୍ୟାଧ୍ୟୟନ କରୁଥିଲେ । ବିଦ୍ୟାଧ୍ୟୟନ ସମାପ୍ତ ହେବାପରେ ସୁତୀକ୍ଷ୍ଣ ମୁନି ଉପଯୁକ୍ତ ଗୁରୁ ଦକ୍ଷିଣା ଦେଇ ବିଦାୟ ନେବାକୁ ଗୁରୁଙ୍କର ଅନୁମତି ଭିକ୍ଷା କଲେ । ଅଗସ୍ତ୍ୟ କହିଲେ—"ଗୁରୁଙ୍କର ସେବା ହିଁ ସବୁଠାରୁ ବଳି ବଡ଼ ଗୁରୁ ଦକ୍ଷିଣା । ଅଧ୍ୟୟନ କାଳରେ ତୁମେ ମୋର ଯେଉଁ ସେବା କରିଛ ସେଥିରେ ମୁଁ ଅତ୍ୟନ୍ତ ପ୍ରୀତ ହୋଇଛି । ତେଣୁ ତୁମର ଆଉ କୌଣସି ଦକ୍ଷିଣା ଦେବା ଦରକାର ନାହିଁ ।" କିନ୍ତୁ ସୁତୀକ୍ଷ୍ଣ ମୁନି ଏ କଥାରେ ରାଜି ହେଲେ ନାହିଁ । ସେ କିଛି ଗୁରୁ ଦକ୍ଷିଣା ଦେବାକୁ ବାରମ୍ବାର ଆଗ୍ରହ ପ୍ରକାଶ କଲେ । ଶେଷରେ ମହର୍ଷି ଅଗସ୍ତ୍ୟ ଶିଷ୍ୟର ଏକାନ୍ତ ଆଗ୍ରହକୁ ଏଡ଼ି ନପାରି କହିଲେ—"ଯଦି ତୁମେ ମୋତେ ଗୁରୁଦକ୍ଷିଣା ଦେବାକୁ ଚାହୁଁଛ, ତେବେ ମୋତେ ଭଗବାନଙ୍କର ଦର୍ଶନ କରାଇ ଦିଅ । ତାହା ହିଁ ହେବ ତୁମର ସର୍ବଶ୍ରେଷ୍ଠ ଗୁରୁଦକ୍ଷିଣା ।"

ଗୁରୁଙ୍କ ଆଜ୍ଞାକୁ ସ୍ୱୀକାର କରି ସୁତୀକ୍ଷ୍ଣ ମୁନି ଅଗସ୍ତ୍ୟଙ୍କଠାରୁ ବିଦାୟ ନେଲେ ଏବଂ ଦଣ୍ଡକାରଣ୍ୟ ଭିତରେ ନିଜର ଆଶ୍ରମ ପ୍ରତିଷ୍ଠା କଲେ । ଗୁରୁଙ୍କ ମୁଖରୁ ସେ ଶୁଣିଥିଲେ ଯେ ଭଗବାନ ଶ୍ରୀରାମ ଅଯୋଧ୍ୟାରେ ଅବତାର ଗ୍ରହଣ କରିଛନ୍ତି । ରାବଣକୁ ବଧ କରିବାପାଇଁ ଦଣ୍ଡକାରଣ୍ୟ ମଧ୍ୟ ଦେଇ ସେ ଲଙ୍କା ଗମନ କରିବେ । ତେଣୁ ଭଗବାନଙ୍କ ଆଗମନକୁ ପ୍ରତୀକ୍ଷା କରି ସୁତୀକ୍ଷ୍ଣ ମୁନି ଦଣ୍ଡକାରଣ୍ୟ ଭିତରେ ନିଜର ଆଶ୍ରମ ପ୍ରତିଷ୍ଠା କରିଥିଲେ । ସେଠାରେ ଅବସ୍ଥାନ କାଳରେ ସେ ତପସ୍ୟା ଓ ଭଗବାନଙ୍କର ପୁଣ୍ୟ ନାମ ଭଜନ କରୁଥିଲେ ।

ଯଥା ସମୟରେ ଭଗବାନ ଶ୍ରୀରାମ ପିତୃ ଆଜ୍ଞା ପାଳନ କରି ବନବାସୀ ହେଲେ । ଚିତ୍ରକୂଟ ପର୍ବତରେ ବିରାଧକୁ ସଦ୍‌ଗତି ଦେଇ ସେ ଶରଭଙ୍ଗ ଋଷିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ସେଠାରୁ ବିଦାୟ ନେଇ ସେ ଦଣ୍ଡକାରଣ୍ୟ ଭିତରେ ପ୍ରବେଶ କଲେ । ଏହି ସମୟରେ ସୁତୀକ୍ଷ୍ଣ ମୁନି ଶ୍ରୀରାମଙ୍କର ଆଗମନ ବାର୍ତ୍ତା ପାଇ ପାରିଲେ । ପ୍ରଭୁଙ୍କର ଆଗମନ ବାର୍ତ୍ତା ପାଇ ସେ ଚିନ୍ତା କଲେ—"ଅହୋ ! ମୋର

ମୋର ଅ଼ଜ୍ଞା କ ଭାଗ୍ୟ ! ସ୍ୱୟଂ ଭଗବାନ ଶ୍ରୀରାମଚନ୍ଦ୍ର ଭାଇ ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କୁ ଧରି ମୋ ଆଶ୍ରମରେ ପଦାର୍ପଣ କରିବେ । ମୋର ଜନ୍ମ ଆଜ ସାର୍ଥକ ହେବ । ମୋର ଜୀବନ ଆଜ ଧନ୍ୟ ହେବ ।”

ଏହା ଚିନ୍ତାକରି ସେ ଆନନ୍ଦରେ ଅଧୀର ହୋଇ ପଡ଼ିଲେ । ଏପରିକ ସେ ନିଜକୁ ମଧ୍ୟ ଭୁଲିଗଲେ । ପ୍ରେମାବେଶରେ ସେ ଏତେ ବିଭୋର ହୋଇ ପଡ଼ିଲେ ଯେ ସେ କିଏ, କେଉଁଠି ଅଛନ୍ତି, କ'ଣ କରୁଛନ୍ତି, କୁଆଡ଼େ ଯାଉଛନ୍ତି, କିଛି ହେଲେ ତାଙ୍କର ସ୍ମରଣ ହେଲନାହିଁ । କେତେବେଳେ ସେ ଆଗକୁ ଯାଉଥାଲେ ତ କେତେବେଳେ ପଛକୁ ଯାଉଥିଲେ । କେତେବେଳେ ଛିଡ଼ା ହୋଇ 'ଶ୍ରୀରାମ'' 'ରଘୁନାଥ', 'କୌଶଲ୍ୟାନନ୍ଦନ' ଆଦି ଦିବ୍ୟନାମ କୀର୍ତ୍ତନ କରୁଥିଲେ ତ କେତେବେଳେ ଆନନ୍ଦରେ ବିଭୋର ହୋଇ ନୃତ୍ୟ କରୁଥିଲେ । କେତେବେଳେ ଅବା ପ୍ରଭୁଙ୍କ ଉଦ୍ଦେଶ୍ୟରେ ପ୍ରଣାମ କରି କରି ଭୂଇଁରେ ଗଡ଼ି ଯାଉଥିଲେ । ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ବୃକ୍ଷର ଅନ୍ତରାଳରେ ଥାଇ ମୁନିଙ୍କର ଏହି ଅଦ୍ଭୁତ ପ୍ରେମ-ବିଭୋର ଦଶା ଲକ୍ଷ୍ୟ କରୁଥିଲେ । ନୃତ୍ୟ କରୁ କରୁ ସୁତୀକ୍ଷ୍ଣ ମୁନି ନିଜ ହୃଦୟ ମଧ୍ୟରେ ଶ୍ରୀରାମଙ୍କର ଦିବ୍ୟରୂପ ଦେଖିବାକୁ ପାଇଲେ । ସଙ୍ଗେ ସଙ୍ଗେ ତାଙ୍କର ବାହ୍ୟ ଜ୍ଞାନ ଲୋପ ପାଇଲା । ସେ ପଥ ମଧ୍ୟରେ ବସି ଧ୍ୟାନସ୍ଥ ହୋଇ ପଡ଼ିଲେ । ଏହି ସମୟରେ ଶ୍ରୀରାମ ତାଙ୍କ ନିକଟକୁ ଗମନ କଲେ । ସେ ମୁନିଙ୍କୁ ଡାକିଲେ, ହାତରେ ହଲାଇ ଦେଲେ ଏବଂ ତାଙ୍କର ଧ୍ୟାନଭଙ୍ଗ କରିବାପାଇଁ ନାନା ପ୍ରକାର ପ୍ରଯତ୍ନ କଲେ; କିନ୍ତୁ ମୁନି ସମାଧି ଅବସ୍ଥାରେ ଥିବାରୁ ଏ ସବୁ କିଛି ଜାଣି ପାରିଲେ ନାହିଁ । ଶେଷରେ ପ୍ରଭୁ ରାମଚନ୍ଦ୍ର ମୁନିଙ୍କ ହୃଦୟରୁ ନିଜର ଦ୍ୱିଭୁଜ ରୂପ ଦୂର କରି ସେହି ସ୍ଥାନରେ ନିଜରଚତୁର୍ଭୁଜ ରୂପ ପ୍ରକଟ କଲେ । ନିଜର ଆରାଧ୍ୟ ଦ୍ୱିଭୁଜ ରୂପ ଦୂର ହୋଇ ଯିବାରୁ ମୁନି ବ୍ୟାକୁଳ ହୋଇ ଆଖି ଖୋଲିଲେ ଏବଂ ସମ୍ମୁଖରେ ଲକ୍ଷ୍ମଣ ଓ ସୀତାଙ୍କ ସହିତଶ୍ରୀରାମଙ୍କୁ ଦେଖିଲେ । ପ୍ରଭୁଙ୍କୁ ଅତି ନିକଟରେ ଦେଖି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଆନନ୍ଦରେ ବିଭୋର ହୋଇ ସେ ପ୍ରଭୁଙ୍କ ପାଦପଦ୍ମରେ ଲୋଟି ପଡ଼ିଲେ । ପ୍ରଭୁ ରାମଚନ୍ଦ୍ର ମୁନିଙ୍କୁ ଉଠାଇ ହୃଦୟ ଲଗାଇ ଆଲିଙ୍ଗନ କଲେ ।

ସୁତୀକ୍ଷ୍ଣ ମୁନି ଅତ୍ୟନ୍ତ ଆଦରର ସହିତ ଶ୍ରୀରାମଙ୍କୁ ନିଜ ଆଶ୍ରମକୁ ନେଇ-ଗଲେ । ସେଠାରେ ସେ ପ୍ରଭୁଙ୍କର ପୂଜା କଲେ । କନ୍ଦମୂଳ ଦେଇ ତାଙ୍କର ସତ୍କାର କଲେ ଏବଂ ଭାବ ଗଦ୍ ଗଦ୍ କଣ୍ଠରେ ତାଙ୍କର ସ୍ତୁତି ଗାନ କଲେ । ଶ୍ରୀରାମ ମୁନିଙ୍କର ଭକ୍ତିରେ ସନ୍ତୁଷ୍ଟ ହୋଇ ତାଙ୍କୁ ବରଦାନ ଦେଲେ—“ହେ ମୁନିବର ! ଯୁଗେ ଯୁଗେ ଆପଣ ମୋର ଶାଶ୍ୱତ ଭକ୍ତି ଓ ଜ୍ଞାନ ଲାଭ କରିବେ । ଆପଣଙ୍କର ମହିମା ସର୍ବତ୍ର ପ୍ରଚାରିତ ହେବ ।”

ମୁନିଙ୍କ ଦ୍ୱାରା ସତ୍କୃତ ଓ ପୂଜିତ ହୋଇ ପ୍ରଭୁ ରାମଚନ୍ଦ୍ର କିଛି ଦିନ ତାଙ୍କ ଆଶ୍ରମରେ ଅବସ୍ଥାନ କଲେ । ଯେତେବେଳେ ସେ ମୁନିଙ୍କୁ ବିଦାୟ ମାଗିଲେ, ସେତେବେଳେ ମୁନି କହିଲେ—"ପ୍ରଭୋ ! ଦୟାକରି ଆପଣ ଥରେ ମୋର ଗୁରୁଦେବ ମହର୍ଷି ଅଗସ୍ତ୍ୟଙ୍କ ଆଶ୍ରମରେ ପଦାର୍ପଣ କରନ୍ତୁ ।"

ମୁନିଙ୍କ ଅନୁରୋଧ ରକ୍ଷାକରି ଶ୍ରୀରାମ ମହର୍ଷି ଅଗସ୍ତ୍ୟଙ୍କ ଆଶ୍ରମକୁ ଯିବାକୁ ବାହାରିଲେ । ସୁତୀକ୍ଷ୍ଣ ମୁନି ମଧ୍ୟ ପ୍ରଭୁଙ୍କ ସହିତ ଅଗସ୍ତ୍ୟ ଆଶ୍ରମକୁ ଗମନ କରିଥିଲେ । ଶ୍ରୀରାମ ଅଗସ୍ତ୍ୟଙ୍କ ନିକଟରେ ପହଞ୍ଚିବା ପୂର୍ବରୁ ସୁତୀକ୍ଷ୍ଣ ମୁନି ପ୍ରଥମେ ତାଙ୍କ ନିକଟରେ ପହଞ୍ଚି ଦଣ୍ଡବତ ପ୍ରଣାମ କଲେ ଏବଂ ଭାବ ଗଦ୍‌ଗଦ୍ ହୋଇ କହିଲେ—"ଗୁରୁଦେବ ! ଯେଉଁ ଶ୍ରୀରାମଙ୍କୁ ଆପଣ ଦିବାନିଶି ଧ୍ୟାନ କରୁଛନ୍ତି, ମର୍ଯ୍ୟାଦା ପୁରୁଷୋତ୍ତମ, ସେହି ପ୍ରଭୁ ଅନୁଜ ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କ ସହିତ ଆପଣଙ୍କ ଦ୍ୱାରଦେଶରେ ଦଣ୍ଡାୟମାନ । ଆପଣ ଅତିଶୀଘ୍ର ଯାଇ ତାଙ୍କୁ ସ୍ୱାଗତ କରନ୍ତୁ ।"

ମହର୍ଷି ଅଗସ୍ତ୍ୟ ଶ୍ରୀରାମଙ୍କ ଆଗମନ ବାର୍ତ୍ତା ପାଇ ଆନନ୍ଦିତ ହେଲେ ଏବଂ ପ୍ରଭୁଙ୍କର ଉପଯୁକ୍ତ ସତ୍କାର କରିଥିଲେ ।

ଯେଉଁ ସୁତୀକ୍ଷ୍ଣ ମୁନି ଗୁରୁଦକ୍ଷିଣା ଦେବାପାଇଁ ସର୍ବେଶ୍ୱର, ସର୍ବାଧାର ଶ୍ରୀରାମଙ୍କୁ ନେଇ ଗୁରୁଙ୍କ ସମ୍ମୁଖରେ ଛିଡ଼ା କରାଇ ପାରିଥିଲେ, ସେହି ସୁତୀକ୍ଷ୍ଣ ମୁନିଙ୍କୁ ବାରମ୍ବାର ପ୍ରଣାମ ।



# ମହର୍ଷି ଶରଭଙ୍ଗ

ପୂର୍ବକାଳରେ ଦଣ୍ଡକାରଣ୍ୟ ଥିଲା ମୁନି ଋଷିମାନଙ୍କର ତପୋଭୂମି । ସେହି ଅରଣ୍ୟରେ ଅବସ୍ଥାନ କରି ଅନେକ ଊର୍ଦ୍ଧ୍ୱରେତା ବ୍ରହ୍ମବାଦୀ ତପସ୍ୱୀ ତପସ୍ୟା କରୁଥିଲେ । କଠିନ ଯୋଗାଭ୍ୟାସ ଓ ପ୍ରାଣାୟାମ ଦ୍ୱାରା ସେମାନେ ସଂସାରର ସମସ୍ତ ପଦାର୍ଥରେ ଆସକ୍ତି, ମମତା, ସ୍ପୃହା ଓ କାମନା ପରିତ୍ୟାଗ କରିଥିଲେ ଏବଂ ଉଗ୍ର ତପସ୍ୟା ଦ୍ୱାରା ନିଜ ନିଜର ଇନ୍ଦ୍ରିୟ ଦମନ କରିଥିଲେ । ସେହି ଊର୍ଦ୍ଧ୍ୱରେତା ତପସ୍ୱୀମାନଙ୍କ ମଧ୍ୟରେ ମହର୍ଷି ଶରଭଙ୍ଗ ଥିଲେ ଅନ୍ୟତମ ।

ମହର୍ଷି ଶରଭଙ୍ଗଙ୍କର ତପସ୍ୟା ଏତେ କଠୋର ଥିଲା ଯେ ତାହାଫଳରେ ସେ ବ୍ରହ୍ମଲୋକ ଲାଭ କରିବାପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । ମହର୍ଷିଙ୍କୁ ବ୍ରହ୍ମଲୋକକୁ ନେବାପାଇଁ ଇନ୍ଦ୍ରଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ତେଣୁ ଇନ୍ଦ୍ର ମହର୍ଷିଙ୍କୁ ସତ୍କାର ପୂର୍ବକ ବ୍ରହ୍ମଲୋକକୁ ନେବାପାଇଁ ଭୂତଳକୁ ଅବତରଣ କଲେ । ମହର୍ଷି ଶରଭଙ୍ଗ ଦେଖିଲେ ତାଙ୍କୁ ବ୍ରହ୍ମଲୋକକୁ ନେବାପାଇଁ ଦେବରାଜ ଇନ୍ଦ୍ରଙ୍କର ରଥ ଆସି ଭୂତଳରୁ କିଛି ଊର୍ଦ୍ଧ୍ୱରେ ଆକାଶ ମାର୍ଗରେ ଛିଡ଼ା ହୋଇଛି । ଦେବତା-ମାନେ ସେହି ରଥକୁ ଘେରି ଇନ୍ଦ୍ରଙ୍କର ଜୟଗାନ କରୁ ଅଛନ୍ତି । ସୂର୍ଯ୍ୟ ଓ ଅଗ୍ନିଙ୍କ ପରି ଇନ୍ଦ୍ରଙ୍କର ଶୋଭା ଅତ୍ୟନ୍ତ ଦୀପ୍ତିମନ୍ତ ଦିଶୁଅଛି । ଦେବାଙ୍ଗନାଗଣ ସ୍ୱର୍ଣ୍ଣଦଣ୍ଡିକା ଯୁକ୍ତ ଚାମର ଧରି ଇନ୍ଦ୍ରଙ୍କର ସେବା କରୁ ଅଛନ୍ତି । ଇନ୍ଦ୍ରଙ୍କ ମସ୍ତକ ଉପରେ ଶ୍ୱେତଛତ୍ର ଶୋଭା ପାଉଛି । ଗନ୍ଧର୍ବ, ସିଦ୍ଧ ଓ ବ୍ରହ୍ମର୍ଷିଗଣ ଦିବ୍ୟ ବଚନ ଦ୍ୱାରା ତାଙ୍କର ସ୍ତୁତିଗାନ କରୁଛନ୍ତି । ଦେବରାଜ ଇନ୍ଦ୍ରଙ୍କୁ ଏପରି ଭାବରେ ଦେଖି ମହର୍ଷି ଶରଭଙ୍ଗ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ବ୍ରହ୍ମ ଲୋକକୁ ଯିବାପାଇଁ ପ୍ରସ୍ତୁତ ହେବାକୁ ଲାଗିଲେ । ଏହି ସମୟରେ ସହସା ସମ୍ବାଦ ଆସି ପହଞ୍ଚିଲା ଯେ ରାଜୀବଲୋଚନ କୋଶଳ କିଶୋର ଶ୍ରୀ ରାଘବେନ୍ଦ୍ର ରାମଚନ୍ଦ୍ର, ଭ୍ରାତା ଲକ୍ଷ୍ମଣ ଓ ଭଗବତୀ ସୀତାଙ୍କ ସହିତ ତାଙ୍କ ଆଶ୍ରମକୁ ଆଗମନ କରୁଛନ୍ତି । ଶ୍ରୀରାମଙ୍କର ଶୁଭାଗମନ ବାର୍ତ୍ତା ପାଇବା ମାତ୍ରେ ମହର୍ଷି ଶରଭଙ୍ଗଙ୍କ ହୃଦୟରେ ଭକ୍ତିର ସଞ୍ଚାର ହେଲା । ଭକ୍ତି ବିଗଳିତ ହୃଦୟରେ ସେ ଭାବିବାକୁ ଲାଗିଲେ—"ଅହୋ ! ଯେଉଁ ଭଗବାନଙ୍କର ଚରଣକମଳ ଲାଭ କରିବାପାଇଁ ଲୌକିକ

ଓ ବୈଦିକ ଧର୍ମ ସମୂହ ପାଳନ କରାଯାଏ, ସେହି ଭଗବାନ ତ ସ୍ୱୟଂ କୃପା କରି ମୋ ଆଶ୍ରମକୁ ଆଗମନ କରୁଛନ୍ତି । ତାଙ୍କୁ ତ୍ୟାଗ କରି ବ୍ରହ୍ମଲୋକକୁ ଯିବା ମୂର୍ଖତା ନୁହେଁ କି ? ବ୍ରହ୍ମଲୋକର ପ୍ରଧାନ ଦେବତା ଯେତେବେଳେ ମୋ ଆଶ୍ରମକୁ ଆସୁଛନ୍ତି, ସେତେବେଳେ ବ୍ରହ୍ମଲୋକକୁ ଯିବା ସମ୍ପୂର୍ଣ୍ଣ ନିଷ୍ପ୍ରୟୋଜନ । କଠୋର ତପସ୍ୟା ବଳରେ ମୁଁ ଯେଉଁ ଯେଉଁ ଅକ୍ଷୟ ଲୋକସବୁ ଅଧିକାର କରିବାପାଇଁ ଯୋଗ୍ୟ ବିବେଚିତ ହୋଇଛି, ସେ ସମସ୍ତଙ୍କୁ ମୁଁ ଆଜି ପ୍ରଭୁଙ୍କ ଚରଣ-କମଳରେ ସମର୍ପଣ କରିବି ।" ଏହା ଚିନ୍ତା କରି ମହର୍ଷି ଶରଭଙ୍ଗ ଦେବରାଜ ଇନ୍ଦ୍ରଙ୍କୁ ବିଦା କରିଦେଲେ ।

କ୍ଷଣକୁ କ୍ଷଣ ମହର୍ଷିଙ୍କ ହୃଦୟ ଭଗବାନଙ୍କ ଦର୍ଶନ କରିବାପାଇଁ ବ୍ୟାକୁଳ ହୋଇ ପଡ଼ିଲା । ଅଳ୍ପକାଳର ପ୍ରତୀକ୍ଷା ତାଙ୍କୁ ଯୁଗ ଯୁଗ ପରି ପ୍ରତୀୟମାନ ହେଲା ! "ଭଗବାନ ଶ୍ରୀରାମଙ୍କ ସମ୍ମୁଖରେ ହିଁ ମୁଁ ଏହି ନଶ୍ୱର ଶରୀର ପରିତ୍ୟାଗ କରିବି"— ଏପରି ଦୃଢ଼ ସଂକଳ୍ପ କରି ସେ ଭଗବାନ ଶ୍ରୀରାମଙ୍କୁ ଅପେକ୍ଷା କରି ରହିଲେ ।

ଯଥା ସମୟରେ କମଳ-ଲୋଚନ ଶ୍ୟାମସୁନ୍ଦର ଭଗବାନ ଶ୍ରୀରାମ ସୀତା ଓ ଲକ୍ଷ୍ମଣଙ୍କ ସହିତ ମହର୍ଷିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ଶ୍ରୀରାମଙ୍କର ଅନୁପମ ରୂପମାଧୁରୀ ଦର୍ଶନ କରି ମହର୍ଷିଙ୍କ ନେତ୍ରଯୁଗଳ ତୃପ୍ତ ହୋଇଗଲା । ଆନନ୍ଦରେ ହୃଦୟ ପୂରି ଉଠିଲା । ଭାବ ଗଦ୍‌ଗଦ୍ ହୋଇ ସେ କହିଲେ—"ପ୍ରଭୋ ! ଏତେ ଦିନ ଆପଣଙ୍କ ପଥକୁ ଚାହିଁ ଏ ଆଶ୍ରମରେ ପଡ଼ି ରହିଥିଲି । ଆପଣଙ୍କ ଦର୍ଶନରେ ଆଜି ମୋର ଜନ୍ମ ସାର୍ଥକ ହେଲା । କୌଣସି ସାଧନ ଭଜନ ଜାଣି ନ ଥିଲେ ମଧ୍ୟ ଆପଣ କୃପା କରି ମୋ ପ୍ରତି ଯେଉଁ ସଦୟ ଦୃଷ୍ଟି ପକାଇଛନ୍ତି, ତାହା ମୋର ପରମ ସୌଭାଗ୍ୟ ଛଡ଼ା ଆଉ କିଛି ନୁହେଁ ।"

ମର୍ଯ୍ୟାଦା ପୁରୁଷୋତ୍ତମ ଭଗବାନ ଶ୍ରୀରାମ ମହର୍ଷିଙ୍କ ପାଦତଳେ ପ୍ରଣାମ କଲେ ।

ଭଗବାନଙ୍କର ଏପରି ଆଚରଣ ଦେଖି ମହର୍ଷି ଶରଭଙ୍ଗଙ୍କ ଶରୀର ରୋମାଞ୍ଚିତ ହୋଇ ଉଠିଲା । ବାହାରେ ସେ ଯେଉଁ ଭଗବାନଙ୍କୁ ଦେଖୁଥିଲେ, ହୃଦୟ ଭିତରେ ମଧ୍ୟ ସେହି ଭଗବାନଙ୍କୁ ଦେଖିପାରିଲେ । ତାଙ୍କର ବାହ୍ୟ ଦୃଷ୍ଟି ସମ୍ପୂର୍ଣ୍ଣ ଭାବରେ ଲୋପ ପାଇଲା । ସେ ଯୋଗ-ସମାଧିରେ ବୁଡ଼ିବାକୁ ଲାଗିଲେ । ହଠାତ୍ ତାଙ୍କ ଦେହରୁ ଯୋଗାଗ୍ନି ନିର୍ଗତ ହେଲା । ସେହି ଯୋଗାଗ୍ନି ମଧ୍ୟରେ ତାଙ୍କର ନଶ୍ୱର ଦେହ ପୋଡ଼ି ଭସ୍ମୀଭୂତ ହୋଇଗଲା । କିନ୍ତୁ ତାଙ୍କ ଜୀବାତ୍ମା ଅଗ୍ନିରୁ ବହିର୍ଗତ ହୋଇ ମର୍ତ୍ତ୍ୟଲୋକ ଓ ଦେବଲୋକ ଅତିକ୍ରମ ପୂର୍ବକ ପରମଧାମକୁ ପ୍ରସ୍ଥାନ କଲା ।

# ମହର୍ଷି ମୁଦ୍‌ଗଲ

ମହର୍ଷି ମୁଦ୍‌ଗଲ କୁରୁକ୍ଷେତ୍ରରେ ଅବସ୍ଥାନ କରୁଥିଲେ । ସେ ଥିଲେ ଜଣେ ଧର୍ମାତ୍ମା, ଜିତେନ୍ଦ୍ରିୟ, ସତ୍ୟବକ୍ତା ଓ ଭଗବଦ୍ ଭକ୍ତ । ସେ କାହାର ନିନ୍ଦା କରୁନଥିଲେ । ଶିଳୋଞ୍ଛ ବୃତ୍ତି ଅବଲମ୍ବନ କରି ସେ ଜୀବନ-ନିର୍ବାହ କରୁଥିଲେ । ପନ୍ଦର ଦିନରେ ସେ ଏକ ଦ୍ରୋଣ (୩୪ ସେର = ୩୪ × ୧,୨୦୦ ଗ୍ରାମ) ଧାନ୍ୟ ସଂଗ୍ରହ କରୁଥିଲେ । ସେଥିରେ ସେ ପ୍ରତି ମାସର ଅମାବାସ୍ୟା ଓ ପୂର୍ଣ୍ଣିମା ତିଥିରେ ଇଷ୍ଟୀକୃତ ଯଜ୍ଞ ଓ ଦର୍ଶ-ପୌର୍ଣ୍ଣ ମାସ ଯାଗ ଅନୁଷ୍ଠାନ କରୁଥିଲେ । ଯଜ୍ଞରେ ଦେବତା ଓ ଅତିଥିମାନଙ୍କୁ ଦାନ ଦେବାପରେ ଯେଉଁ ଅନ୍ନ ଅବଶିଷ୍ଟ ରହୁଥିଲା, ସେଥିରେ ତାଙ୍କର ଓ ତାଙ୍କ ପରିବାରର ଜୀବନ ଅତିବାହିତ ହେଉଥିଲା । ସେ ଯେପରି ଧର୍ମାତ୍ମା ବ୍ରାହ୍ମଣ ଥିଲେ ତାଙ୍କର ପୁତ୍ର ଓ ଧର୍ମପତ୍ନୀ ମଧ୍ୟ ସେହିପରି ଆଦର୍ଶ ସ୍ଥାନୀୟ ଥିଲେ । ସେମାନେ ପ୍ରତି କାର୍ଯ୍ୟରେ ମହର୍ଷିଙ୍କୁ ସାହାଯ୍ୟ କରୁଥିଲେ । ଅତିଥି-ଅଭ୍ୟାଗତଙ୍କୁ ଭୋଜନ ଦ୍ୱାରା ସନ୍ତୁଷ୍ଟ କରିବା ପରେ, ମହର୍ଷି ମୁଦ୍‌ଗଲ ନିଜ ପରିବାର ସହିତ ମାସରେ କେବଳ ଦୁଇଥର ଅମାବାସ୍ୟା ଓ ପୂର୍ଣ୍ଣିମା ଦିନ ଭୋଜନ କରୁଥିଲେ । ତାଙ୍କର ପ୍ରଭାବ ଏପରି ଥିଲା ଯେ ପ୍ରତ୍ୟେକ ପର୍ବରେ ସ୍ୱୟଂ ଦେବରାଜ ଇନ୍ଦ୍ର ଦେବତାମାନଙ୍କ ସହିତ ଆସି ନିଜର ଯଜ୍ଞଭାଗ ଗ୍ରହଣ କରୁଥିଲେ । ଏହିପରି ମୁନିବୃତ୍ତି ଅବଲମ୍ବନ କରିବା ଏବଂ ପ୍ରସନ୍ନ ଚିତ୍ତରେ ଅତିଥିମାନଙ୍କୁ ଅନ୍ନଦାନ ଦେବା ମହର୍ଷିଙ୍କର ଜୀବନର ବ୍ରତ ଥିଲା ।

ଦିନକୁ ଦିନ ମହର୍ଷି ମୁଦ୍‌ଗଲଙ୍କର ଖ୍ୟାତି ଦୂର ଦୂରାନ୍ତରରେ ବ୍ୟାପିବାକୁ ଲାଗିଲା । ଥରେ ତାଙ୍କର କୀର୍ତ୍ତି କଥା ଦୁର୍ବାସା ମୁନିଙ୍କର କର୍ଣ୍ଣଗୋଚର ହେଲା । ସେ ମହର୍ଷିଙ୍କୁ ପରୀକ୍ଷା କରିବାପାଇଁ ଏକ ପାଗଳର ବେଶ ଧାରଣ କଲେ । ଲୁଣ୍ଠିତ ମସ୍ତକ ହୋଇ, ଜୀର୍ଣ୍ଣବସ୍ତ୍ର ପରିଧାନ କରି ଓ କଟୁକଥା କହି କହି ସେ ଆସି ମହର୍ଷି ମୁଦ୍‌ଗଲଙ୍କ ନିକଟରେ ପହଞ୍ଚିଲେ । ପହଞ୍ଚୁ ପହଞ୍ଚୁ କହିଲେ—"ବିପ୍ରବର ! ଆପଣଙ୍କର ଜାଣିବା ଉଚିତ ଯେ ମୁଁ ଭୋଜନ ଆଶାରେ ଏଠାକୁ ଆସିଅଛି ।"

ସେଦିନ ଥିଲା ପୂର୍ଣ୍ଣିମା ତିଥି । ତେଣୁ ମୁଦ୍‌ଗଲ ଆଦର ସତ୍କାର କରି ଦୁର୍ବାସା ମୁନିଙ୍କୁ ଅଭ୍ୟର୍ଥନା କଲେ ଏବଂ ପରମ ଶ୍ରଦ୍ଧାର ସହିତ ରନ୍ଧା ହୋଇଥିବା ଅନ୍ନ

ପରିବେଷଣ କଲେ । ଦୁର୍ବାସା ମୁନି ଅତ୍ୟନ୍ତ କ୍ଷୁଧାର୍ତ୍ତ ଥିବାରୁ ସବୁତକ ଅନ୍ନ ଭୋଜନ କରିଦେଲେ । ଯାହା ବା ଅନ୍ନ ଅବଶିଷ୍ଟ ଥିଲା ତାହା ଆଣି ନିଜ ଦେହରେ ବୋଳି ଦେଲେ । ତା'ପରେ ସେ ମୁଦ୍‌ଗଲଙ୍କଠାରୁ ବିଦାୟ ନେଇ ସ୍ୱସ୍ଥାନକୁ ଚାଲିଗଲେ ।

ସେଦିନ ମହର୍ଷି ମୁଦ୍‌ଗଲ ସପରିବାରେ ଉପବାସରେ କଟାଇଲେ । ଏହିପରି ପ୍ରତି ପର୍ବଦିନରେ ଦୁର୍ବାସା ମୁନି ଆସି ମହର୍ଷିଙ୍କ ଦ୍ୱାରା ପ୍ରସ୍ତୁତ ଅନ୍ନ ଭୋଜନ କରିଦେଇ ଯାଉଥିଲେ । ମହର୍ଷି ମୁଦ୍‌ଗଲ ପନ୍ଦର ଦିନରେ ଯେତିକି ଧାନ୍ୟ ସଂଗ୍ରହ କରୁଥିଲେ ସେଥିରୁ ଅନ୍ନ ପ୍ରସ୍ତୁତ କରି ଦୁର୍ବାସା ମୁନିଙ୍କୁ ନେଇ ଦେଉଥିଲେ ଏବଂ ନିଜେ ନିରାହାରରେ ରହୁଥିଲେ । ତାଙ୍କ ସହିତ ତାଙ୍କ ପତ୍ନୀ ଓ ପୁତ୍ର ମଧ୍ୟ ନିରାହାରରେ କଟାଉଥିଲେ । ଦୀର୍ଘଦିନ ଧରି ଅନାହାରରେ ରହିଲେ ମଧ୍ୟ ମହର୍ଷି ମୁଦ୍‌ଗଲ ଦୁର୍ବାସାଙ୍କ ପ୍ରତି କ୍ରୋଧ, ଈର୍ଷା କିମ୍ବା ଅନାଦର ଭାବ ପ୍ରକାଶ କରୁ ନ ଥିଲେ; ଏପରିକି ତାଙ୍କ ମନରେ ସାମାନ୍ୟ ଦୁଃଖ ମଧ୍ୟ ଉତ୍ପନ୍ନ ହେଉ ନଥିଲା । ସ୍ୱଭାବତଃ ସେ ଥିଲେ ଶାନ୍ତ ଓ ନିର୍ବିକାର ।

ଦୁର୍ବାସା ମୁନି କ୍ରମାଗତଭାବରେ ଏପରି ଛ'ଥର ମହର୍ଷିଙ୍କର ଅତିଥି ହେଲେ । କିନ୍ତୁ କେଉଁଥର ହେଲେ ସେ ମହର୍ଷିଙ୍କ ମନରେ ଦୁଃଖ, କ୍ରୋଧ, କ୍ଷୋଭ କିମ୍ବା ଅପମାନର ଚିହ୍ନ ମଧ୍ୟ ଦେଖିଲେ ନାହିଁ । ଦୀର୍ଘ ତିନିମାସ ଉପବାସରେ ରହି ମଧ୍ୟ ମହର୍ଷି ମୁଦ୍‌ଗଲ ଓ ତାଙ୍କ ପରିବାର ଲୋକଙ୍କ ମନରେ ଦିବ୍ୟ ଶାନ୍ତି ବିରାଜମାନ କରୁଥିଲା । ସେମାନଙ୍କର ଅଲୌକିକ ଧୈର୍ଯ୍ୟ ଦେଖି ଦୁର୍ବାସା ମୁନି ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଗଲେ । ସେ ମୁଦ୍‌ଗଲଙ୍କୁ କହିଲେ—"ହେ ମୁନିଶ୍ରେଷ୍ଠ ! ଆପଣଙ୍କ ପରି ଦାତା ଏ ସଂସାରରେ ଅତ୍ୟନ୍ତ ବିରଳ । ସାଧାରଣତଃ କ୍ଷୁଧା ବଡ଼ ବଡ଼ ଲୋକଙ୍କର ଧାର୍ମିକ ବିଚାରକୁ ଓଲଟ ପାଲଟ କରିଦିଏ । ଜିହ୍ୱା ତ ରସର କିଙ୍କର; ରସାସ୍ୱାଦନ ପାଇଁ ଜିହ୍ୱା ସର୍ବଦା ତତ୍ପର ହୋଇଥାଏ । ମନ ମଧ୍ୟ ଏତେ ଚଞ୍ଚଳ ଯେ ତାହାକୁ ବଶୀଭୂତ କରିବା ଅତ୍ୟନ୍ତ କଠିନ । ମନ ଓ ଇନ୍ଦ୍ରିୟକୁ ବଶୀଭୂତ କରି, କ୍ଷୁଧା-କଷ୍ଟକୁ ଭ୍ରୂକ୍ଷେପ ନ କରି ନିଜ ପରିଶ୍ରମ ଲବ୍ଧ ଧନ ଶୁଦ୍ଧ ଅନ୍ତଃକରଣରେ ଅର୍ଥୀକୁ ଦାନ ଦେବା ସବୁଠାରୁ ବଳି କଠିନ ବ୍ୟାପାର । କିନ୍ତୁ ଆପଣ ସେହି କଠିନ କାର୍ଯ୍ୟକୁ ଅତି ସହଜରେ ସମ୍ପାଦନ କରିଛନ୍ତି । ସେଥିପାଇଁ ଦେବତାମାନେ ମଧ୍ୟ ଆପଣଙ୍କ ଦାନର ମହିମା ସର୍ବତ୍ର ଘୋଷଣା କରିବେ ।"

ଏହି ସମୟରେ ସ୍ୱର୍ଗରୁ ମହର୍ଷି ମୁଦ୍‌ଗଲଙ୍କ ଉପରେ ପୁଷ୍ପ ବୃଷ୍ଟି ହେଲା । ଦେବଦୂତ ବିମାନ ଧରି ମହର୍ଷିଙ୍କ ନିକଟରେ ଉପସ୍ଥିତ ହୋଇ କହିଲେ—"ଦେବ ! ଆପଣ ମହାନ୍ ପୁଣ୍ୟବାନ୍ ହୋଇ ଥିବାରୁ ସଶରୀରରେ ସ୍ୱର୍ଗ ଗମନ କରିବାକୁ ଯୋଗ୍ୟ

ବିବେଚିତ ହୋଇଛନ୍ତି । ତେଣୁ ଆପଣ ଅତିଶୀଘ୍ର ବିମାନ ଆରୋହଣ କରି ସ୍ୱର୍ଗକୁ ଆଗମନ କରନ୍ତୁ ।"

ଦେବଦୂତଙ୍କ କଥା ଶୁଣି ମହର୍ଷି ମୁଦ୍‌ଗଲ କହିଲେ—"ହେ ଦେବଦୂତ ! ମୁଁ ଆପଣଙ୍କୁ କେତୋଟି ପ୍ରଶ୍ନ ପଚାରୁ ଅଛି । ଆପଣ ତାହାର ଯଥାଯଥ ଉତ୍ତର ଦିଅନ୍ତୁ । ଆପଣଙ୍କର ଉତ୍ତର ଶୁଣିବା ପରେ ହିଁ ମୁଁ ମୋର କର୍ତ୍ତବ୍ୟ ସ୍ଥିର କରିବି । ହେ ଦେବଦୂତ ! ସ୍ୱର୍ଗରେ କ'ଣ କ'ଣ ସୁଖ ଓ କ'ଣ କ'ଣ ଦୁଃଖ ଅଛି ?"

ଦେବଦୂତ ସ୍ୱର୍ଗରେ ମିଳୁଥିବା ପ୍ରାଚୁର୍ଯ୍ୟଭରା ସୁଖ ସମ୍ଭୋଗ କଥା ବର୍ଣ୍ଣନା କରିବା ପରେ କହିଲେ—"ହେ ମୁନିଶ୍ରେଷ୍ଠ ! ସ୍ୱର୍ଗଲୋକର ସବୁଠୁ ବଳି ବଡ଼ ଦୋଷ ହେଉଛି, ଦିନେ ନା ଦିନେ ସେଠାରୁ ପତନ ହେବା ସୁନିଶ୍ଚିତ । ମର୍ତ୍ତ୍ୟଲୋକଠାରୁ ବ୍ରହ୍ମଲୋକ ପର୍ଯ୍ୟନ୍ତ ଯେତେ ଲୋକ ଅଛି, ସବୁଠାରେ ସେହି ପତନ ଭୟ ଜୀବକୁ ବିବ୍ରତ କରିଥାଏ । ସୁଖଦ ଐଶ୍ୱର୍ଯ୍ୟ ଉପଭୋଗ କରିବା ପରେ ସେଠାରୁ ନିମ୍ନ ସ୍ଥାନକୁ ପତିତ ହେଉଥିବା ପ୍ରାଣୀ ଯେଉଁ ଅସନ୍ତୋଷ ଓ ବେଦନା ଅନୁଭବ କରେ ତାହା ଅବର୍ଣ୍ଣନୀୟ ।"

ଏହା ଶୁଣି ମହର୍ଷି ମୁଦ୍‌ଗଲ ଦେବଦୂତଙ୍କୁ ବିଧି ପୂର୍ବକ ନମସ୍କାର କରି କହିଲେ—

ଯତ୍ର ଗତ୍ୱା ନ ଶୋଚନ୍ତି ନ ବ୍ୟଥନ୍ତି ଚରନ୍ତି ବି ।
ତଦହଂ ସ୍ଥାନ୍‌ ମତ୍ୟନ୍ତଂ ମାର୍ଗୟିଷ୍ୟାମି କେବଳମ୍‌ ।

(ମହାଭାରତ, ବନପର୍ବ, ୨୬୧।୪୪)

"ହେ ଦେବଦୂତ ! ମୁଁ କେବଳ ସେହି ବିନାଶ ରହିତ ପରମଧାମକୁ ପ୍ରାପ୍ତ ହେବି, ଯାହା ପ୍ରାପ୍ତ ହେଲେ ଶୋକ, ବ୍ୟଥା ଓ ଦୁଃଖର ନିବୃତ୍ତି ଘଟେ ଏବଂ ପରମାନନ୍ଦ ଲାଭ ହୋଇଥାଏ ।"

ଦେବଦୂତ ମହର୍ଷିଙ୍କଠାରୁ ଏହି ଉତ୍ତର ପାଇ ତାଙ୍କ ବୁଦ୍ଧିମତ୍ତାର ଭୂୟସୀ ପ୍ରଶଂସା କଲେ ଏବଂ ସ୍ୱର୍ଗଲୋକକୁ ଫେରିଗଲେ । ତଦନନ୍ତର ମହର୍ଷି ମୁଦ୍‌ଗଲ ଜ୍ଞାନ, ବୈରାଗ୍ୟ ଓ ଭଗବଦ୍‌ ଭକ୍ତିରେ ନିଜର ଜୀବନକୁ ସାଧନାମୟ କରି ଶେଷରେ ସେହି ବିନାଶ ରହିତ ପରମଧାମକୁ ପ୍ରାପ୍ତ ହେଲେ ।

●

# ରାମକୃଷ୍ଣ ମୁନି

ମନୁଷ୍ୟ ଜୀବନ ଅତ୍ୟନ୍ତ ଦୁର୍ଲ୍ଲଭ । ଏହା ସାଂସାରିକ ସୁଖ ଭୋଗ ପାଇଁ ଉଦ୍ଦିଷ୍ଟ ନୁହେଁ; ଭଗବାନଙ୍କୁ ଲାଭ କରି ସଂସାର ବନ୍ଧନରୁ ମୁକ୍ତି ପାଇବା ଏହାର ପ୍ରଧାନ ଉଦ୍ଦେଶ୍ୟ । ଲୌକିକ ସୁଖକୁ ପ୍ରତ୍ୟାଖ୍ୟାନ କରି ଭଗବାନଙ୍କୁ ଲାଭ କରିବା ଉଦ୍ଦେଶ୍ୟରେ ଯିଏ କଠିନରୁ କଠିନ ତପସ୍ୟା ଅନୁଷ୍ଠାନ କରେ ସେହି ହିଁ ପ୍ରକୃତରେ ପରମ ଭାଗ୍ୟବାନ ।

ପ୍ରାଚୀନ କାଳରେ ଏହିପରି ଜଣେ ଭାଗ୍ୟବାନ ମହାତ୍ମା ଥିଲେ । ତାଙ୍କର ନାମ ହେଉଛି ରାମକୃଷ୍ଣ ମୁନି । ସ୍ୱଭାବତଃ ସେ ଥିଲେ ସତ୍ୟବାଦୀ, ଶୀଳବାନ, ଶ୍ରେଷ୍ଠ ଭଗବଦ୍ ଭକ୍ତ, ଦୟାଶୀଳ, ସମଦୃଷ୍ଟି ସମ୍ପନ୍ନ, ଜିତାତ୍ମା, ଜିତେନ୍ଦ୍ରିୟ, ତପସ୍ୱୀ, ବ୍ରହ୍ମନିଷ୍ଠ ଓ ତତ୍ତ୍ୱବେତ୍ତା । ଥରେ ସେ ଭଗବାନଙ୍କର ସଚ୍ଚିଦାନନ୍ଦମୟ ସଗୁଣ ସାକାର ବିଗ୍ରହ ଦର୍ଶନ କରିବା ଉଦ୍ଦେଶ୍ୟରେ ଭେଙ୍କଟାଚଳର ମନୋରମ ଶିଖରକୁ ଯାଇ ସେଠାରେ ଥିବା ଏକ ପୁଷ୍କରିଣୀ ତୀରରେ ତପସ୍ୟା କରିବାକୁ ଲାଗିଲେ । ନିଜର ସମସ୍ତ ଅଙ୍ଗକୁ ସ୍ଥିର ରଖି ପାଦରେ ଛିଡ଼ା ହୋଇ ସେ ତପସ୍ୟା କରୁଥିଲେ । ଏହିପରି ଶହ ଶହ ବର୍ଷ ବିତିଗଲା । ଉଈମାନେ ତାଙ୍କ ଶରୀର ଉପରେ ଚଢ଼ି ହୁଙ୍କା କରି ଦେଲେ । ତାଙ୍କର ସମଗ୍ର ଶରୀର ଉଈହୁଙ୍କାରେ ଆଚ୍ଛାଦିତ ହୋଇଗଲା । ତଥାପି ମଧ୍ୟ ମହାମୁନି ରାମକୃଷ୍ଣ ତପସ୍ୟାରୁ ବିଚଳିତ ହେଲେ ନାହିଁ । ଦେବରାଜ ଇନ୍ଦ୍ର ମୁନିଙ୍କୁ ତପସ୍ୟାରେ ଅବିଚଳିତ ଦେଖି ଭୟଭୀତ ହୋଇପଡ଼ିଲେ । ନିଜର ସ୍ୱଭାବ ଅନୁସାରେ ମୁନିଙ୍କର ତପସ୍ୟା ଭଙ୍ଗ କରିବାପାଇଁ ସେ ନାନାପ୍ରକାର ପ୍ରଯତ୍ନ କଲେ । ତାଙ୍କର ନିର୍ଦ୍ଦେଶ ଅନୁସାରେ ମେଘଗଣ ମୂଷଳ ଧାରରେ ବୃଷ୍ଟି କରିବାକୁ ଲାଗିଲେ । ଅବିଚ୍ଛିନ୍ନ ଭାବେ ସାତଦିନ ଧରି ବର୍ଷା ହେବାକୁ ଲାଗିଲା । ତଥାପି ମଧ୍ୟ ମୁନିଙ୍କର ନେତ୍ର ଉନ୍ମୁକ୍ତ ହେଲା ନାହିଁ । ଗଭୀର ଧ୍ୟାନରେ ନିମଗ୍ନ ଥିବାରୁ ବର୍ଷାର ଦୁଃସହ କଷ୍ଟ ତାଙ୍କୁ ବିଚଳିତ କରି ପାରିଲା ନାହିଁ । ତତ୍ପଶ୍ଚାତ୍ ଭୀଷଣ ମେଘ ଗର୍ଜନ ସହ ଏକ ବିରାଟକାୟ ବିଜୁଳି ଆସି ତାଙ୍କୁ ଆଚ୍ଛାଦିତ କରିଥିବା ଉଈହୁଙ୍କା ଉପରେ ପଡ଼ିଲା । ଏହା ଫଳରେ ଉଈ-ହୁଙ୍କାଟି ଖଣ୍ଡ ଖଣ୍ଡ ହୋଇ ଖସି ପଡ଼ିଲା; କିନ୍ତୁ ତାହା ମୁନିଙ୍କର କୌଣସି କ୍ଷତି ଘଟାଇ ପାରିଲା ନାହିଁ । ରାମକୃଷ୍ଣ ମୁନି ଯୋଗନିଦ୍ରାରୁ ଉଠି ସହଜସୁଲଭ ଭଙ୍ଗୀରେ ନେତ୍ର ଖୋଲି ଏକ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ପାଇଲେ । ସେ ଦେଖିଲେ ତାଙ୍କ ସମ୍ମୁଖରେ

ବିରାଜମାନ ହୋଇଛନ୍ତି ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ଭଗବାନ ବିଷ୍ଣୁ । ତାଙ୍କ ଗଳାର ବନମାଳା ତାଙ୍କର ଶୋଭାକୁ ଅତ୍ୟନ୍ତ ବୃଦ୍ଧି କରୁଅଛି । ସେ ଗରୁଡ଼ ଉପରେ ଆରୂଢ଼ ହୋଇ ଭେଙ୍କଟାଚଳର ବନ ପ୍ରକୃତିକୁ ଦିବ୍ୟଜ୍ୟୋତିରେ ଉଦ୍‌ଭାସିତ କରୁଛନ୍ତି । ଭଗବାନଙ୍କର ଏପରି ତ୍ରିଭୁବନ ମୋହନ ରୂପ ଦେଖି ରାମକୃଷ୍ଣ ମୁନି କୃତ କୃତ୍ୟ ହୋଇଗଲେ । ତାଙ୍କର ଚକ୍ଷୁଦ୍ୱୟ ନିଷ୍ପଲକ ହୋଇ ଭଗବାନଙ୍କର ରୂପସୁଧା ପାନ କରିବାକୁ ଲାଗିଲା । ତାଙ୍କ ହୃଦୟ ଆନନ୍ଦରେ ନାଚି ଉଠିଲା ।

ଭଗବାନ ଅତ୍ୟନ୍ତ ମଧୁର ସ୍ୱରରେ କହିଲେ—"ରାମକୃଷ୍ଣ ! ତୁମର କଠୋର ତପସ୍ୟାରେ ମୁଁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଛି । ଆଜିଠାରୁ ତୁମେ ସମସ୍ତ ଜ୍ଞାନର ଅଧିକାରୀ ହେବ । ଆଜିର ଦିନ ଅତ୍ୟନ୍ତ ଶୁଭଦିନ । ଆଜି ସୂର୍ଯ୍ୟ ମକର ରାଶିରେ ଅବସ୍ଥିତ । ଆଜି ହେଉଛି ମହାତିଥି ପୂର୍ଣ୍ଣିମା, ପୁଣି ତାହା ପୁଷ୍ୟା ନକ୍ଷତ୍ର ଯୁକ୍ତ । ଏପରି ତିଥିରେ ମୋତେ ଦର୍ଶନ କରିଥିବାରୁ ତୁମର ସମସ୍ତ ମନୋରଥ ପୂର୍ଣ୍ଣ ହେବ । ନଶ୍ୱର ଶରୀର ପରିତ୍ୟାଗପୂର୍ବକ ଇହଧାମରୁ ବିଦାୟ ନେବା ପରେ ତୁମେ ମୋର ଯୋଗୀଜନ ଦୁର୍ଲ୍ଲଭ ବୈକୁଣ୍ଠଧାମ ପ୍ରାପ୍ତ ହେବ । ଆଜିଠାରୁ ଏହି ପୁଷ୍କରିଣୀ ତୁମର ପବିତ୍ର ନାମର ସ୍ମୃତି ବହନ କରି 'କୃଷ୍ଣତୀର୍ଥ' ନାମରେ ସୁବିଖ୍ୟାତ ହେବ । ଯେଉଁମାନେ ଏହି ତୀର୍ଥରେ ସ୍ନାନ କରିବେ, ସେମାନେ ସମସ୍ତ ପାପରୁ ମୁକ୍ତ ହୋଇ ପରମ ଧାମ ପ୍ରାପ୍ତ ହେବେ ।"

ଏହା କହି ଭଗବାନ ଅନ୍ତର୍ଦ୍ଧାନ ହୋଇଗଲେ ।

ଏବେ ମଧ୍ୟ ସେହି ମହାତୀର୍ଥ ରାମକୃଷ୍ଣ ମୁନିଙ୍କର ପବିତ୍ର ଭକ୍ତ ଭାବର ନିଦର୍ଶନ ସ୍ୱରୂପ ଭେଙ୍କଟାଚଳର ଶୋଭା ବୃଦ୍ଧି କରୁଅଛି ଏବଂ ପାପୀ ତାପୀ ଜୀବଗଣଙ୍କୁ ଉଦ୍ଧାର କରୁଅଛି ।

# ମହର୍ଷି ମୈତ୍ରେୟ

ମହର୍ଷି ମୈତ୍ରେୟ ଥିଲେ ପୁରାଣ ବକ୍ତା ଋଷି । ମିତ୍ରଙ୍କର ପୁତ୍ର ହୋଇଥିବାରୁ ତାଙ୍କୁ ମୈତ୍ରେୟ କୁହାଯାଏ । ଶ୍ରୀମଦ୍ଭାଗବତରେ ବର୍ଣ୍ଣିତ ହୋଇଛି ଯେ ସେ ଥିଲେ ମହର୍ଷି ପରାଶରଙ୍କର ଶିଷ୍ୟ ଓ ବେଦବ୍ୟାସଙ୍କର ସୁହୃଦ୍ ସଖା । ପରାଶର ମୁନି ଯେଉଁ ବିଷ୍ଣୁପୁରାଣ କହିଥିଲେ, ତାହାର ପ୍ରଧାନ ଶ୍ରୋତା ଥିଲେ ମହର୍ଷି ମୈତ୍ରେୟ । ନିଜେ ମୈତ୍ରେୟ କହିଛନ୍ତି—

ତ୍ୱତ୍ତୋ ହି ବେଦାଧ୍ୟୟନମଧୀତମଖିଲଂ ଗୁରୋ
ଧର୍ମଶାସ୍ତ୍ରାଣି ସର୍ବାଣି ତଥାଙ୍ଗାନି ଯଥାକ୍ରମମ୍ ॥
ତତ୍ପ୍ରସାଦାନ୍ମୁନିଶ୍ରେଷ୍ଠ ମାମନ୍ୟେନାକୃତ ଶ୍ରମମ୍
ବକ୍ଷ୍ୟନ୍ତି ସର୍ବ ଶାସ୍ତ୍ରେଷୁ ପ୍ରାୟଶୋଯେଽପି ବିଦ୍ୱିଷଃ ॥

"ହେ ଗୁରୁଦେବ ! ଆପଣଙ୍କଠାରୁ ହିଁ ମୁଁ ସମ୍ପୂର୍ଣ୍ଣ ବେଦ, ବେଦାଙ୍ଗ ଓ ଧର୍ମଶାସ୍ତ୍ର କ୍ରମଶଃ ଅଧ୍ୟୟନ କରିଅଛି । ହେ ମୁନି ଶ୍ରେଷ୍ଠ ! ଆପଣଙ୍କ କୃପାରେ ମୁଁ ସମ୍ପୂର୍ଣ୍ଣ ଶାସ୍ତ୍ରାଭ୍ୟାସରେ ପରିଶ୍ରମ କରି ନାହିଁ ବୋଲି ବିପକ୍ଷୀ ଲୋକମାନେ ମଧ୍ୟ କହି-ପାରନ୍ତି ନାହିଁ ।"

ମହର୍ଷିଙ୍କ ଏହି କଥାରୁ ସ୍ପଷ୍ଟ ଅନୁମିତ ହୁଏ ଯେପରି ସେ ଭଗବାନ ବେଦବ୍ୟାସଙ୍କର ସୁହୃଦ୍ ଓ ସଖା ଥିଲେ, ସେହିପରି ସେ ପୂର୍ଣ୍ଣଜ୍ଞାନୀ ଓ ଶାସ୍ତ୍ରବେତ୍ତା ମଧ୍ୟ ଥିଲେ । ଭଗବାନ ଶ୍ରୀକୃଷ୍ଣଙ୍କର କରୁଣା ମହର୍ଷି ମୈତ୍ରେୟଙ୍କ ଉପରେ ପୂର୍ଣ୍ଣମାତ୍ରାରେ ବର୍ଷିତ ହୋଇଥିଲା । ସ୍ୱଧାମକୁ ପ୍ରସ୍ଥାନ କରିବା ପୂର୍ବରୁ ସେ ମହର୍ଷି ମୈତ୍ରେୟଙ୍କୁ ଯୋଗ୍ୟ ଅଧିକାରୀ ଦେଖି ନିଜର ସମସ୍ତ ଜ୍ଞାନ ପ୍ରଦାନ କରିଥିଲେ ।

ଭଗବାନ ଶ୍ରୀକୃଷ୍ଣ ସ୍ୱଧାମକୁ ପ୍ରସ୍ଥାନ କରିବା ପୂର୍ବରୁ ପରମ ଭକ୍ତ ଉଦ୍ଧବ ଖୋଜି ଖୋଜି ଆସି ତାଙ୍କ ନିକଟରେ ପହଞ୍ଚିଲେ । ସେତେବେଳେ ଶ୍ରୀକୃଷ୍ଣ ପ୍ରଭାସ କ୍ଷେତ୍ରରେ ସରସ୍ୱତୀ ନଦୀ ତୀରରେ, ଏକ ଅଶ୍ୱତ୍ଥ ବୃକ୍ଷମୂଳେ ସୁଖାସନରେ ଶୟନ କରିଥିଲେ । ଉଦ୍ଧବ ସଜଳ ନେତ୍ରରେ ଭଗବାନଙ୍କୁ ଦର୍ଶନ କଲେ । ସେତିକବେଳେ

ମହାମୁନି ମୈତ୍ରେୟ ମଧ୍ୟ ସେଠାରେ ଆସି ପହଞ୍ଚିଲେ । ଭଗବାନ ଆନନ୍ଦ ମନରେ ତାଙ୍କୁ ଜ୍ଞାନୋପଦେଶ ପ୍ରଦାନ କଲେ ଏବଂ ସେହି ଜ୍ଞାନ ମହାତ୍ମା ବିଦୁରଙ୍କୁ ପ୍ରଦାନ କରିବାକୁ କହିଲେ । ମହାତ୍ମା ବିଦୁର ଏହି ସମ୍ବାଦ ଉଦ୍ଧବଙ୍କଠାରୁ ପ୍ରାପ୍ତ ହୋଇ ସଙ୍ଗେ ସଙ୍ଗେ ମହର୍ଷି ମୈତ୍ରେୟଙ୍କ ନିକଟକୁ ଆସିଲେ । ମୈତ୍ରେୟ ଭଗବାନଙ୍କଠାରୁ ପ୍ରାପ୍ତ ଜ୍ଞାନୋପଦେଶ ମହାତ୍ମା ବିଦୁରଙ୍କୁ ପ୍ରଦାନ କରି ତାଙ୍କୁ ଧନ୍ୟ କରି ଥିଲେ । ସେ ଯେଉଁ ଉପଦେଶ ବିଦୁରଙ୍କୁ ପ୍ରଦାନ କରିଥିଲେ ତାହା ଶ୍ରୀମଦ୍ଭାଗବତର ତୃତୀୟ ସ୍କନ୍ଧରେ ବର୍ଣ୍ଣିତ ହୋଇଅଛି । ଏପରି କୌଣସି ପୁରାଣ ନାହିଁ ଯେଉଁଥିରେ ମୈତ୍ରେୟଙ୍କ କଥା ବର୍ଣ୍ଣିତ ହୋଇନାହିଁ । ବାସ୍ତବରେ ମୈତ୍ରେୟ ଥିଲେ ଜ୍ଞାନର ଭଣ୍ଡାର, ଭଗବତ୍ ଲୀଳାର ପରମ ରସିକ ଏବଂ ଭଗବାନଙ୍କର ପରମ ଭକ୍ତ । ତାଙ୍କ ଗୁରୁ ମହର୍ଷି ପରାଶର ତାଙ୍କୁ ବିଷ୍ଣୁପୁରାଣ ଶୁଣାଇବା ପରେ କହିଥିଲେ—"କଳିଯୁଗ ଶେଷରେ ତୁମେ ଏହି ପୁରାଣ ଶିମୀକଙ୍କୁ ଶୁଣାଇବ ।" ଏଥିରୁ ସ୍ପଷ୍ଟ ଧାରଣା ହୁଏ ଯେ ମୈତ୍ରେୟ ମୁନି କୌଣସି ନା କୌଣସି ରୂପରେ ଏବେ ମଧ୍ୟ ଧରାଧାମରେ ବିଦ୍ୟମାନ ଅଛନ୍ତି । ଭଗବତ୍ କଥାର ମହତ୍ତ୍ୱ ବୁଝାଇବାକୁ ସେ କହିଛନ୍ତି—

କୋ ନାମ ଲୋକେ ପୁରୁଷାର୍ଥସାରବିତ୍
ପୁରା କଥାନାଂ ଭଗବତ୍ କଥା ସୁଧାମ
ଆପୀୟ କର୍ଣ୍ଣାଞ୍ଜଳିଭିର୍ଭବାପହା—
ମହୋ ବିରଜ୍ୟେତ ବିନା ନରେତରମ୍ ॥

(ଶ୍ରୀମଦ୍ଭାଗବତ, ୩।୧୩।୫୦)

ସଂସାରରେ ପଶୁମାନଙ୍କୁ ଛାଡ଼ି, ନିଜର ପୁରୁଷାର୍ଥକୁ ସାର ମନେକରୁଥିବା ଏପରି କୌଣସି ପୁରୁଷ ଅଛନ୍ତି କି ଯିଏ ଜନ୍ମ ମୃତ୍ୟୁରୁ ମୁକ୍ତି ଦେଉଥିବା ଭଗବାନଙ୍କର ପ୍ରାଚୀନ କଥା ସମୂହରୁ ଯେ କୌଣସି ଅମୃତମୟୀ କଥା ଥରେ ମାତ୍ର ନିଜର କର୍ଣ୍ଣ-ପୁଟରେ ଶ୍ରବଣ କରି ପୁଣିଥରେ ସେ ଆଡ଼ରେ ମନୋନିବେଶ ନ କରନ୍ତି ?



# ଭଗବାନ ବେଦବ୍ୟାସ

ନମୋଽସ୍ତୁତେ ବ୍ୟାସ ବିଶାଳ ବୁଦ୍ଧେ
ଫୁଲ୍ଲାରବିନ୍ଦାୟତ ପତ୍ର ନେତ୍ର ।
ଯେନ ତ୍ୱୟା ଭାରତ ତୈଳ ପୂର୍ଣ୍ଣଃ
ପ୍ରଜ୍ୱାଳିତୋ ଜ୍ଞାନମୟଃ ପ୍ରଦୀପଃ ।।

"ହେ କମଳ ନୟନ ବିଶାଳ ବୁଦ୍ଧି ବ୍ୟାସଦେବ ! ତୁମ୍ଭଙ୍କୁ ଗଭୀର ନମସ୍କାର, ଯେହେତୁ ତୁମ୍ଭେ ଭାରତ-ଯୁଦ୍ଧ ରୂପକ କାହାଣୀର ତୈଳ ଦେଇ ଗୀତା ରୂପକ ଏକ ଜ୍ଞାନମୟ ପ୍ରଦୀପ ସମଗ୍ର ବିଶ୍ୱପାଇଁ ଜାଳି ଦେଇ ଯାଇଛ ।"

ଭାରତର ଲକ୍ଷ ଲକ୍ଷ ହିନ୍ଦୁ, ଯେଉଁମାନେ ପ୍ରତ୍ୟହ ନିଷ୍ଠାର ସହିତ ଶ୍ରୀମଦ୍ଭଗବଦ୍ ଗୀତା ପାରାୟଣ କରନ୍ତି, ସେମାନେ ଗୀତାପାଠ କରିବା ପୂର୍ବରୁ ପ୍ରଥମେ ଉପରୋକ୍ତ ମନ୍ତ୍ରରେ ଭଗବାନ ବେଦବ୍ୟାସଙ୍କୁ ନମସ୍କାର କରିଥାନ୍ତି ।

ଭଗବାନ ବେଦବ୍ୟାସ ଆମର ପ୍ରାତଃ ସ୍ମରଣୀୟ ମହାପୁରୁଷ । ଗୀତା ପାଠ ସମୟରେ ଶ୍ରୀକୃଷ୍ଣଙ୍କୁ ବନ୍ଦନା କରିବା ପୂର୍ବରୁ ପ୍ରଥମେ ଏହି ମହାପୁରୁଷଙ୍କୁ ବନ୍ଦନା କରାଯାଏ ।

ବ୍ୟାସଂ ବଶିଷ୍ଠନପ୍ତାରଂ ଶକ୍ତେଃ ପୌତ୍ରମକଲ୍ମଷମ୍
ପରାଶରାତ୍ମଜଂ ବନ୍ଦେ ଶୁକତାତଂ ତପୋନିଧିମ୍ ।
ବ୍ୟାସାୟ ବିଷ୍ଣୁ ରୂପାୟ ବ୍ୟାସ ରୂପାୟ ବିଷ୍ଣବେ
ନମୋ ବୈ ବ୍ରହ୍ମ ନିଧୟେ ବଶିଷ୍ଠାୟ ନମୋନମଃ ।
ଅଚତୁର୍ବଦନୋ ବ୍ରହ୍ମା ଦ୍ୱିବାହୁର ପରୋ ହରିଃ
ଅଭାଲ ଲୋଚନଃ ଶମ୍ଭୁର୍ଭଗବାନ୍ ବାଦରାୟଣଃ ।

ଭାରତୀୟ ଚେତନାରେ ଭଗବାନ ବେଦବ୍ୟାସ ଏକ ସର୍ବମୟ ବରିଷ୍ଠ ପୁରୁଷ । ଭାରତର ଧର୍ମ ଓ ସଂସ୍କୃତି ପାଇଁ ସେ ଯାହା କରି ଯାଇଛନ୍ତି ତାହା ପ୍ରକାଶ କରିବା

କ୍ଷୁଦ୍ର ମାନବର ବୁଦ୍ଧିର ବାହାରେ । ଏକାଧାରରେ ସେ ଥିଲେ ଜ୍ଞାନୀ, ପଣ୍ଡିତ, ଶାସ୍ତ୍ରବିତ୍, ବେଦଜ୍ଞ, ସାଧକ ଓ ଗୁରୁ । ଯେଉଁ ସମୟରେ ତାଙ୍କର ଆବିର୍ଭାବ ଘଟିଥିଲା, ସେତେବେଳେ ସମାଜରେ କଠୋର ଜାତି ବିଭାଗ ନ ଥିଲା । ଆର୍ଯ୍ୟ ଓ ଅନାର୍ଯ୍ୟମାନେ ଅବାଧରେ ମିଳାମିଶା କରୁଥିଲେ । ଏପରିକି ସେମାନଙ୍କ ମଧ୍ୟରେ ବୈବାହିକ ସମ୍ବନ୍ଧ ମଧ୍ୟ ସ୍ଥାପିତ ହେଉଥିଲା । ଯମୁନା କୂଳସ୍ଥ ଏକ କୈବର୍ତ୍ତ ରାଜାଙ୍କର, ଅନାର୍ଯ୍ୟ ହେଲେ ହେଁ, ସତ୍ୟବତୀ ନାମରେ ଏକ ପରମ ରୂପବତୀ କନ୍ୟା ଥିଲା । ଯମୁନାର ଏକ ଦ୍ୱୀପରେ ତରୁଣ ବ୍ରାହ୍ମଣ ପରାଶର ଅଧ୍ୟୟନ ଓ ତପୋରତ ଥିଲେ । ସେହି ଦ୍ୱୀପରେ ପରାଶର ଓ ସତ୍ୟବତୀ ପରସ୍ପର ପ୍ରତି ଆକୃଷ୍ଟ ହେଲେ । ସେ ଦୁହିଙ୍କର ସନ୍ତାନ ଭାବରେ ଜନ୍ମ ଗ୍ରହଣ କଲେ ଭଗବାନ ବେଦବ୍ୟାସ । କଥିତ ଅଛି, କଳିଯୁଗର ଅଳ୍ପ ସତ୍ତ୍ୱ, ଅଳ୍ପ ଆୟୁ, ଅଳ୍ପ ବୁଦ୍ଧି ଯୁକ୍ତ ନରନାରୀମାନଙ୍କୁ ଧର୍ମର ସୁଗମ ତଥା ସରଳ ମାର୍ଗ ପ୍ରଦର୍ଶନ କରିବା-ପାଇଁ ସ୍ୱୟଂ ଭଗବାନ ବ୍ୟାସ ରୂପରେ ଅବତାର ଗ୍ରହଣ କରିଥିଲେ । ଦ୍ୱୀପରେ ଜାତ ହେବାରୁ ତାଙ୍କୁ କୁହାଗଲା ଦ୍ୱୈପାୟନ । ତାଙ୍କ ଶରୀର କୃଷ୍ଣବର୍ଣ୍ଣ ହୋଇଥିବାରୁ ସେ କୃଷ୍ଣ ଦ୍ୱୈପାୟନ ନାମରେ ପରିଚିତ ହେଲେ । ଏହା ହିଁ ହେଉଛି ତାଙ୍କର ପ୍ରକୃତ ନାମ ।

ଅତି ବାଲ୍ୟକାଳରୁ କୃଷ୍ଣ ଦ୍ୱୈପାୟନଙ୍କ ମଧ୍ୟରେ ବିଚକ୍ଷଣ ବୁଦ୍ଧି ପ୍ରକାଶିତ ହୋଇଥିଲା । ତେଣୁ ମହର୍ଷି ପରାଶର ସତ୍ୟବତୀଙ୍କୁ ଗୃହିଣୀର ବନ୍ଧନରୁ ମୁକ୍ତ କରି କୃଷ୍ଣ ଦ୍ୱୈପାୟନଙ୍କୁ ନେଇ ନିମ୍ନ ହିମାଳୟର ଶାନ୍ତିମୟ ବଦରିକାଶ୍ରମକୁ ଚାଲି ଆସିଲେ । ସେଠାରେ ଦ୍ୱୈପାୟନ ଜ୍ଞାନୀ ପିତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଶାସ୍ତ୍ର ଅଧ୍ୟୟନରେ ମନୋନିବେଶ କଲେ । ଖୁବ୍ ଅଳ୍ପଦିନ ଭିତରେ ସେ ବେଦବିତ୍ ଓ ସର୍ବଶାସ୍ତ୍ରବିତ୍ ହୋଇ ଉଠିଲେ । ସମସ୍ତ ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିବା ପରେ ତାଙ୍କର ମନେହେଲା, ଭାରତୀୟ ବେଦସମୂହ ଓ ଶାସ୍ତ୍ରସମୂହର କୌଣସି ଶ୍ରେଣୀ ଶୃଙ୍ଖଳା ନାହିଁ; ସେ ସବୁ ଯେପରି କି ଆବୁରୁ ଜାବୁରୁ ହୋଇ ରହିଛି । ତା'ଛଡ଼ା ସେ ଲକ୍ଷ୍ୟ କଲେ ଯେ ବେଦର କୌଣସି ଶ୍ରେଣୀ ବିଭାଗ ନ ଥିବାରୁ ତାହା ପ୍ରତି ଲୋକମାନଙ୍କର ଆଗ୍ରହ ଦିନକୁ ଦିନ କମି ଯାଉଛି । କାରଣ ଲୋକମାନେ କେଉଁଠୁ ବେଦ ଆରମ୍ଭ କରିବେ, କେଉଁଠି ଶେଷ କରିବେ, କାହାକୁ ପଢ଼ିବେ, କାହାକୁ ଛାଡ଼ିବେ, କାହାକୁ ମୁଖ୍ୟ କରିବେ, କାହାକୁ ଗୌଣ କରିବେ, କିଛି ଜାଣି ପାରୁ ନ ଥିଲେ । ଭୁଲ-ଭାଲ ନ ଜାଣି, ଯିଏ ଯେଉଁଠୁ ଯାହା ମୁଖସ୍ଥ କରି ଆବୃତ୍ତି କରି ପାରୁଥିଲା, ସେ ବୋଲଉ ଥିଲା ବେଦବିତ୍ ।

ବେଦପ୍ରତି ଲୋକମାନଙ୍କର ଆଗ୍ରହ କମି ଯିବାର ଆଉ ଏକ ମୁଖ୍ୟ କାରଣ ହେଉଛି, ସେ ପର୍ଯ୍ୟନ୍ତ ବେଦ ଲିଖିତ ଆକାରରେ ନ ଥିଲା । ଗୁରୁ ବେଦମନ୍ତ୍ର ଆବୃତ୍ତି

କରି ଶିଷ୍ୟମାନଙ୍କୁ ଶୁଣାଉଥିଲେ; ଶିଷ୍ୟମାନେ ତାହା ମୁଖସ୍ଥ କରୁଥିଲେ ଏବଂ ସେମାନେ ଯେତେବେଳେ ଗୁରୁ ସ୍ଥାନକୁ ଉନ୍ନୀତ ହେଉଥିଲେ ସେତେବେଳେ ସେମାନେ ସେମାନଙ୍କର ଶିଷ୍ୟମାନଙ୍କୁ ତାହା ପ୍ରଦାନ କରୁଥିଲେ । ଏହିପରି ଶିଷ୍ୟ ପରମ୍ପରା କ୍ରମେ ବେଦ ଯାହା ସୁରକ୍ଷିତ ହେଉଥିଲା । କାଳକ୍ରମେ ଅନେକ ବେଦମନ୍ତ୍ର ଲୁପ୍ତ ହୋଇଗଲା ଏବଂ ଅନେକ ମନ୍ତ୍ର ବିକୃତ ହୋଇ ପଡ଼ିଲା । ତରୁଣ ହେଲେ ହେଁ ପ୍ରାଜ୍ଞ ଓ ଦୂରଦ୍ରଷ୍ଟା ଦ୍ୱୈପାୟନଙ୍କ ଭାରତୀୟ ଚରମ ଜ୍ଞାନର ଏହି ବିପର୍ଯ୍ୟୟ ବଡ଼ ବାଧିଲା । ତେଣୁ ସେ ଜ୍ଞାନୀ ପିତାଙ୍କର ପ୍ରେରଣା ଓ ପରାମର୍ଶ ନେଇ ବେଦକୁ ଶ୍ରେଣୀବଦ୍ଧ କରିବାକୁ ଏବଂ ତାହାକୁ ଲିଖିତ ଆକାରରେ ରଖିବାକୁ ଚେଷ୍ଟା ଚଳାଇଲେ । କଠିନ ପରିଶ୍ରମ କରି ସେ ବେଦକୁ ଋକ୍, ସାମ, ଯଜୁଃ, ଅଥର୍ବ ଏହିପରି ଚାରି ଭାଗରେ ଏବଂ ପ୍ରତି ଭାଗକୁ ସଂହିତା, ଆରଣ୍ୟକ, ବ୍ରାହ୍ମଣ ଆଦି ଉପ ବିଭାଗରେ ବିଭକ୍ତ କଲେ । ବେଦକୁ ଭାଗ ଭାଗ କରି ଶ୍ରେଣୀବଦ୍ଧ ଓ ପରିବାରଭୁକ୍ତ କରିବାରୁ ଦ୍ୱୈପାୟନଙ୍କୁ ତରୁଣ ବୟସରେ ମଧ୍ୟ ସମଗ୍ର ଭାରତରେ 'ବେଦବ୍ୟାସ' ବୋଲି ସମ୍ମାନିତ କରାଗଲା । ଲୋକ ମୁଖରେ ସେ କଥିତ ହେଲେ ବ୍ୟାସଦେବ ।

ମହାମୁନି ଶୁକଦେବ ଥିଲେ ବ୍ୟାସଦେବଙ୍କର ଏକମାତ୍ର ପୁତ୍ର ଓ ପିତାଙ୍କ ପରି ସର୍ବଶାସ୍ତ୍ରରେ ସୁପଣ୍ଡିତ । ସେ ବିବାହ ନ କରି ବ୍ରହ୍ମଚର୍ଯ୍ୟବ୍ରତ ଅବଲମ୍ବନ କରିଥିଲେ । ତେଣୁ ପ୍ରତ୍ୟକ୍ଷ ଭାବରେ ବ୍ୟାସ ଶାଖା ଲୋପ ପାଇଲା ।

କିନ୍ତୁ ବ୍ୟାସ ଜନନୀ ସତ୍ୟବତୀ ପରେ କୌରବରାଜ ଶାନ୍ତନୁଙ୍କୁ ବିବାହ କରିଥିଲେ । ଶାନ୍ତନୁଙ୍କ ଆଉ ତାଙ୍କର ଚିତ୍ରବୀର୍ଯ୍ୟ ଓ ବିଚିତ୍ରବୀର୍ଯ୍ୟ ନାମରେ ଦୁଇପୁତ୍ର ଜନ୍ମ ହୋଇଥିଲେ । କିନ୍ତୁ ସେମାନେ ଥିଲେ ବଡ଼ ସ୍ୱଳ୍ପସ୍ୱାସ୍ଥ୍ୟ, ରାଜଗାଦୀରେ ନ ବସୁଣୁ ଚିତ୍ରବୀର୍ଯ୍ୟ ଯକ୍ଷ୍ମାରୋଗରେ ପ୍ରାଣତ୍ୟାଗ କରିଥିଲେ । ବିଚିତ୍ରବୀର୍ଯ୍ୟ ରାଜା ହୋଇ ଅମ୍ବିକା ଓ ଅମ୍ବାଳିକା ନାମକ ଦୁଇଟି ସୁନ୍ଦରୀ ରାଜକନ୍ୟାଙ୍କୁ ବିବାହ କରିଥିଲେ, ମାତ୍ର ସେମାନେ ପୁତ୍ରବତୀ ହେବା ପୂର୍ବରୁ ସେ ମଧ୍ୟ ଇହଧାମ ପରିତ୍ୟାଗ କରିଥିଲେ । ସତ୍ୟବତୀ ଦେଖିଲେ ଯେ କିଛି ଗୋଟାଏ ଉପାୟ ନ କଲେ ବିଖ୍ୟାତ କୁରୁବଂଶ ଲୋପ ପାଇଯିବ । ତେଣୁ ସେ ତାଙ୍କର ପ୍ରଥମ ପୁତ୍ର ଜ୍ଞାନୀ ଶ୍ରେଷ୍ଠ ଦ୍ୱୈପାୟନଙ୍କୁ ପରାମର୍ଶ ପାଇଁ ଡକାଇଲେ । ଦ୍ୱୈପାୟନ ଜନନୀଙ୍କ ଆଦେଶ ରକ୍ଷା କରି ବଦରିକାଶ୍ରମର ଶାନ୍ତିମୟ ଜ୍ଞାନ ଚର୍ଚ୍ଚା ଛାଡ଼ି ହସ୍ତିନାପୁରର ଜନଗହଳି ଓ ରାଷ୍ଟ୍ରୀୟ ବ୍ୟାପାର ଭିତରକୁ ଆସିଲେ । ସତ୍ୟବତୀ ବିଖ୍ୟାତ କୁରୁବଂଶକୁ ରକ୍ଷା କରିବାପାଇଁ ବରେଣ୍ୟ ପୁତ୍ର ଦ୍ୱୈପାୟନଙ୍କୁ ବାରମ୍ବାର ଅନୁରୋଧ କଲେ । ବେଦୋଜ୍ଜ୍ୱଳ ବୁଦ୍ଧି ଦ୍ୱୈପାୟନ ଜନନୀଙ୍କ ବାକ୍ୟକୁ ଶିରୋଧାର୍ଯ୍ୟ କରି ସେ କାଳର 'ନିୟୋଗ' ପ୍ରଥା ଅନୁସାରେ ଗୌରବାବହ କୁରୁବଂଶକୁ ରକ୍ଷା କରିବାପାଇଁ ରାଜି ହେଲେ । ତେଣୁ ଅମ୍ବିକା ଓ

ଅମ୍ବାଳିକା ପୁତ୍ରବତୀ ହୋଇ ପାଣ୍ଡୁ ଓ ଧୃତରାଷ୍ଟ୍ରଙ୍କୁ ଜାତ କଲେ । ପାଣ୍ଡୁ ଓ ଧୃତରାଷ୍ଟ୍ରଙ୍କଠାରୁ ଜନ୍ମ ହେଲେ ସୁବିଖ୍ୟାତ ପାଣ୍ଡବ ଓ କୌରବ ଭ୍ରାତୃଗଣ । ଏହି ପାଣ୍ଡବ ଓ କୌରବଙ୍କ ସଂଘର୍ଷକୁ ନେଇ ଭବିଷ୍ୟତ କାଳରେ ଗଢ଼ି ଉଠିବ ବିଶ୍ୱର ହିନ୍ଦୁ ସଂସ୍କୃତିର ମହାକାବ୍ୟ 'ମହାଭାରତ' ତେଣୁ ଲେଖାରେ ଯୁଧିଷ୍ଠିରାଦି ପାଣ୍ଡବ ଓ ଦୁର୍ଯ୍ୟୋଧନାଦି କୌରବମାନେ ହେଲେ ବ୍ୟାସଦେବଙ୍କ ପୌତ୍ର ।

କୁରୁବଂଶକୁ ରକ୍ଷା କରିବାପାଇଁ ବ୍ୟାସଦେବ ହସ୍ତିନାପୁରକୁ ଆସି ସେଠାରେ କିଛି ଦିନ କଟାଇ ଥିଲେ ମଧ୍ୟ ତାଙ୍କର ସାଧନା ପୀଠ ଶାନ୍ତିମୟ ବଦରିକାଶ୍ରମ ତାଙ୍କୁ ବିଶେଷ ଭାବରେ ଆକୃଷ୍ଟ କରିଥିଲା । ଜୀବନରେ ତପସ୍ୟା, ଧ୍ୟାନ ଓ ଅଧ୍ୟୟନ ଛଡ଼ା ସେ ଆଉ କିଛି ଜାଣି ନ ଥିଲେ । କୌଣସି ପ୍ରକାର ସାମାଜିକ ପଦ ପଦବୀପାଇଁ ତାଙ୍କ ମନରେ ସାମାନ୍ୟ ଅଭିଳାଷ ମଧ୍ୟ ନ ଥିଲା । ତେଣୁ ସେ ହସ୍ତିନାପୁରରୁ ବିଦାୟ ନେଇ ପୁନଶ୍ଚ ବଦରିକାଶ୍ରମକୁ ଫେରି ଯାଇଥିଲେ ।

ମହର୍ଷି ବ୍ୟାସଦେବଙ୍କ ସମୟରେ ଭାରତ ଇତିହାସରେ ଏକ ଯୁଗାନ୍ତକାରୀ ପରିବର୍ତ୍ତନ ଘଟିଥିଲା । ଅଠର ଦିନ ବ୍ୟାପୀ ମହାଭାରତ ଯୁଦ୍ଧରେ ଏହି ଉପମହାଦେଶର ସମଗ୍ର କ୍ଷତ୍ରିୟ ସମାଜ ଧ୍ୱଂସ ପାଇ ଗଲେ । କିନ୍ତୁ ତାହା ବ୍ୟାସଦେବଙ୍କୁ ବିଚଳିତ କରି ନ ଥିଲା । ମହାଭାରତ ଯୁଦ୍ଧ, ତା'ର ପରିଣତି, ଯଦୁବଂଶ ଧ୍ୱଂସ ଏବଂ ଏସବୁ ଭିତରେ ଭଗବାନ ଶ୍ରୀକୃଷ୍ଣଙ୍କର ଭୂମିକା—ଏସବୁ ମିଶି ଯେଉଁ ଗଭୀର ଆଭିମୁଖ୍ୟପୂର୍ଣ୍ଣ ଘଟଣା ପ୍ରବାହ ତାଙ୍କ ଆଖି ଆଗରେ ଘଟି ଚାଲିଲା, ତାହାକୁ ସେ କାବ୍ୟାୟିତ ନ କରି ରହି ପାରିଲେ ନାହିଁ । ସେହି କାବ୍ୟ ହିଁ ହେଲା ମହାକାବ୍ୟ ମହାଭାରତ—ସର୍ବସମ୍ମତ ଭାବରେ ପୃଥିବୀର ଶ୍ରେଷ୍ଠ କାବ୍ୟଗ୍ରନ୍ଥ । ଭାରତରେ ଯେତେ ଆଖ୍ୟାୟିକା ଦୃଷ୍ଟିଗୋଚର ହୁଏ, ସେ ସବୁର ମୂଳ ଉତ୍ସ ହେଉଛି ଏହି ମହାଭାରତ ।

ସମଗ୍ର ପୁରାଣ ସାହିତ୍ୟର ସ୍ରଷ୍ଟାଭାବରେ ମଧ୍ୟ ବ୍ୟାସଦେବଙ୍କୁ ସମ୍ମାନ ଦିଆ ଯାଇଥାଏ । ଅବଶ୍ୟ ଐତିହାସିକମାନଙ୍କର ଧାରଣା ଯେ ପୁରାଣ ସବୁ, ବ୍ୟାସଦେବଙ୍କ ବହୁପରେ ଗୁପ୍ତ ରାଜତ୍ୱବେଳେ ଲେଖା ଯାଇଛି । କିନ୍ତୁ ଏହି ଧାରଣା ଧର୍ମପ୍ରାଣ ଭାରତୀୟମାନଙ୍କ ଉପରେ ବିଶେଷ ପ୍ରଭାବ ପକାଇ ପାରିନାହିଁ । ଅନନ୍ତ ପୁରାଣର ସ୍ରଷ୍ଟା ଭାବରେ ଏବେ ମଧ୍ୟ ବ୍ୟାସଦେବଙ୍କ ସମ୍ମାନ ଅନସ୍ୱୀକାର୍ଯ୍ୟ ।

ବ୍ୟାସଦେବଙ୍କର ଆଉ ଏକ ମହାନ୍ କୃତି ହେଉଛି 'ବ୍ରହ୍ମସୂତ୍ର' । ଶ୍ରୀମଦ୍-ଭଗବଦ୍ ଗୀତା, ଉପନିଷଦ ଓ ବ୍ରହ୍ମସୂତ୍ର—ଏହି ତିନି ଗ୍ରନ୍ଥକୁ ଭାରତୀୟ ଦର୍ଶନର ପ୍ରସ୍ଥାନତ୍ରୟୀ ବା ତିନୋଟି ମୁଖ୍ୟ ପ୍ରତିପାଦକ ଗ୍ରନ୍ଥ ବୋଲି ଧରାଯାଏ । ଯେଉଁ ଅଦ୍ୱୈତ ଦର୍ଶନକୁ ଭାରତୀୟ ଚିନ୍ତାର ଶ୍ରେଷ୍ଠ ରତ୍ନରୂପେ ଗ୍ରହଣ କରାଯାଏ, ସେହି ଅଦ୍ୱୈତ ଦର୍ଶନର ମୂଳଭିତ୍ତି ହେଉଛି ଏହି ପ୍ରସ୍ଥାନ ତ୍ରୟୀ ।

ବେଦର ବରେଣ୍ୟ ସମ୍ପାଦକ ଓ ଉଦ୍ଧାରକ ଭାବେ, ମହାଭାରତ ମହାକାବ୍ୟର ମହନୀୟ ସ୍ରଷ୍ଟା ଭାବେ ଏବଂ ଅଦ୍ୱୈତ ଦର୍ଶନର ପ୍ରତିଷ୍ଠାତା ଭାବେ ଅକ୍ଷୟ କୀର୍ତ୍ତି ଅର୍ଜନ କରିଥିଲେ ମଧ୍ୟ ଭଗବାନ ବେଦବ୍ୟାସ ସନ୍ତୁଷ୍ଟ ହୋଇପାରି ନ ଥିଲେ । ବେଳେବେଳେ ତାଙ୍କର ମନେ ହେଉଥିଲା, ସତେଯେପରି ତାଙ୍କ କାମ ଅପୂର୍ଣ୍ଣ ରହିଯାଇଛି । ସେ ଭଲଭାବରେ ଜାଣିଥିଲେ ଯେ କଳିଯୁଗରେ ମନୁଷ୍ୟମାନେ ଅଳ୍ପାୟୁ ହେବେ ଏବଂ ବେଦବିହିତ ଧର୍ମ ଆଚରଣ କରିବାକୁ ଅସମର୍ଥ ହେବେ । ତେଣୁ କଳିଯୁଗର ମନୁଷ୍ୟ-ମାନଙ୍କୁ ସରଳ ଉପାୟରେ ମୁକ୍ତିର ବାଟ ଦେଖାଇବାପାଇଁ ତାଙ୍କ ହୃଦୟ ବ୍ୟାକୁଳ ହୋଇ ଉଠିଲା । ସେ ବିଷୟରେ ସେ ଗଭୀର ଚିନ୍ତା କରିବାକୁ ଲାଗିଲେ । ଦିନେ ସରସ୍ୱତୀ ନଦୀ ତଟରେ ଚିନ୍ତିତ ଅବସ୍ଥାରେ ସେ ବସିଛନ୍ତି, ଏହି ସମୟରେ ଦେବର୍ଷି ନାରଦ ସେଠାରେ ଆସି ପହଞ୍ଚିଲେ । ନାରଦଙ୍କୁ ନିଜ ମନ କଥା କହିବାରୁ ନାରଦ ବ୍ୟାସଦେବଙ୍କୁ ଉପଦେଶ ଛଳରେ ଭଗବାନଙ୍କର ଅପୂର୍ବ ଲୀଳା ଗାନ କରି ଶୁଣାଇଲେ । ଭଗବାନଙ୍କର ଲୀଳା ଶ୍ରବଣ କରିବା ମାତ୍ରେ ବ୍ୟାସଦେବଙ୍କର ହୃଦୟ ଆନନ୍ଦରେ ପୂରି ଉଠିଲା । ସେହି ସବୁ ଲୀଳାକୁ ଏକତ୍ର କରି ଅଠର ହଜାର ଶ୍ଳୋକରେ ସେ ରଚନା କଲେ ବିଖ୍ୟାତ ଭକ୍ତି ଗ୍ରନ୍ଥ "ଶ୍ରୀମଦ୍ଭାଗବତ" । କଳିଯୁଗର ମନୁଷ୍ୟଙ୍କୁ ମୁକ୍ତିର ପଥ ପ୍ରଦର୍ଶନ କରିବାପାଇଁ ଶ୍ରୀମଦ୍‌ଭାଗବତ ଶ୍ରେଷ୍ଠ ଗ୍ରନ୍ଥ ଭାବରେ ପରିଗଣିତ ହେଲା ।

ବ୍ୟାସଦେବ ଥିଲେ ଅନନ୍ୟ ପ୍ରତିଭାର ଅଧିକାରୀ । ସମଗ୍ର ମାନବ ସମାଜର ପରମଗୁରୁ ଭାବରେ ସେ ଏବେ ମଧ୍ୟ ଆମ୍ଭମାନଙ୍କର ଚିର ନମସ୍ୟ । ବିଶ୍ୱର ସାଂସ୍କୃତିକ ଇତିହାସରେ ତାଙ୍କ ପରି ମହାନ୍ ପ୍ରତିଭାର ଅଧିକାରୀ ପ୍ରକୃତରେ ବିରଳ ।

# ମହାମୁନି ଶୁକଦେବ

ମହାମୁନି ଶୁକଦେବ ଥିଲେ ମହର୍ଷି ବ୍ୟାସଦେବଙ୍କର ଯୋଗ୍ୟତମ ସନ୍ତାନ । ବ୍ୟାସଦେବଙ୍କର ସନ୍ତାନ ଭାବରେ ସେ ଯେତିକ ପ୍ରସିଦ୍ଧ ନୁହନ୍ତି, ତାହାଠାରୁ ଅଧିକ ପ୍ରସିଦ୍ଧ ନିଜର ଜ୍ଞାନ ଗରିମା ଯୋଗୁଁ । ଯେଉଁ ବ୍ୟାସଦେବଙ୍କୁ ବ୍ରହ୍ମା, ବିଷ୍ଣୁ ତଥା ମହେଶ୍ବରଙ୍କ ସଙ୍ଗେ ତୁଳନା କରାଯାଏ, ଯାହାଙ୍କୁ ବିଶାଳ ବୁଦ୍ଧିସମ୍ପନ୍ନ ବୋଲି ଶ୍ରୀମଦ୍‌ଭଗବଦ୍ ଗୀତା ପ୍ରାରମ୍ଭରେ ସ୍ତୁତି କରାଯାଇ ଅଛି । ସେହି ଅଦ୍ଭୁତ ପ୍ରତିଭାଶାଳୀ ବ୍ୟକ୍ତିର ସନ୍ତାନ ଶୁକଦେବ ଅନେକ ସ୍ଥଳରେ ଜ୍ଞାନଗରିମାରେ ନିଜ ପିତାଙ୍କୁ ମଧ୍ୟ ବଳିଯାଇ ଥିବାର ପ୍ରମାଣ ମିଳେ । ସେହି ଶୁକଦେବଙ୍କର ଜନ୍ମ ସମ୍ବନ୍ଧରେ ଅତି ମନୋହର କାହାଣୀ ପୁରାଣମାନଙ୍କରେ ଦୃଷ୍ଟି ଗୋଚର ହୁଏ ।

ଥରେ ମହର୍ଷି ବ୍ୟାସଦେବ ଓ ତାଙ୍କ ପତ୍ନୀ ବଟିକା ପୃଥ୍ୱୀ, ଜଳ, ଆକାଶ ଓ ବାୟୁ ପରି ଧୈର୍ଯ୍ୟଶୀଳ ଏବଂ ମହାତେଜସ୍ୱୀ ଗୋଟିଏ ପୁତ୍ର ଲାଭ କରିବାପାଇଁ ଭଗବାନ ଗୌରୀଶଙ୍କରଙ୍କର ବିହାରସ୍ଥଳୀ ସୁମେରୁ ପର୍ବତ ଉପରେ କଠୋର ତପସ୍ୟା କରିବାକୁ ଲାଗିଲେ । ତାଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଭଗବାନ ଶଙ୍କର ତାଙ୍କୁ ଏକ ତେଜସ୍ୱୀ ପୁତ୍ର ଲାଭ କରିବାପାଇଁ ବର ପ୍ରଦାନ କରିଥିଲେ । ଯଥା ସମୟରେ ମହାମୁନି ଶୁକଦେବ ବ୍ୟାସଦେବଙ୍କର ପୁତ୍ର ଭାବରେ ଜନ୍ମ ହୋଇଥିଲେ ।

ଏହି ଶୁକଦେବ ପୂର୍ବକାଳରେ ଭଗବାନଙ୍କର ନିତ୍ୟ ଗୋଲକ ଧାମରେ ଭଗବାନଙ୍କର ଆହ୍ଲାଦିନୀ ପରାଶକ୍ତି ଶ୍ରୀରାଧାଙ୍କର ଲୀଳାଶୁକ ଥିଲେ । ନିତ୍ୟ ଗୋଲକ ଧାମରେ ଅବସ୍ଥାନ କରୁଥିବାରୁ ସେ ଥିଲେ ଆନନ୍ଦଘନ ସ୍ୱରୂପ । ତାଙ୍କର ଅଙ୍ଗକାନ୍ତି ଥିଲା ନବଘନ ସ୍ୱରୂପ । ଲୋଚନ ଥିଲା କମଳ ସଦୃଶ ଏବଂ ସ୍ୱରୂପ ଥିଲା ସାକ୍ଷାତ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ସଦୃଶ । ଯେତେବେଳେ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ର ମର୍ତ୍ତ୍ୟଲୋକରେ ନିଜର ଲୀଳା ବ୍ୟକ୍ତ କରିବାପାଇଁ ବ୍ରଜଭୂମିରେ ଆବିର୍ଭୂତ ହେଲେ, ସେତେବେଳେ ଶ୍ରୀରାଧାଙ୍କର ଏହି ଲୀଳାଶୁକ ଗୋଲକ ଧାମରୁ ଉଡ଼ି ଉଡ଼ି ଆସି ଶିବଲୋକରେ ଉପସ୍ଥିତ ହେଲେ । ସେତେବେଳେ ଶିବ ଭଗବତୀ ପାର୍ବତୀଙ୍କୁ ଭଗବାନଙ୍କର ସେହି ଅଦ୍ଭୁତ ଲୀଳା

ଶୁଣାଉଥିଲେ, ଯାହା ଶ୍ରବଣ କଲେ ପ୍ରାଣୀ ଅକ୍ଳେଶରେ ଅମରତ୍ୱ ଲାଭ କରିଥାଏ । ପାର୍ବତୀ ମଝିରେ ମଝିରେ ହୁଁ କୃତ ପ୍ରଦାନ କରି ଶିବଙ୍କୁ ଭଗବତ୍ ଲୀଳା ବର୍ଣ୍ଣନରେ ଉତ୍ସାହ ପ୍ରଦାନ କରୁଥିଲେ । କ୍ରମେ ଭଗବତୀ ପାର୍ବତୀ ଭଗବତ୍-କଥା ଶ୍ରବଣରେ ଏପରି ତନ୍ମୟ ହୋଇଗଲେ ଯେ ତାଙ୍କର ଆତ୍ମବିସ୍ମୃତି ଘଟିଲା । ଫଳରେ ସେ ଆଉ ହୁଁ'କୃତ ଦେଇ ପାରିଲେ ନାହିଁ । ପାର୍ବତୀଙ୍କଠାରୁ ହୁଁ'କୃତ ନପାଇ କାଳେ ଶିବ ଭଗବତ୍ କଥା ବନ୍ଦ କରିଦେବେ, ସେଥିପାଇଁ ଲୀଳାଶୁକ ଏକ ବୃକ୍ଷ ଶାଖାରେ ବସି ହୁଁ'କୃତ ଦେବାକୁ ଲାଗିଲେ । ଶେଷରେ ଭଗବାନ ଶିବ ଯେତେବେଳେ ଜାଣି ପାରିଲେ ଯେ ଗୋଟିଏ ପକ୍ଷୀ ହୁଁ'କୃତ ପ୍ରଦାନ କରି ସମସ୍ତ କଥା ଶ୍ରବଣ କରିଅଛି, ସେତେବେଳେ ସେ ତ୍ରିଶୂଳ ଧରି ଲୀଳାଶୁକଙ୍କୁ ମାରିବାକୁ ଧାଇଁଲେ, କାରଣ ପକ୍ଷୀ ଦେହ ସେହି କଥାକୁ ଧାରଣ କରିବା ଉପଯୁକ୍ତ ନଥିଲା । ଲୀଳାଶୁକ ଉଡ଼ି ଉଡ଼ି ଆସି ବ୍ୟାସାଶ୍ରମରେ ପହଞ୍ଚିଲେ ଏବଂ ବ୍ୟାସ ପତ୍ନୀଙ୍କ ମୁଖରେ ପଶି ତାଙ୍କ ଉଦର ମଧ୍ୟକୁ ଚାଲିଗଲେ । ଅନନ୍ତର ଶିବ ଅନନ୍ୟୋପାୟ ହୋଇ ସେଠାରୁ ଫେରି ଯିବାକୁ ବାଧ୍ୟ ହେଲେ । ଫେରିଯିବା ପୂର୍ବରୁ ସେ ବ୍ୟାସ ପତ୍ନୀଙ୍କୁ ଆଶୀର୍ବାଦ କଲେ ଯେ ସେହି ଲୀଳାଶୁକ ଶୁକଦେବ ରୂପରେ ତାଙ୍କ ଗର୍ଭରୁ ଆବିର୍ଭୂତ ହୋଇ ସମସ୍ତ ଜ୍ଞାନର ଅଧିକାରୀ ହେବେ ।

ଶୁକଦେବ ମାତୃ ଗର୍ଭରେ ବାର ବର୍ଷ ଅବସ୍ଥାନ କରିଥିଲେ । ନିଜର ଯୋଗ-ଶକ୍ତି ଦ୍ୱାରା ସେ ଏପରି କ୍ଷୁଦ୍ର ରୂପ ଧାରଣ କରିଥିଲେ ଯେ ତାହା ଦ୍ୱାରା ମାତାଙ୍କୁ କୌଣସି କଷ୍ଟ ହୋଇ ନଥିଲା । ବ୍ୟାସଦେବ ତଥା ଅନ୍ୟ ଋଷିଗଣ ତାଙ୍କୁ ଗର୍ଭରୁ ବାହାରି ଆସିବାକୁ ବାରମ୍ବାର ଅନୁରୋଧ କରିଥିଲେ, କିନ୍ତୁ ଶୁକଦେବ ସେମାନଙ୍କର ଅନୁରୋଧ ରକ୍ଷା କରି ନଥିଲେ । ସେ କହୁଥିଲେ—"ଜୀବ ଯେପର୍ଯ୍ୟନ୍ତ ଗର୍ଭରେ ଅବସ୍ଥାନ କରେ, ସେପର୍ଯ୍ୟନ୍ତ ତା'ର ଜ୍ଞାନ ପ୍ରକାଶିତ ହୋଇଥାଏ । ଭଗବାନଙ୍କ ପ୍ରତି ତା'ର ଭକ୍ତି ଥାଏ ଏବଂ ସମସ୍ତ ପଦାର୍ଥରେ ବୈରାଗ୍ୟ ଦୃଷ୍ଟି ଥାଏ । କିନ୍ତୁ ସେ ଗର୍ଭରୁ ବହିର୍ଗତ ହେବା ମାତ୍ରେ ଭଗବାନଙ୍କର ଅଚିନ୍ତ୍ୟ ଶକ୍ତି ମାୟା ତାକୁ ମୋହିତ କରି ପକାଏ । ଫଳରେ ତା'ର ସମସ୍ତ ଜ୍ଞାନ ବିଦୂରିତ ହୋଇଯାଏ । ମାୟାମୋହିତ ହୋଇ ସେ ଦୁଃଖ-ରୂପ ଘୃଣିତ ସଂସାର ପ୍ରତି ଆସକ୍ତ ହୋଇପଡ଼େ । ଆସକ୍ତ ହେତୁ ସେ ନାନା ପ୍ରକାର ଅପକର୍ମ କରିଥାଏ । ଜନ୍ମ ମୃତ୍ୟୁର ଚକ୍ରରୁ ଉଦ୍ଧାର ପାଇବା ତା' ପକ୍ଷରେ କଠିନ ହୋଇପଡ଼େ । ତେଣୁ ମୁଁ ଗର୍ଭରୁ ବହିର୍ଗତ ହେବାକୁ ଇଚ୍ଛା କରୁନାହିଁ ।"

ଏକଥା ଜାଣି ଭଗବାନ ଶ୍ରୀକୃଷ୍ଣ ନିଜେ ଶୁକଦେବଙ୍କ ନିକଟକୁ ଆସି ତାଙ୍କୁ ଗର୍ଭରୁ ବାହାରି ଆସିବାକୁ ଅନୁରୋଧ କଲେ । ସେ ପ୍ରତିଶ୍ରୁତି ଦେଲେ ଯେ, ବ୍ୟାସ ନନ୍ଦନ ଗର୍ଭରୁ ନିର୍ଗତ ହେଲେ ମଧ୍ୟ ମାୟା ତାଙ୍କୁ ସ୍ପର୍ଶ କରି ପାରିବ ନାହିଁ ।

ଭଗବାନଙ୍କଠାରୁ ନିର୍ଭର ପ୍ରତିଶ୍ରୁତି ପାଇ ମହାମୁନି ଶୁକଦେବ ମାତୃ ଗର୍ଭରୁ ବହିର୍ଗତ ହେଲେ ।

ମାତୃ ଗର୍ଭରୁ ବହିର୍ଗତ ହୋଇ ସଙ୍ଗେ ସଙ୍ଗେ ଶୁକଦେବ ବନକୁ ଗମନ କଲେ । ଏପରି ସୁନ୍ଦର ସୁକୁମାର, ଜ୍ଞାନୀ ପୁତ୍ରକୁ ଜନ୍ମଲାଭ କରୁ କରୁ ସଂସାର ପ୍ରତି ବିରକ୍ତ ହୋଇ ବନକୁ ଗମନ କରିବାର ଦେଖି ମହର୍ଷି ବ୍ୟାସଦେବ ଅତ୍ୟନ୍ତ ବ୍ୟାକୁଳ ହୋଇ ପଡ଼ିଲେ । ସେ 'ପୁତ୍ର' 'ପୁତ୍ର' ବୋଲି ଡାକି ଶୁକଦେବଙ୍କୁ ଅନୁସରଣ କଲେ । କିନ୍ତୁ ଶୁକଦେବ ସ୍ୱଭାବତଃ ଥିଲେ ନିଃସ୍ପୃହ ଓ ନିର୍ଲିପ୍ତ । ତାଙ୍କ ମଧ୍ୟରେ ଲେଶମାତ୍ର ଭେଦବୁଦ୍ଧି ନଥିଲା । ସମ୍ପୂର୍ଣ୍ଣ ଭାବେ ଅଖଣ୍ଡ ଏକାତ୍ମ ଭାବରେ ସେ ପ୍ରତିଷ୍ଠିତ ଥିଲେ ।

ଶୁକଦେବ ଯେଉଁ ଦିଗକୁ ଗମନ କରୁଥିଲେ, ବ୍ୟାସଦେବ ତାଙ୍କୁ ଡାକି ଡାକି ସେହି ଦିଗକୁ ଗମନ କରୁଥିଲେ । କିଛି ଦୂର ଯିବାପରେ ବ୍ୟାସଦେବ ବନର ଏକ ଏକାନ୍ତ ସରୋବରରେ କେତେକ ଦେବାଙ୍ଗନାଙ୍କୁ ଉଲଗ୍ନ ହୋଇ ସ୍ନାନ କରୁଥିବାର ଦେଖିଲେ । ଦେବାଙ୍ଗନାଗଣ ଶୁକଦେବଙ୍କୁ ଦେଖି ନିଃସଙ୍କୋଚରେ ସେହି ଅବସ୍ଥାରେ ସରୋବରରୁ ଉଠି ଆସି ପ୍ରଣାମ କଲେ । କିନ୍ତୁ ବ୍ୟାସଦେବଙ୍କୁ ଦେଖିଲା କ୍ଷଣି ସେମାନେ ଲଜ୍ଜ୍ୟା ଅନୁଭବ କରି ଅତି ଶୀଘ୍ର ସରୋବରରୁ ଆସି ବସ୍ତ୍ର ପିନ୍ଧିବାକୁ ଲାଗିଲେ । ଏହା ଦେଖି ବ୍ୟାସଦେବ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ହେ ଭଦ୍ରେ ! ମୋର ପୁତ୍ର ଯୁବକ, ସୁନ୍ଦର ଓ ଦିଗମ୍ବର । ତାଙ୍କୁ ଦେଖି ତୁମ୍ଭମାନଙ୍କ ମନରେ କୌଣସି ବିକାର ଜାତ ହେଲା ନାହିଁ ? ତୁମ୍ଭେମାନେ ଉଲଗ୍ନ ତଥା ଅର୍ଦ୍ଧ ଉଲଗ୍ନ ବେଶରେ ଆସି ତାଙ୍କୁ ପ୍ରଣାମ କଲ । ତୁମ୍ଭମାନଙ୍କ ମନରେ ସାମାନ୍ୟ ଲଜ୍ଜା ଭାବ ମଧ୍ୟ ପ୍ରକାଶ ପାଇଲା ନାହିଁ । ଅଥଚ ମୋ' ପରି ସର୍ବଜନମାନ୍ୟ ଆତ୍ମଜ୍ଞାନ ସମ୍ପନ୍ନ ଏକ ବୃଦ୍ଧ ନିକଟରେ ତୁମ୍ଭେମାନେ ସଙ୍କୋଚ ଭାବ ପ୍ରକାଶ କରି ବସ୍ତ୍ର ପରିଧାନ କଲ ! ଏହାର କାରଣ କ'ଣ ? ତୁମ୍ଭେମାନେ କ'ଣ ମୋର ଚରିତ୍ର ବିଷୟରେ ସନ୍ଦିହାନ ?"

ବ୍ୟାସଦେବଙ୍କ କଥା ଶୁଣି ଦେବାଙ୍ଗନାଗଣ ଅତ୍ୟନ୍ତ ନମ୍ରତାର ସହିତ କହିଲେ—"ହେ ମହର୍ଷେ ! ଅମ୍ଭମାନଙ୍କୁ ଆପଣ କ୍ଷମା କରିବେ । ଆପଣ ଆତ୍ମଜ୍ଞାନ ସମ୍ପନ୍ନ ହେଲେ ମଧ୍ୟ ଆପଣଙ୍କ ମଧ୍ୟରେ ସ୍ତ୍ରୀ-ପୁରୁଷ ଭାବ ଅଛି । ଅମୁକ ଲୋକ ସ୍ତ୍ରୀ, ଅମୁକ ଲୋକ ପୁରୁଷ, ଏହା ଆପଣ ନିଶ୍ଚୟ ଚିହ୍ନିପାରିବେ । ତେଣୁ ଆପଣଙ୍କୁ ଦେଖି ଆମ୍ଭ ମଧ୍ୟରେ ଲଜ୍ଜ୍ୟାଭାବ ପ୍ରକାଶ ପାଇବା ଉଚିତ । କିନ୍ତୁ ଆପଣଙ୍କ ପୁତ୍ର ସ୍ତ୍ରୀ-ପୁରୁଷ ଭାବ ରହିତ । ତାଙ୍କ ନିକଟରେ ବିଶ୍ୱର ଯାବତୀୟ ବସ୍ତୁ ଏକ ପରି ପ୍ରତୀୟମାନ । ତାଙ୍କ ନିକଟରେ ବସ୍ତ୍ର ପିନ୍ଧିବା ଅଥବା ନ ପିନ୍ଧିବା ଏକା କଥା । ସେଥିପାଇଁ ବିନା ସଙ୍କୋଚରେ ଅମ୍ଭେମାନେ ତାଙ୍କୁ ପ୍ରଣାମ କଲୁ ।

ଦେବାଙ୍ଗନାଙ୍କ କଥା ଶୁଣି ମହର୍ଷି ବ୍ୟାସଦେବ ଭାବିଲେ, 'ଯେଉଁ ସମଦର୍ଶୀ ମହାପୁରୁଷଙ୍କ ନିକଟରେ ପିତା-ପୁତ୍ର ସମ୍ବନ୍ଧରେ କୌଣସି ଅର୍ଥ ନାହିଁ, ତାଙ୍କୁ ଗୃହକୁ ଫେରାଇ ଆଣିବା ବୃଥା ।' ଏହା ନିଶ୍ଚୟ କରି ବ୍ୟାସଦେବ ସ୍ୱ ଆଶ୍ରମକୁ ଫେରି ଆସିଲେ ।

ଆଶ୍ରମକୁ ଫେରି ଆସିଲେ ମଧ୍ୟ ବ୍ୟାସଦେବଙ୍କ ହୃଦୟ ପୁତ୍ର ସ୍ନେହରେ ପରିପୂର୍ଣ୍ଣ ହୋଇଥିଲା । ସେ ଚାହୁଁଥିଲେ ଯେ ଶୁକଦେବ କିଛିଦିନ ତାଙ୍କ ନିକଟରେ ରହି ଶାସ୍ତ୍ର-ଜ୍ଞାନ ଲାଭ କରିବା ଉଚିତ । ଯଦିଓ ସେ ବ୍ରହ୍ମନିଷ୍ଠ, ତଥାପି ସେ ଶ୍ରୋତ୍ରିୟ ନୁହନ୍ତି । ତେଣୁ ବ୍ୟାସଦେବ ତାଙ୍କୁ ଶ୍ରୋତ୍ରିୟ କରିବାପାଇଁ ଇଚ୍ଛା କରୁଥିଲେ । ସେ ଭଲଭାବେ ଜାଣିଥିଲେ ଯେ ଶୁକଦେବଙ୍କ ପରି ଆତ୍ମାରାମ ବିରକ୍ତ ପୁରୁଷଙ୍କୁ କେବଳ ଭଗବାନଙ୍କର ଦିବ୍ୟରୂପ ଓ ମଙ୍ଗଳମୟ ଚରିତ ହିଁ ଆକର୍ଷିତ କରିପାରେ । ତେଣୁ ସେ ନିଜର ଶିଷ୍ୟମାନଙ୍କୁ ଶ୍ରୀଶ୍ୟାମ ସୁନ୍ଦରଙ୍କର ପରମ ମନୋହର ସ୍ୱରୂପ ବର୍ଣ୍ଣନ କରୁଥିବା ଗୋଟିଏ ଶ୍ଳୋକ ଶିକ୍ଷା ଦେଇ ଆଦେଶ ଦେଇଥିଲେ ଯେ ସେମାନେ ଯେପରି ଅହରହ ସେହି ଶ୍ଳୋକ ମଧୁର ସ୍ୱରରେ ଗାନ କରନ୍ତି । ବ୍ରହ୍ମଚାରୀଗଣ ସମିଧା, ଫଳ, ପୁଷ୍ପ, କୁଶ ଆଦି ସଂଗ୍ରହ କରିବାକୁ ବନକୁ ଯିବା ସମୟରେ ସେହି ଶ୍ଳୋକ ଅତି ମଧୁର ସ୍ୱରରେ ଗାନ କରୁଥିଲେ । ଶ୍ରୀମଦ୍‌ଭାଗବତରେ ବର୍ଣ୍ଣିତ ସେହି ଶ୍ଳୋକଟି ହେଉଛି—

ବର୍ହାପୀଡ଼ଂ ନଟବରବପୁଃ କର୍ଣ୍ଣୟୋଃ କର୍ଣ୍ଣିକାରଂ
ବିଭ୍ରଦ୍ ବାସଃ କନକକପିଶଂ ବୈଜୟନ୍ତୀ ଚ ମାଲାମ୍ ।
ରନ୍ଧ୍ରାନ୍ ବେଣୋରଧରସୁଧୟା ପୂରୟନ୍ ଗୋପବୃନ୍ଦୈ-
ର୍ବୃନ୍ଦାରଣ୍ୟଂ ସ୍ୱପଦରମଣଂ ପ୍ରାବିଶଦ୍ ଗୀତକୀର୍ତ୍ତିଃ ।

(ଶ୍ରୀମଦ୍‌ଭାଗବତ, ୧୦।୨୧।୫)

ବ୍ରହ୍ମଚାରୀମାନଙ୍କ ମୁଖରୁ ଉପରୋକ୍ତ ଶ୍ଳୋକ ଶ୍ରବଣ କରି ଶୁକଦେବ ଅତ୍ୟନ୍ତ ମୁଗ୍ଧ ହୋଇ ପଡ଼ିଲେ । ସେ ବ୍ରହ୍ମଚାରୀମାନଙ୍କ ନିକଟକୁ ଆସି ଅନୁରୂପ ଶ୍ଳୋକ ଶିକ୍ଷା କରିବାପାଇଁ ଆଗ୍ରହ ପ୍ରକାଶ କଲେ । ତେଣୁ ବ୍ରହ୍ମଚାରୀଗଣ ତାଙ୍କୁ ବ୍ୟାସଦେବଙ୍କ ନିକଟକୁ ନେଇ ଆସିଲେ । ବ୍ୟାସଙ୍କ ନିକଟରେ ରହି ମହାମୁନି ଶୁକଦେବ ସମ୍ପୂର୍ଣ୍ଣ ଭାଗବତ ଶିକ୍ଷା କରିଥିଲେ ।

ମହୋପନିଷଦରୁ ପ୍ରମାଣ ମିଳେ ଯେ ଶୁକଦେବ ଆଜନ୍ମ ସନ୍ନ୍ୟାସୀ ହେଲେ ହେଁ ସଂସାର ବିଷୟରେ ଅଜ୍ଞ ନ ଥିଲେ । ବରଂ ସଂସାରର ଉତ୍ପତ୍ତି ଓ ବିଲୟ ବିଷୟରେ ପିତା ବ୍ୟାସଦେବଙ୍କୁ ସେ ଯାହା ପଚାରିଥିଲେ, ତା'ର ସନ୍ତୋଷଜନକ

ଉତ୍ତର ଦେଇ ନପାରି ପରମଜ୍ଞାନୀ ବ୍ୟାସଦେବଙ୍କୁ ଶେଷରେ ନିଜର ଅଜ୍ଞତା ସ୍ୱୀକାର କରିବାକୁ ପଡ଼ିଥିଲା । ଶୁକଦେବ ପଚାରିଥିଲେ—

"ସଂସାରାଡ଼ମ୍ବର ମିଦଂ କଥଂ ଅଭ୍ୟୁତ୍ଥିତଂ ମୁନେ ।
କଥଂଚ ପ୍ରଶମମ୍ ଯାତି କ ଯତ୍ର କସ୍ୟ କଦାବଦ ।।"

"ହେ ମୁନେ ! ସଂସାରର ଏହି ଯେ ଆଡ଼ମ୍ବର ଏହା କିପରି ଆବିର୍ଭୂତ ହେଲା ? ପୁଣି କାହାର କେଉଁ ସମୟରେ କିଭଳି ବା ଏହାର ନିବୃତ୍ତି ହୁଏ ?"

ବ୍ୟାସଦେବ ଏହାର ଉତ୍ତରରେ ଯାହା ସବୁ କହିଲେ, ଶୁକଦେବ ପୂର୍ବରୁ ସେ ସମସ୍ତ ଜାଣିଥିବାରୁ ପିତାଙ୍କ କଥାରେ ବିଶେଷ ଆଗ୍ରହ ପ୍ରକାଶ କଲେନାହିଁ । ତେଣୁ ବ୍ୟାସଦେବ ପୁନଶ୍ଚ କହିଲେ—"ମୁଁ ତୁମ ପ୍ରଶ୍ନର ଉତ୍ତର ଠିକ୍ ଭାବେ ଜାଣି ନାହିଁ । ମିଥିଳା ନଗରୀରେ ଜନକ ନାମକ ଯେଉଁ ରାଜା ଅବସ୍ଥାନ କରୁଛନ୍ତି, ତାଙ୍କୁ ଗୁରୁଭାବେ ବରଣ କଲେ ସେ ତୁମ ପ୍ରଶ୍ନର ଠିକ୍ ଠିକ୍ ଉତ୍ତର ଦେଇପାରିବେ । ଅତଏବ ତୁମେ ଅତି ଶୀଘ୍ର ମିଥିଳାକୁ ଯାଇ ଜନକଙ୍କଠାରୁ ଶିଷ୍ୟତ୍ୱ ଗ୍ରହଣ କର ।"

ପିତାଙ୍କ ଦ୍ୱାରା ଆଦିଷ୍ଟ ହୋଇ ଶୁକଦେବ ତତ୍‌କ୍ଷଣାତ୍ ମିଥିଳାପୁରୀକୁ ଗମନ କଲେ । ସେଠାରେ ତାଙ୍କୁ ନାନାବିଧ କଠୋର ପରୀକ୍ଷାର ସମ୍ମୁଖୀନ ହେବାକୁ ପଡ଼ିଥିଲା । ମିଥିଳାରେ ପହଞ୍ଚି ସେ ଯେତେବେଳେ ରାଜମହଲରେ ପ୍ରବେଶ କରିବାକୁ ଉଦ୍ୟମ କଲେ, ସେତେବେଳେ ଦ୍ୱାରପାଳ ତାଙ୍କୁ ବାଧା ପ୍ରଦାନ କଲା । ଦ୍ୱାରପାଳର ଏହି ଆଚରଣରେ ଶୁକଦେବ ଦୁଃଖିତ ହୋଇ ନଥିଲେ । ସ୍ୱଭାବତଃ ସେ ଥିଲେ ନିର୍ବିକାର ଓ ଶାନ୍ତଚିତ୍ତ । କ୍ଷୁଧା, ତୃଷ୍ଣା, ପ୍ରଚଣ୍ଡ ରୌଦ୍ରତାପ କିମ୍ବା ଦୀର୍ଘପଥ ଅତିକ୍ରମ ଜନିତ କ୍ଳାନ୍ତ କିଛି ହେଲେ ତାଙ୍କୁ ବିଚଳିତ କରିପାରି ନଥିଲା । ନିର୍ବିକାର ଚିତ୍ତରେ ରାଜମହଲର ଦ୍ୱାରଦେଶରେ ଦୀର୍ଘ ସମୟ ଧରି ସେ ଅପେକ୍ଷା କରି ରହିଲେ । ବହୁକ୍ଷଣ ପରେ ଆଉ ଜଣେ ଦ୍ୱାର ପାଳ ଆସି ବିଧିପୂର୍ବକ ତାଙ୍କର ପୂଜା ଅର୍ଚ୍ଚନା କଲା ଏବଂ ଅତ୍ୟନ୍ତ ଆଦରର ସହିତ ତାଙ୍କୁ ରାଜମହଲର ଏକ ସୁସଜ୍ଜିତ କୋଠରୀ ମଧ୍ୟକୁ ନେଇଗଲା । ମାନ, ଅପମାନ କିଛି ହେଲେ ସ୍ମରଣ ନକରି ସେ ସେହି କୋଠରୀରେ ବସି ଆତ୍ମ-ଚିନ୍ତନ କରିବାକୁ ଲାଗିଲେ । କିଛି ସମୟ ପରେ ତାଙ୍କୁ ଅନ୍ତଃପୁରରେ ଥିବା 'ପ୍ରମଦାବନ' ନାମକ ଗୋଟିଏ ସୁନ୍ଦର ଉଦ୍ୟାନ ମଧ୍ୟରେ ପହଞ୍ଚାଇ ଦିଆଗଲା । ସେଠାରେ ପରିକୃତ ଜଣ ସୁସଜ୍ଜିତା, ନବଯୌବନା ସୁନ୍ଦରୀ ତରୁଣୀ ବିଭିନ୍ନ ଭାବରେ ତାଙ୍କର ସେବା କରିବାକୁ ଲାଗିଲେ । ସେମାନେ ନୃତ୍ୟ, ଗୀତ ଏବଂ ଆଳାପ, ଆଲୋଚନାରେ ଅତ୍ୟନ୍ତ ନିପୁଣା ଥିଲେ । କିନ୍ତୁ ମହର୍ଷି ଶୁକଦେବ ସେମାନଙ୍କର ସେବାରେ ହର୍ଷ କିମ୍ବା କ୍ରୋଧ ପ୍ରକାଶ କରି ନଥିଲେ । ତାଙ୍କର ଅନ୍ତଃକରଣ ଥିଲା

ଅତ୍ୟନ୍ତ ବିଶୁଦ୍ଧ । ସେ ସର୍ବଥା ନିର୍ବିକାର ରହିଥିଲେ । ତଦନନ୍ତର ତାଙ୍କୁ ଦେବତା-ମାନଙ୍କର ବସିବା ଯୋଗ୍ୟ ଦିବ୍ୟ ରତ୍ନଜଡ଼ିତ ପଲଙ୍କ ଉପରେ ଶୟନ କରିବାପାଇଁ କୁହାଗଲା । ସେହି ପଲଙ୍କ ଉପରେ ବହୁମୂଲ୍ୟ ଶଯ୍ୟା ବିଛା ଯାଇଥିଲା । କିନ୍ତୁ ଶୁକଦେବ ସେହି ପବିତ୍ର ଆସନ ଉପରେ ବସି ମୋକ୍ଷ ତତ୍ତ୍ୱ ବିଷୟରେ ବିଚାର କରୁ କରୁ ଧ୍ୟାନସ୍ଥ ହୋଇ ପଡ଼ିଲେ । ରାତ୍ରିର ମଧ୍ୟଭାଗରେ ସେ ଶୟନ କଲେ ଏବଂ ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟା ତ୍ୟାଗ କରି ଶୌଚାଦି କ୍ରିୟା ସମ୍ପାଦନ କରିବା ପୂର୍ବରୁ ପୁନଶ୍ଚ ଧ୍ୟାନମଗ୍ନ ହେଲେ ।

ଏହିପରି ଶୁକଦେବଙ୍କର ପରୀକ୍ଷା ସମାପ୍ତ ହେଲା । ତତ୍ପରେ ଦିନ ପ୍ରଭାତରେ ସ୍ୱୟଂ ରାଜା ଜନକ ମନ୍ତ୍ରୀ ଓ ପୁରୋହିତଙ୍କ ସହିତ ତାଙ୍କ ନିକଟକୁ ଯାଇ ତାଙ୍କୁ ପୂଜା କଲେ ଏବଂ ନିଜ କୋଠରୀକୁ ନେଇ ଆସିଲେ । ସେଠାରେ ମହାମୁନି ଶୁକଦେବ ମହାରାଜା ଜନକଙ୍କଠାରୁ ଆଧ୍ୟାତ୍ମ ବିଦ୍ୟାର ଉପଦେଶ ଗ୍ରହଣ କରିଥିଲେ ଏବଂ ତାଙ୍କର ଶିଷ୍ୟ ହୋଇଥିଲେ ।

ସେ ସମୟରେ ପରୀକ୍ଷିତ ଥିଲେ ଜଣେ ପରମ ଭାଗବତ ରାଜା; କିନ୍ତୁ ବିଧିର ବିଧାନ ଅନୁସାରେ ସେ ଶାପଗ୍ରସ୍ତ ହୋଇ ପଡ଼ିଲେ ଏବଂ ଜାଣିବାକୁ ପାଇଲେ ଯେ ସାତଦିନ ପରେ ତକ୍ଷକ ସର୍ପ ତାଙ୍କୁ ଦଂଶନ କରିବ ଏବଂ ସେ ମୃତ୍ୟୁ ମୁଖରେ ପତିତ ହେବେ । ତେଣୁ ସାତ ଦିନ ଭିତରେ କିପରି ସେ ପରମାର୍ଥ ଲାଭର ଅଧିକାରୀ ହେବେ । ସେହି ବିଷୟ ଚିନ୍ତା କରିବାକୁ ଲାଗିଲେ । ଅବିଲମ୍ବେ ସେ ନିଜର ଜ୍ୟେଷ୍ଠ ପୁତ୍ର ଜନ୍ମେଜୟଙ୍କୁ ରାଜ୍ୟଭାର ପ୍ରଦାନ କରି ନିର୍ଜଳ ବ୍ରତ ଗ୍ରହଣ କଲେ ଏବଂ ଗଙ୍ଗାନଦୀ କୂଳକୁ ଚାଲି ଆସିଲେ । ଏହି ସମ୍ବାଦ ବିଦ୍ୟୁତ୍ ବେଗରେ ଦେଶ ଦେଶାନ୍ତରରେ ପ୍ରଚାରିତ ହୋଇଗଲା । ତେଣୁ ପରମ ଭାଗବତ ପରୀକ୍ଷିତଙ୍କୁ ଆଶୀର୍ବାଦ କରିବାପାଇଁ ଦୂର ଦୂରାନ୍ତରରୁ ଋଷିଗଣ ଆସି ଗଙ୍ଗାତଟରେ ଉପସ୍ଥିତ ହେଲେ । ସେହି ସମୟରେ ତୀର୍ଥ ଭ୍ରମଣ କରି କରି ମହାମୁନି ଶୁକଦେବ ମଧ୍ୟ ଅକସ୍ମାତ୍ ସେଠାରେ ଆସି ପହଞ୍ଚିଲେ । ବାଳକ ଶୁକଦେବଙ୍କୁ ଦେଖି ସମସ୍ତ ଋଷି ଛିଡ଼ା ହୋଇ ପଡ଼ିଲେ ଏବଂ ପରମ ସମ୍ମାନର ସହିତ ତାଙ୍କର ପୂଜା ଅର୍ଚ୍ଚନା କଲେ । ପରୀକ୍ଷିତ ମଧ୍ୟ ଶୁକଦେବଙ୍କୁ ଉଚ୍ଚାସନରେ ବସାଇ ତାଙ୍କର ସତ୍କାର କରିବାକୁ ଲାଗିଲେ । ଶୁକଦେବଙ୍କୁ ପରମାର୍ଥ ଜ୍ଞାନର ଉପଯୁକ୍ତ ଅଧିକାରୀ ବୋଲି ମନେକରି ପରୀକ୍ଷିତ ପ୍ରଶ୍ନ କଲେ—

"ଯୋଗୀଙ୍କ ମଧ୍ୟେ ତୁମ୍ଭେ ଗୁରୁ
ଯେହ୍ନେ ଅଚଳ ମହାମେରୁ ।
ଦେଖ ମୋ ଜୀବ ଯିବାକାଳେ,
କିବା ସାଧିବି ମରିବାକାଳେ ।

କିବା ଶୁଣିବ କର୍ଣ୍ଣପଥେ,
ସ୍ମରଣ କି କରିବ ଚିତ୍ତେ ।
କିବା ବଦନେ ଉଚ୍ଚାରଣ,
ଭଜିବ କାହାର ଚରଣ ।"

ଶୁକଦେବ ଉତ୍ତର ଦେଲେ—

"ଯେ ହରି ସର୍ବ ଘଟେ ପୂରେ,
ନିର୍ଲେପ ବାହ୍ୟ ଅଭ୍ୟନ୍ତରେ ।।
ତା'ର ମହିମା ଶୁଣି କର୍ଣ୍ଣେ ।।
ନାମକୁ ଉଚ୍ଚାର ବଦନେ ।।
ସ୍ମରଣ କରେ ହୃଦଗତେ,
ଯେବେ ଅଭୟ ଇଚ୍ଛା ଚିତ୍ତେ ।।
ଏ କଥା ସାଂଖ୍ୟ ଯୋଗେ ଜାଣି,
ସ୍ୱଧର୍ମ ନିଷ୍ଠା ପରମାଣି ।।
ଜନ୍ମର ଲାଭ ଏ ପ୍ରମାଣ ।
ଅନ୍ତେ ସ୍ମରଣ ନାରାୟଣ ।।

ମହାମୁନିଙ୍କ ଏହି ଉତ୍ତରରେ ପରୀକ୍ଷିତ ପଚାରିଲେ—"କିନ୍ତୁ ଏହି ନାରାୟଣ କିଏ ?"

ଏହିଠାରୁ ହିଁ ଆରମ୍ଭ ହେଲା ଶ୍ରୀମଦ୍‌ଭାଗବତ ବ୍ୟାଖ୍ୟାନ । ସାତଦିନ ଭିତରେ ସମ୍ପୂର୍ଣ୍ଣ ଭାଗବତ କଥା ଶୁଣାଇ ମହାମୁନି ଶୁକଦେବ ମହାରାଜା ପରୀକ୍ଷିତଙ୍କୁ ପରମାର୍ଥ ଲାଭର ଅଧିକାରୀ କରାଇ ପାରିଥିଲେ ।

ବାସ୍ତବିକ ଶୁକଦେବ ହେଉଛନ୍ତି ଭାରତୀୟ ଧର୍ମାକାଶରେ ଏକ ଉଜ୍ଜ୍ୱଳ ନକ୍ଷତ୍ର ।



# ମହର୍ଷି ଶୌନକ

ଶୌନକ ଥିଲେ ନୈମିଷାରଣ୍ୟର ଅଠାଅଶି ହଜାର ଊର୍ଦ୍ଧ୍ୱରେତା ବ୍ରହ୍ମବାଦୀ ଋଷିମାନଙ୍କ ମଧ୍ୟରେ ପ୍ରଧାନ ଋଷି । ଭୃଗୁ ବଂଶରେ ଉତ୍ପନ୍ନ ହୋଇଥିବାରୁ ତାଙ୍କୁ ଭାର୍ଗବ ଏବଂ ଶୁନକଙ୍କର ପୁତ୍ର ହୋଇଥିବାରୁ ତାଙ୍କୁ ଶୌନକ କୁହାଯାଉଥିଲା । ମହାଭାରତ ଓ ସମସ୍ତ ପୁରାଣ ସେ ମହାମୁନି ସୂତଙ୍କ ମୁଖରୁ ଶ୍ରବଣ କରିଥିଲେ । ଏପରି କୌଣସି ପୁରାଣ ନାହିଁ, ଯେଉଁଥିରେ କି ମହର୍ଷି ଶୌନକଙ୍କ କଥା ନାହିଁ । ପ୍ରତି ପୁରାଣ 'ଶୌନକ ଉବାଚ'ରୁ ହିଁ ଆରମ୍ଭ ହୋଇଥାଏ । ପୁରାଣମାନଙ୍କରୁ ଆମେ ବ୍ରତ ମାହାତ୍ମ୍ୟ, ତୀର୍ଥ ମହିମା ଆଦି ଯାହା କିଛି ଶ୍ରବଣ କରିଥାଉ, ତାହାସବୁ ଶୌନକଙ୍କର କୃପାର ଫଳମାତ୍ର । ଭଗବତ୍ କଥା ଶ୍ରବଣରେ ଶୌନକଙ୍କର ଆଗ୍ରହ ଥିଲା ସର୍ବାଧିକ । ତାଙ୍କର ସମସ୍ତ ସମୟ ଭଗବତ୍ କଥା ଶ୍ରବଣରେ ହିଁ ବ୍ୟୟିତ ହୋଇଥିଲା । ନିତ୍ୟକର୍ମ ସମାପ୍ତ କରି ସେ ଭଗବତ୍ କଥା ଶ୍ରବଣ କରିବାକୁ ବସି ଯାଉଥିଲେ ଏବଂ ପରମ ଆଗ୍ରହର ସହିତ ଭଗବାନଙ୍କର ଦିବ୍ୟ ଲୀଳାମୃତ ଶ୍ରବଣ କରୁଥିଲେ । କିପରି ପୁରାଣ ଶ୍ରବଣ କରିବା ଉଚିତ, ଭଗବତ୍ ଚରିତ୍ର ଶ୍ରବଣ କରି କିପରି ତାହାକୁ ଅନୁମୋଦନ କରିବା ଉଚିତ, ଶ୍ରବଣ ସମୟରେ କିପରି ଏକାଗ୍ର ଚିତ୍ତ ହେବା ଉଚିତ ଏବଂ ସମୟକୁ କିପରି ସଦୁପଯୋଗ କରିବା ଉଚିତ—ଏ ସମସ୍ତ କଥା ଆମେ ଶୌନକଙ୍କ ଚରିତ୍ରରୁ ହିଁ ଶିକ୍ଷାଲାଭ କରିଥାଉ । ଭଗବାନଙ୍କ ଭଜନରେ ତାଙ୍କର କି ପ୍ରକାର ନିଷ୍ଠା ଥିଲା, ତାହା ତାଙ୍କର ନିମ୍ନଲିଖିତ ବାଣୀରୁ ସହଜରେ ଅନୁମିତ ହୋଇଥାଏ—

ଆୟୁର୍ହରତି ବୈ ପୁଂସାମୁଦ୍ୟନ୍ନସ୍ତଂ ଚ ଯନ୍ନସୌ
ତସ୍ୟର୍ତେ ଯତ୍କ୍ଷଣୋ ନୀତ ଉତ୍ତମ ଶ୍ଳୋକ ବାର୍ତ୍ତୟା ।
ତରବଃ କିଂ ନ ଜୀବନ୍ତି ଭସ୍ତ୍ରାଃ କିଂ ନ ଶ୍ୱସନ୍ତ୍ୟୁତ
ନ ଖାଦନ୍ତି ନ ମେହନ୍ତି କିଂ ଗ୍ରାମ ପଶବୋଽପରେ ।
ଶ୍ୱବିଡ୍ ବରାହୋଷ୍ଟ୍ରଖରୈଃ ସଂସ୍ତୁତଃ ପୁରୁଷ ପଶୁଃ
ନ ଯତ୍ କର୍ଣ୍ଣ ପଥୋପେତୋ ଜାତୁ ନାମ ଗଦା ଗ୍ରଜଃ ।

(ଶ୍ରୀମଦ୍ଭାଗବତ, ୨।୩।୧୭—୧୯)

"ଯାହାର ସମସ୍ତ ଭଗବାନ ଶ୍ରୀକୃଷ୍ଣଙ୍କର ଗୁଣଗାନ କିମ୍ବା ଶ୍ରବଣରେ ବ୍ୟୟିତ ହୋଇଥାଏ, ତାହାଛଡ଼ା ଅନ୍ୟ ସମସ୍ତଙ୍କର ଆୟୁ ବ୍ୟର୍ଥରେ ଅତିବାହିତ ହୁଏ, ଭଗବାନ ସୂର୍ଯ୍ୟ ପ୍ରତିଦିନ ଉଦୟ ଓ ଅସ୍ତ ହୋଇ ସେମାନଙ୍କର ଆୟୁ ଅପହରଣ କରିଥାନ୍ତି । ଏ ସଂସାରରେ ବୃକ୍ଷମାନେ ମଧ୍ୟ ଜୀବନ ଧାରଣ କରନ୍ତି । କମାରଶାଳର ଭାତି କ'ଣ ନିଃଶ୍ୱାସ ପ୍ରଶ୍ୱାସ ନିଏ ନାହିଁ ? ଗ୍ରାମ ମଧ୍ୟରେ ବାସ କରୁଥିବା ଗୃହପାଳିତ ପଶୁ କ'ଣ ମନୁଷ୍ୟମାନଙ୍କ ପରି ଖାଇବା ,ପିଇବା କିମ୍ବା ମଳ, ମୂତ୍ର ତ୍ୟାଗ କରନ୍ତି ନାହିଁ ? ତେବେ ପଶୁ ଓ ମନୁଷ୍ୟ ଭିତରେ ପ୍ରଭେଦ କେଉଁଠି ? ଯିଏ ଭଗବାନ ଶ୍ରୀକୃଷ୍ଣଙ୍କର ଲୀଳା କଥା କେବେହେଲେ ଶ୍ରବଣ କରେନାହିଁ, ସେହି ନରରୂପୀ ପଶୁ କୁକୁର, ଗ୍ରାମ-ଶୂକର, ଓଟ, ଏବଂ ଗଧଠାରୁ ମଧ୍ୟ ହୀନ ।"

ବିଲେ ବତୋରୁକ୍ରମବିକ୍ରମାନ୍ ଯେ
ନ ଶୃଣ୍ୱତଃ କର୍ଣ୍ଣପୁଟେ ନରସ୍ୟ ।
ଜିହ୍ୱାସତୀ ଦାର୍ଦୁରିକେବ ସୂତ
ନ ଚୋପଗାୟତ୍ୟୁରୁଗାୟଗାଥାଃ ।।
ଭାରଃ ପରଂ ପଟ୍ଟକିରୀଟଜୁଷ୍ଟ-
ମପ୍ୟୁତ୍ତମାଙ୍ଗଂ ନ ନମେନ୍ମୁକୁନ୍ଦମ୍ ।
ଶାବୌ କରୌ ନୋ କୁରୁତଃ ସପର୍ଯ୍ୟାଂ
ହରେର୍ଲସତ୍ କାଞ୍ଚନ କଙ୍କଣୌ ବା ।।
ବର୍ହାୟିତେ ତେ ନୟନେ ନରାଣାଂ
ଲିଙ୍ଗାନି ବିଷ୍ଣୋର୍ନ ନିରୀକ୍ଷତୋ ଯେ ।
ପାଦୌ ନୃଣାଂ ତୌ ଦ୍ରୁମଜନ୍ମଭାଜୌ
କ୍ଷେତ୍ରାଣି ନାନୁବ୍ରଜତୋ ହରେର୍ଯୌ ।।
ଜୀବଞ୍ଛବୋ ଭାଗବତାଙ୍ଘ୍ରିରେଣୁଂ
ନ ଜାତୁ ମର୍ତ୍ତ୍ୟୋଽଭିଲଭେତ ଯସ୍ତୁ ।
ଶ୍ରୀବିଷ୍ଣୁପଦ୍ୟା ମନୁଜସ୍ତୁଲସ୍ୟାଃ
ଶ୍ୱସଞ୍ଛବୋ ଯସ୍ତୁ ନ ବେଦ ଗନ୍ଧମ୍ ।।

(ଶ୍ରୀମଦ୍ଭାଗବତ, ୨।୩।୨୦-୨୩)

"ହେ ସୂତ ! ମନୁଷ୍ୟର ଯେଉଁ କାନ ଭଗବାନ ଶ୍ରୀକୃଷ୍ଣଙ୍କର କଥା ଶ୍ରବଣ ନ କରେ, ତାହା ସର୍ପର ବିଲ ସଦୃଶ ଅଟେ । ଯେଉଁ ଜିଭ ଭଗବାନଙ୍କ ଲୀଳା ଗାନ ନ କରେ, ତାହା କଟର୍ କଟର୍ କରୁଥିବା ବେଙ୍ଗର ଜିଭ ସଦୃଶ ଅଟେ । ରହିବା

ଅପେକ୍ଷା ତାହା ନ ରହିବା ହିଁ ଭଲ । ଯେଉଁ ଶିର କେବେ ଭଗବାନ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ନମିତ ହୁଏ ନାହିଁ, ତାହା ରେଶମୀ ବସ୍ତ୍ରରେ ସୁସଜ୍ଜିତ ଓ ମୁକୁଟଯୁକ୍ତ ହେଲେ ମଧ୍ୟ ବୋଝ ସଦୃଶ ଅଟେ । ଯେଉଁ ହାତ ଭଗବାନଙ୍କ ସେବା ପୂଜା କରେ ନାହିଁ, ତାହା ସୁବର୍ଣ୍ଣ କଙ୍କଣରେ ଭୂଷିତ ହେଲେ ମଧ୍ୟ ଶବର ହାତ ସଦୃଶ ଅଟେ । ଯେଉଁ ଚକ୍ଷୁ ଭଗବାନଙ୍କ ମୂର୍ତ୍ତି, ତୀର୍ଥ, ନଦୀ ଆଦି ଦର୍ଶନ କରେ ନାହିଁ, ତାହା ମୟୂର ଚନ୍ଦ୍ରିକାର ଚକ୍ଷୁ ପରି ନିରର୍ଥକ ଅଟେ । ମନୁଷ୍ୟର ସେହି ପାଦ ଚଳନଶକ୍ତି ଯୁକ୍ତ ହୋଇ ମଧ୍ୟ ଚଳନଶକ୍ତି ରହିତ ବୃକ୍ଷ ସଦୃଶ ଅଟେ, ଯେଉଁ ପାଦ ଭଗବାନଙ୍କ ଲୀଳା-ସ୍ଥଳୀକୁ ଗମନ କରେ ନାହିଁ । ଯେଉଁ ମନୁଷ୍ୟ ଭଗବଦ୍ଭକ୍ତ ପ୍ରେମୀ ସନ୍ଥମାନଙ୍କର ଚରଣ ଧୂଳି ମସ୍ତକରେ ସ୍ଥାପନ ନ କରେ, ଜୀବନ ଧାରଣ କରିଥିଲେ ମଧ୍ୟ ସେ ସର୍ବଦା ମୃତ ବ୍ୟକ୍ତି ସଦୃଶ । ଯେଉଁ ମନୁଷ୍ୟ ଭଗବାନଙ୍କ ଚରଣରେ ଅର୍ପିତ ତୁଳସୀର ଗନ୍ଧ ଗ୍ରହଣ ନ କରେ, ଶ୍ୱାସ ପ୍ରଶ୍ୱାସ ନେଉଥିଲେ ମଧ୍ୟ ସେ ସର୍ବଦା ଶ୍ୱାସ ରହିତ ଶବ ସଦୃଶ ।”



# ଭକ୍ତ ମହର୍ଷି ମୁଦ୍‌ଗଲ

ଦକ୍ଷିଣ ମହାସାଗର କୂଳରେ ଥିବା ପରମ ପବିତ୍ର ଦେବୀପୁର ନିକଟରେ ଫୁଲଗ୍ରାମ ନାମରେ ଗୋଟିଏ ତୀର୍ଥସ୍ଥାନ ଅଛି । ଭଗବାନ ଶ୍ରୀରାମଚନ୍ଦ୍ର ସେହି ସ୍ଥାନରୁ ମହାସାଗରରେ ସେତୁ ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ । ପୂର୍ବକାଳରେ ସେହି ସ୍ଥାନରେ ବେଦୋକ୍ତ ନିୟମ ପାଳନ କରୁଥିବା ଜଣେ ମୁନି ଅବସ୍ଥାନ କରୁଥିଲେ । ତାଙ୍କର ନାମ ଥିଲି ମୁଦ୍‌ଗଲ । ଥରେ ମୁଦ୍‌ଗଲ ଭଗବାନ ବିଷ୍ଣୁଙ୍କୁ ପ୍ରସନ୍ନ କରିବାପାଇଁ ଗୋଟିଏ ଉତ୍ତମ ଯଜ୍ଞ ଅନୁଷ୍ଠାନ କଲେ । ତାଙ୍କର ଯଜ୍ଞ ଓ ଭକ୍ତି ଭାବରେ ସନ୍ତୁଷ୍ଟ ହୋଇ ଭଗବାନ ବିଷ୍ଣୁ ଗରୁଡ଼ ଆରୋହଣ ପୂର୍ବକ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ ଏବଂ ତାଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଦେଲେ । ଭଗବାନଙ୍କୁ ଦର୍ଶନ କରି ମହର୍ଷି ମୁଦ୍‌ଗଲ ପ୍ରେମ-ନିମଗ୍ନ ହୋଇଗଲେ । ଭଗବାନଙ୍କର କାନ୍ତି ନବୀନ ମେଘ ସଦୃଶ ଶ୍ୟାମବର୍ଣ୍ଣ ଥିଲା । ତାଙ୍କ ଶ୍ରୀଅଙ୍ଗରେ ପୀତାମ୍ବର ଶୋଭା ପାଉଥିଲା । ତାଙ୍କ ବକ୍ଷ ସ୍ଥଳରେ କୌସ୍ତୁଭ ମଣି ନିଜ ପ୍ରକାଶରେ ଉଦ୍‌ଭାସିତ ହେଉଥିଲା । ଚତୁର୍ଭୁଜରେ ସେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଧାରଣ କରିଥିଲେ । ଭଗବାନଙ୍କର ଏପରି ସୁରୁଚିର ରୂପଶୋଭା ଦର୍ଶନ କରି ମହର୍ଷି ମୁଦ୍‌ଗଲଙ୍କର ଶରୀର ରୋମାଞ୍ଚିତ ହୋଇଗଲା । ଅତ୍ୟନ୍ତ ଭକ୍ତିର ସହିତ ମଧୁର ସ୍ୱରରେ ଭଗବାନଙ୍କୁ ସ୍ତୁତି କରି ସେ କହିଲେ—"ଭଗବନ୍ ! ଆପଣ ହିଁ ବ୍ରହ୍ମା ରୂପରେ ସଂସାରକୁ ସୃଷ୍ଟି କରିଥାନ୍ତି । ଆପଣ ହିଁ ବିଷ୍ଣୁ ରୂପରେ ସମଗ୍ର ଜଗତକୁ ପାଳନ କରିଥାନ୍ତି ଏବଂ ରୁଦ୍ର ରୂପରେ ଜଗତର ଧ୍ୱଂସ ସାଧନ କରିଥାନ୍ତି । ହେ ନାରାୟଣ ! ଆପଣଙ୍କୁ ମୁଁ ବାରମ୍ବାର ନମସ୍କାର କରୁଛି । ମତ୍ସ୍ୟ, କଚ୍ଛପ ଆଦି ଅବତାର ଧାରଣ କରୁଥିବା ହେ ସଚ୍ଚିଦାନନ୍ଦମୟ ପ୍ରଭୁ ! ଆପଣଙ୍କୁ ମୋର ପ୍ରଣାମ । ହେ କରୁଣା ସିନ୍ଧୁ ! ଜଗଦୀଶ୍ୱର ! ଆପଣ ମୋତେ ରକ୍ଷା କରନ୍ତୁ । ମୁଁ ହେଉଛି ନିର୍ଲଜ୍ଜ, କୃପଣ, କ୍ରୂର, ଦାମ୍ଭୀ, ଦୁର୍ବଳ, ଲୋଭୀ, ବିଷୟ ଲୋଲୁପ ଓ ପରଶ୍ରୀକାତର । ଆପଣ ମୋର ଏହି ସମସ୍ତ ଦୋଷ ଦୂର କରନ୍ତୁ । ମୋତେ ଏପରି ଶକ୍ତି ଓ ସାହସ ଦିଅନ୍ତୁ, ଯାହା ଦ୍ୱାରା କି ମୁଁ ଆପଣଙ୍କର ପରମ ଭକ୍ତମାନଙ୍କର ପଥ ଅନୁସରଣ କରି ପାରିବି ଏବଂ ନିରନ୍ତର ଆପଣଙ୍କୁ ଧ୍ୟାନ କରି ପାରିବି ।"

ଭଗବାନ କହିଲେ—"ମୁଦ୍‌ଗଲ ! ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇଛି ଏବଂ ଏହି ଯଜ୍ଞରେ ତୁମର ହବିଷ୍ୟ ପ୍ରତ୍ୟକ୍ଷ ରୂପେ ଗ୍ରହଣ କରିବାପାଇଁ ଆସିଅଛି ।"

ମୁଦ୍‌ଗଲ କହିଲେ—"ଭଗବନ୍ ! ସେଥିପାଇଁ ମୁଁ ନିଜକୁ କୃତାର୍ଥ ମନେ-କରୁଛି । ମୋର ଧର୍ମପତ୍ନୀ ମଧ୍ୟ ନିଜକୁ ଧନ୍ୟ ମନେକରୁଛି । ଆପଣଙ୍କୁ ଦର୍ଶନ କରି ମୋର ଜନ୍ମ, ମୋର ଜୀବନ ସଫଳ ହୋଇଗଲା । ଆଜି ମୁଁ ମୋର ତପସ୍ୟାର ଫଳ ଲଭ କଲି । ଆଜି ମୋର କୁଳ, ମୋର ପୁତ୍ର, ମୋର ଘର, ମୋର ମମତାର ଆଶ୍ରୟଭୂତ ସବୁ କିଛି ଆପଣଙ୍କ ଶ୍ରୀଚରଣରେ ସମର୍ପିତ ହୋଇ ଧନ୍ୟ ହୋଇଗଲେ । ମୁନି ଋଷିଗଣ ଯାହାଙ୍କୁ ସର୍ବଦା ହୃଦୟରେ ଅନ୍ୱେଷଣ କରୁଥାନ୍ତି ସେହି ସାକ୍ଷାତ୍ ଭଗବାନ ମୋର ଯଜ୍ଞଶାଳାରେ ହବିଷ୍ୟ ଗ୍ରହଣ କରିବାକୁ ଉପସ୍ଥିତ ହୋଇଛନ୍ତି—ବାସ୍ତବିକ୍ ଏହା ମୋର କେତେ ବଡ଼ ସୌଭାଗ୍ୟ !"

ଏହା କହି ମହର୍ଷି ମୁଦ୍‌ଗଳ ଏକ ସୁସଜ୍ଜିତ ଆସନ ଉପରେ ଭଗବାନଙ୍କୁ ବସାଇ ଚନ୍ଦନ, ପୁଷ୍ପ ଆଦି ଉପଚାର ଦ୍ୱାରା ଅର୍ଘ୍ୟ ଅର୍ପଣ ପୂର୍ବକ ବିଧିବଦ୍ଧ ଭାବରେ ତାଙ୍କୁ ପୂଜା କରିବାକୁ ଲାଗିଲେ । ତା'ପରେ ସେ ଭଗବାନଙ୍କୁ ବଡ଼ ଶ୍ରଦ୍ଧାର ସହିତ ହବିଷ୍ୟାନ୍ନ ଅର୍ପଣ କଲେ । ଭକ୍ତ ବତ୍ସଳ ଭଗବାନ ଆନନ୍ଦର ସହିତ ପ୍ରେମୀ ଭକ୍ତର ହବିଷ୍ୟାନ୍ନ ନିଜ ହସ୍ତରେ ଭୋଜନ କଲେ । ଭଗବାନ ଭୋଜନ କରିବାରୁ ଅଗ୍ନି ସମେତ ସମସ୍ତ ଦେବତା ତୃପ୍ତ ହୋଇଗଲେ; ସମ୍ପୂର୍ଣ୍ଣ ଚରାଚର ପ୍ରାଣୀ ମଧ୍ୟ ସନ୍ତୁଷ୍ଟ ହୋଇଗଲେ । ତଦନନ୍ତର ଭଗବାନ ମୁଦ୍‌ଗଲ ମୁନିଙ୍କୁ କହିଲେ—"ହେ ମୁଦ୍‌ଗଲ ! ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇଛି ଏବଂ ତୁମକୁ କିଛି ବର ଦେବାକୁ ଚାହୁଁଛି । ତୁମର ଯାହା ଇଚ୍ଛା, ତାହା ମାଗିନିଅ ।"

ମୁଦ୍‌ଗଲ କହିଲେ—"ପ୍ରଭୋ ! ପ୍ରତ୍ୟକ୍ଷ ରୂପେ ଆପଣ ମୋତେ ଦର୍ଶନ ଦେଇ ମୋର ସେବା ସ୍ୱୀକାର କଲେ, ଏହା ମୋର ପରମ ସୌଭାଗ୍ୟ ! ଏହାଠୁ ଅଧିକ ମୁଁ ଆଉ କି ବର ମାଗିବି ? ତଥାପି ଆପଣଙ୍କ ଆଜ୍ଞା ପାଳନ କରିବାପାଇଁ ମୁଁ ଦୁଇଗୋଟି ବର ପ୍ରାର୍ଥନା କରୁଛି । ଆପଣଙ୍କଠାରେ ମୋର ସର୍ବଦା ନିଶ୍ଚଳ ଭକ୍ତି ରହୁ—ଏହା ମୋର ପ୍ରଥମ ବର । ଏହାଛଡ଼ା ମୁଁ ପ୍ରତିଦିନ ପ୍ରାତଃକାଳ ଓ ସାୟଂ-କାଳରେ ଆପଣଙ୍କର ସ୍ୱରୂପଭୂତ ଅଗ୍ନିଙ୍କର ତୃପ୍ତି ଓ ଆପଣଙ୍କର ପ୍ରୀତି ଉଦ୍ଦେଶ୍ୟରେ ଗୋଦୁଗ୍ଧରେ ହବନ କରିବାକୁ ଇଚ୍ଛା ପ୍ରକାଶ କରୁଛି । ମୋର ଏହି ଇଚ୍ଛା ପୂର୍ଣ୍ଣ ହେଉ—ଏହା ମୋର ଦ୍ୱିତୀୟ ବର ।"

ଭକ୍ତବାଞ୍ଛାକଳ୍ପତରୁ ଭଗବାନ ପ୍ରେମୀ ଭକ୍ତ ମୁଦ୍‌ଗଲଙ୍କର ଉପରୋକ୍ତ ଦୁଇ ଇଚ୍ଛା ପୂର୍ଣ୍ଣ କରିଥିଲେ । ସେ ବିଶ୍ୱକର୍ମା ଦ୍ୱାରା ଗୋଟିଏ ସରୋବର ନିର୍ମାଣ କରାଇଲେ

ଏବଂ ସୁରଭିଙ୍କୁ ତାକୁ ଆଜ୍ଞା ଦେଲେ—"ତୁମେ ପ୍ରତିଦିନ ପ୍ରାତଃକାଳ ଓ ସାୟଂ-କାଳରେ ଆସି ନିଜ କ୍ଷୀର ଦ୍ୱାରା ଏହି ସରୋବରକୁ ପୂର୍ଣ୍ଣ କରିବ।" ସୁରଭି ଆନନ୍ଦର ସହିତ ଭଗବାନଙ୍କର ନିର୍ଦ୍ଦେଶ ସ୍ୱୀକାର କଲେ।

ତଦନନ୍ତର ଭଗବାନ ମୁଦ୍‌ଗଲଙ୍କୁ କହିଲେ—"ହେ ମହର୍ଷେ ! ଦେହାବସାନ ପରେ ସମସ୍ତ ବନ୍ଧନରୁ ମୁକ୍ତ ହୋଇ ତୁମେ ମୋର ପରମ ଧାମକୁ ଆଗମନ କରିବ।" ଏହା କହି ଭଗବାନ ଅନ୍ତର୍ଦ୍ଧାନ ହୋଇଗଲେ।

ମହର୍ଷି ମୁଦ୍‌ଗଲ ଆଜୀବନ ଯଜ୍ଞ-ହୋମ ଦ୍ୱାରା ଭଗବାନଙ୍କର ଆରାଧନା କରିଥିଲେ ଏବଂ ଅନ୍ତକାଳରେ ସାଯୁଜ୍ୟ ମୁକ୍ତି ପ୍ରାପ୍ତ ହୋଇଥିଲେ। ତାଙ୍କର ଜୀବନ-କାଳ ମଧ୍ୟରେ ପ୍ରତିଦିନ ସୁରଭି ତାଙ୍କ ଆଶ୍ରମକୁ ଆସି ଆଶ୍ରମ ନିକଟରେ ଥିବା ସରୋବରକୁ କ୍ଷୀରରେ ପୂର୍ଣ୍ଣ କରୁଥିଲେ। ସେହି ସରୋବର ଏବେ କ୍ଷୀର ସାଗର ନାମରେ ସୁପ୍ରସିଦ୍ଧ ହୋଇ ପରମ ତୀର୍ଥରେ ପରିଣତ ହୋଇଅଛି ଏବଂ ଭକ୍ତ ମହର୍ଷି ମୁଦ୍‌ଗଲଙ୍କର ମୂର୍ତ୍ତିମାନ ଯଶ ପ୍ରଚାର କରୁଅଛି।



# ଗୁରୁଭକ୍ତ ଆରୁଣି ବା ଉଦ୍ଦାଳକ

ପ୍ରାଚୀନ କାଳରେ ଆଜିକାଲି ପରି ବିଦ୍ୟାଳୟ, ହାଇସ୍କୁଲ, ପାଠଶାଳା କିମ୍ବା କଲେଜ ଆଦି କିଛି ନ ଥିଲା । ବିଦ୍ୱାନ୍ ତପସ୍ୱୀ ଗୁରୁ ଜଙ୍ଗଲରେ ଅବସ୍ଥାନ କରୁଥିଲେ ଏବଂ ଶିଷ୍ୟମାନେ ତାଙ୍କ ନିକଟକୁ ବିଦ୍ୟା ଶିକ୍ଷା କରିବାକୁ ଯାଉଥିଲେ । କିନ୍ତୁ ସେଠାରେ ଶିଷ୍ୟମାନଙ୍କୁ ଆଜିକାଲି ପରି ଗୃର ଛ' ଘଣ୍ଟା ବନ୍ଧି ଧରି ପଢ଼ିବାକୁ ପଡୁ ନ ଥିଲା । ଗୁରୁ ଶିଷ୍ୟମାନଙ୍କୁ ଆଶ୍ରମର ବିଭିନ୍ନ କାର୍ଯ୍ୟ କରିବାକୁ ନିର୍ଦ୍ଦେଶ ଦେଉଥିଲେ ଏବଂ ନିଜକୁ ମଧ୍ୟ କାର୍ଯ୍ୟରେ ନିଯୁକ୍ତ କରୁଥିଲେ । କାର୍ଯ୍ୟ କରିବା ସମୟରେ ଉପଦେଶ ଛଳରେ ସେ ଶିଷ୍ୟମାନଙ୍କୁ ଅନେକ ପ୍ରକାର ଶିକ୍ଷା ପ୍ରଦାନ କରୁଥିଲେ । ଯଦି କୌଣସି ଶିଷ୍ୟ ଗୁରୁଭକ୍ତି ବଳରେ ଗୁରୁଙ୍କର ବିଶେଷ କୃପା ଲାଭ କରୁଥିଲା, ତେବେ ସେ ସର୍ବବିଦ୍ୟାରେ ସୁପଣ୍ଡିତ ହେଉଥିଲା ।

ଏହିପରି ଜଣେ ଆଦର୍ଶ ଗୁରୁ ଥିଲେ ଆୟୋଦ ଧୌମ୍ୟ ନାମକ ସୁପ୍ରସିଦ୍ଧ ଋଷି । ତାଙ୍କ ନିକଟରେ ଆରୁଣି, ଉପମନ୍ୟୁ ଓ ବେଦ ନାମକ ତିନିଜଣ ଶିଷ୍ୟ ବିଦ୍ୟାଶିକ୍ଷା କରୁଥିଲେ । ଧୌମ୍ୟ ଋଷି ନିଜେ ବଡ଼ ପରିଶ୍ରମୀ ଥିବାରୁ ଶିଷ୍ୟମାନଙ୍କୁ ନାନାପ୍ରକାର କଠିନ କାର୍ଯ୍ୟରେ ନିଯୁକ୍ତ କରୁଥିଲେ । କିନ୍ତୁ ତାଙ୍କର ଶିଷ୍ୟଗଣ ଏପରି ଗୁରୁଭକ୍ତ ଥିଲେ ଯେ ଗୁରୁ ଯାହା ଆଜ୍ଞା ଦେଉଥିଲେ, ତାହା ସେମାନେ ବଡ଼ ତତ୍ପରତାର ସହିତ ପାଳନ କରୁଥିଲେ । ସେମାନେ କେବେ ଗୁରୁଙ୍କ ଆଜ୍ଞା ଉଲଙ୍ଘନ କରୁ ନ ଥିଲେ । ଧୌମ୍ୟଙ୍କର ଶାସନ ଏତେ କଡ଼ା ଥିଲା ଯେ ତାଙ୍କ ନିକଟକୁ ଅଧିକ ବିଦ୍ୟାର୍ଥୀ ଆସିବାକୁ ସାହସ କରିପାରୁ ନ ଥିଲେ । କିନ୍ତୁ ଯେଉଁମାନେ ଆସୁଥିଲେ, ସେମାନେ ଜଣେ ଜଣେ ପକ୍କା ମଣିଷ ହୋଇ ଗୃହକୁ ଫେରୁଥିଲେ । ଧୌମ୍ୟଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଉପରୋକ୍ତ ତିନିଜଣ ଶିଷ୍ୟ ଆଦର୍ଶ ଗୁରୁଭକ୍ତ ଭାବରେ ସୁପ୍ରସିଦ୍ଧ ହୋଇଥିଲେ ।

ଆରୁଣି ପାଞ୍ଚାଳ ଦେଶରୁ ଆସି ଧୌମ୍ୟଙ୍କ ନିକଟରେ ବିଦ୍ୟା ଶିକ୍ଷା କରୁଥିଲା । ଦିନକର କଥା । ସେଦିନ ଖୁବ୍ ଜୋର୍‌ରେ ବର୍ଷା ହେଉଥିଲା । ଧୌମ୍ୟ ଋଷି ଆରୁଣିକୁ ଡାକି କହିଲେ—"ଆରୁଣି ! ତୁ ଶୀଘ୍ର କ୍ଷେତକୁ ଚାଲିଯା । ଯଦି କୌଣସି ସ୍ଥାନରେ କ୍ଷେତର ବନ୍ଧ ଭାଙ୍ଗି ଯାଇଥାଏ, ତେବେ ତାହା ମରାମତି କରି ଦେବୁ ।

ଯେପରିକି,କ୍ଷେତରୁ ଜଳ ବାହାରକୁ ବାହାରି ନ ଯାଏ । କ୍ଷେତରୁ ଜଳ ବାହାରିଗଲେ ଫସଲ ଭଲ ହେବ ନାହିଁ । ଭଲ ଫସଲପାଇଁ ଜଳ କ୍ଷେତରେ ହିଁ ଶୁଖିବା ଉଚିତ ।

ଗୁରୁଙ୍କ ଆଜ୍ଞା ପାଳନ କରି ଆରୁଣି କ୍ଷେତକୁ ଗମନ କଲା । ସେତେବେଳେ ମୂଷଳ ଧାରାରେ ବର୍ଷା ହେଉଥିଲା । କ୍ଷେତରେ ପହଞ୍ଚି ଆରୁଣି ଦେଖିଲା, କ୍ଷେତ ଜଳପୂର୍ଣ୍ଣ ହୋଇଛି; କିନ୍ତୁ ଗୋଟିଏ ଜାଗାରେ ବନ୍ଧ ଭାଙ୍ଗି ଯାଇଛି । ଜଳର ପ୍ରବଳ ସ୍ରୋତ ହେତୁ ବେଳକୁ ବେଳ ସେହି ଜାଗାରେ ବନ୍ଧ ଅଧିକରୁ ଅଧିକ ଭାଙ୍ଗିବାରେ ଲାଗିଛି, ଫଳରେ ଜଳ ଖୁବ୍ ବେଗରେ ବାହାରକୁ ବାହାରି ଯାଉଛି । ବନ୍ଧ ଭାଙ୍ଗି ଥିବାର ଦେଖି ଆରୁଣି ଫାଉଡ଼ା ସାହାଯ୍ୟରେ ମାଟି ଆଣି ବନ୍ଧ ବାନ୍ଧିବାକୁ ବହୁତ ଚେଷ୍ଟା କଲା । କିନ୍ତୁ ଯେତେ ମାଟି ପକାଇଲେ ମଧ୍ୟ ସେ ବନ୍ଧ ବାନ୍ଧି ପାରିଲା ନାହିଁ । ଜଳର ପ୍ରବଳ ସ୍ରୋତରେ ମାଟି ସବୁ ଧୋଇ ହୋଇଗଲା । ଏହା ଦେଖି ଆରୁଣି ବଡ଼ ଚିନ୍ତିତ ହୋଇ ପଡ଼ିଲା । ସେ ଭାବିଲା, "ଗୁରୁ ଆଜ୍ଞା ଦେଇଛନ୍ତି, ଯେମିତି ହେଲେ କ୍ଷେତରେ ଜଳ ରଖିବାକୁ ପଡ଼ିବ । କିନ୍ତୁ ବେଳକୁ ବେଳ ଯେ କ୍ଷେତରୁ ଜଳ ବାହାରକୁ ବାହାରି ଯାଉଛି ।" ବହୁତ ସମୟ ଚିନ୍ତା କରିବା ପରେ ଶେଷରେ ଆରୁଣି ମନରେ ଏକ ଖିଆଲ୍ ପଶିଲା । ସେ ଫାଉଡ଼ାକୁ ବନ୍ଧ ଉପରେ ରଖି ଦେଇ ଭାଙ୍ଗି ଯାଇଥିବା ବନ୍ଧକୁ ଲାଗି ଶୋଇ ପଡ଼ିଲା । ସେ ବନ୍ଧକୁ ଲାଗି ଶୋଇବା ଫଳରେ ବନ୍ଧର ଫାଟ ବନ୍ଦ ହୋଇଗଲା; ଫଳରେ ଜଳ ଆଉ ବାହାରକୁ ବାହାରି ପାରିଲା ନାହିଁ ।

କିଛି ସମୟ ପରେ ବର୍ଷା ବନ୍ଦ ହୋଇଗଲା । କିନ୍ତୁ କ୍ଷେତରେ ଜଳ ଭରପୂର ହୋଇ ରହିଥିଲା । ଆରୁଣି ଦେଖିଲା, ସେ ଯଦି ବନ୍ଧକୁ ଛାଡ଼ି ଉଠିଯିବ, ତେବେ ବନ୍ଧର ଫାଟ ଦେଇ ସବୁତକ ଜଳ କ୍ଷେତରୁ ବାହାରକୁ ବାହାରି ଯିବ । ତେଣୁ ସେ ଚୁପ୍‌ଚାପ୍ ବନ୍ଧକୁ ଲାଗି ପାଣି ଭିତରେ ଶୋଇ ରହିଲା । ଧୀରେ ଧୀରେ ସମସ୍ତ ଅତିକ୍ରାନ୍ତ ହୋଇ ରାତି ହୋଇଗଲା ।

ସନ୍ଧ୍ୟା ସମୟରେ ଗୁରୁ ଧୌମ୍ୟ ସମସ୍ତ ଶିଷ୍ୟମାନଙ୍କୁ ଏକତ୍ରିତ କଲେ । କିନ୍ତୁ ସେମାନଙ୍କ ମଧ୍ୟରେ ଆରୁଣି ନ ଥିଲା । ଗୁରୁ ପଚାରିଲେ—"ଆରୁଣି କୁଆଡ଼େ ଯାଇଛି ?" ଶିଷ୍ୟମାନେ କହିଲେ—"ଭଗବନ୍ ! ଆପଣ ତ ତାକୁ ସକାଳେ କ୍ଷେତରେ ବନ୍ଧ ବାନ୍ଧିବାକୁ ପଠାଇଥିଲେ ।" ଗୁରୁ କହିଲେ—"ସକାଳୁ ଏ ପର୍ଯ୍ୟନ୍ତ ସେ ଆସି ନାହିଁ ? ଚାଲ, ସମସ୍ତେ ତାକୁ ଖୋଜିବାକୁ ଯିବା ।"

ଏହା କହି ଧୌମ୍ୟ ଶିଷ୍ୟମାନଙ୍କୁ ଧରି ଆରୁଣିକୁ ଖୋଜିବାକୁ ଗଲେ । ସମସ୍ତେ ଏଣେତେଣେ ଆରୁଣିକୁ ବହୁତ ଖୋଜିଲେ, କିନ୍ତୁ କେଉଁଠାରେ ହେଲେ

ତାକୁ ପାଇଲେ ନାହିଁ । ଶେଷରେ ଧୌମ୍ୟ ଖୁବ୍ ଜୋର୍‌ରେ ଡାକିଲେ—"ଆରୁଣି, ତୁ କେଉଁଠି ଅଛୁ ? ଆମେ ତୋତେ ଖୋଜିବାକୁ ଆସିଛୁ ।"

ଦୂରରୁ ଆରୁଣି ପୂର୍ବପର ପାଣିରେ ଶୋଇ ଉତ୍ତର ଦେଲା—"ଗୁରୁଦେବ ! ମୁଁ ଏଠାରେ କ୍ଷେତର ଭଙ୍ଗା ବନ୍ଧକୁ ଲାଗି ଶୋଇଛି ।"

ଯେଉଁ ଦିଗରୁ ଆରୁଣିର ସ୍ୱର ଆସୁଥିଲା, ସେହି ଦିଗକୁ ମହର୍ଷି ଧୌମ୍ୟ ଶିଷ୍ୟମାନଙ୍କୁ ନେଇ ଗମନ କଲେ । କ୍ଷେତ ନିକଟରେ ପହଞ୍ଚି ସମସ୍ତେ ଦେଖିଲେ, ଆରୁଣି ଭଙ୍ଗା ବନ୍ଧକୁ ଲାଗି ପାଣି ଭିତରେ ଶୋଇଛି ଓ ଜଳକୁ ଅଟକାଇ ଦେଇଛି । ଏ ଦୃଶ୍ୟ ଦେଖି ସମସ୍ତେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ଧୌମ୍ୟ ସ୍ନେହସିକ୍ତ ବାକ୍ୟରେ କହିଲେ—"ଆରୁଣି ! ଶୀଘ୍ର ପାଣିରୁ ଉଠିଆ ।"

ଗୁରୁଙ୍କ ଆଜ୍ଞା ପାଳନ କରି ଆରୁଣି ପାଣି ଭିତରୁ ଆସି ଧୌମ୍ୟଙ୍କ ପାଦ ତଳେ ପ୍ରଣାମ କଲା । ତାହାର ଏପରି ଅପୂର୍ବ ଗୁରୁଭକ୍ତି ଦେଖି ଧୌମ୍ୟ ଋଷି ଆନନ୍ଦରେ ବିହ୍ୱଳ ହୋଇ ପଡ଼ିଲେ । ଅତି ଶୀଘ୍ର ସେ ଆରୁଣିକୁ ପାଦତଳୁ ଉଠାଇ କୁଣ୍ଢାଇ ପକାଇଲେ ଏବଂ ଆଶୀର୍ବାଦ ଦେଇ କହିଲେ—"ଆରୁଣି ! ମୁଁ ତୋର ଗୁରୁ ଭକ୍ତିରେ ଅତ୍ୟନ୍ତ ପ୍ରସନ୍ନ ହୋଇଛି । ମୁଁ ତୋତେ ଆଶୀର୍ବାଦ କରୁଛି, କୌଣସି ଶାସ୍ତ୍ର ଅଧ୍ୟୟନ ନ କରି ମଧ୍ୟ ତୁ ସର୍ବଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କରିବୁ । ସଂସାରରେ ତୋର ଯଶ ପରିବ୍ୟାପ୍ତ ହେବ । ତୁ ପରମ ଭକ୍ତରେ ପରିଣତ ହୋଇ ଭଗବାନଙ୍କର ଦିବ୍ୟ କୃପା ଲାଭ କରିବାକୁ ସମର୍ଥ ହେବୁ । ଆଜିଠାରୁ ତୋର ନାମ 'ଉଦ୍ଦାଳକ' ହେବ ।

ଭବିଷ୍ୟତ କାଳରେ ଏହି ଆରୁଣି ମୁନି ଉଦ୍ଦାଳକ ନାମରେ ସୁପ୍ରସିଦ୍ଧ ହୋଇଥିଲେ ।

# ଗୁରୁଭକ୍ତ ଉପମନ୍ୟୁ

ମହର୍ଷି ଆୟୋଦ ଧୌମ୍ୟଙ୍କର ଦ୍ୱିତୀୟ ଶିଷ୍ୟର ନାମ ଥିଲା ଉପମନ୍ୟୁ । ଉପମନ୍ୟୁ ହାତରେ ଗୁରୁ ଗାଈ ଚରାଇବାର ଦାୟିତ୍ୱ ଅର୍ପଣ କରିଥିଲେ । ତେଣୁ ପ୍ରତ୍ୟହ ପ୍ରାତଃକାଳରେ ଉପମନ୍ୟୁ ଧେନୁପଲ ନେଇ ଜଙ୍ଗଲକୁ ଗମନ କରୁଥିଲା ଏବଂ ସାରାଦିନ ଜଙ୍ଗଲରେ ଗାଈମାନଙ୍କୁ ଚରାଉଥିଲା । ରାତି ହେଲେ ସେ ଗୁରୁ ଗୃହକୁ ଫେରି ଆସୁଥିଲା । ଦିନେ ଗୁରୁ ଉପମନ୍ୟୁକୁ ଖୁବ୍ ହୃଷ୍ଟପୁଷ୍ଟ ଦେଖି ପଚାରିଲେ— "ଉପମନ୍ୟୁ ! ମୁଁ ତ ତୋତେ ଖାଇବାକୁ ପ୍ରାୟ କିଛି ଦେଉନାହିଁ । ତୁ ଏପରି ହୃଷ୍ଟପୁଷ୍ଟ ହୋଇଛୁ କିପରି ?"

ଉପମନ୍ୟୁ ଉତ୍ତର ଦେଲା—"ଗୁରୁଦେବ ! ଭିକ୍ଷା କରି ମୁଁ ମୋର ଶରୀର ରକ୍ଷଣ କରୁଛି ।"

ଗୁରୁ କହିଲେ—"ଗୁରୁଙ୍କୁ ଅର୍ପଣ ନ କରି ଭିକ୍ଷାନ୍ନ ଭୋଜନ କରିବା ପାପ । ତେଣୁ ଆଜିଠାରୁ ତୋତେ ଯାହା ଭିକ୍ଷା ମିଳିବ, ତାହା ପ୍ରଥମେ ମୋତେ ଅର୍ପଣ କରିବୁ । ମୁଁ ତୋତେ ଯେତିକି ଦେବି, କେବଳ ସେତିକି ଭୋଜନ କରିବୁ ।"

ଉପମନ୍ୟୁ ଅତ୍ୟନ୍ତ ଭକ୍ତିର ସହିତ ଗୁରୁ ଆଜ୍ଞା ସ୍ୱୀକାର କଲା ।

ସେହିଦିନଠାରୁ ପ୍ରତିଦିନ ସେ ଯାହା ଭିକ୍ଷା ପାଏ, ତାହା ଗୁରୁଙ୍କୁ ଅର୍ପଣ କରେ ।

ଗୁରୁ ତ ଉପମନ୍ୟୁକୁ ପରୀକ୍ଷା କରୁଥିଲେ । ତେଣୁ ଉପମନ୍ୟୁ ଯାହା ଭିକ୍ଷା ଆଣି ଦିଏ, ସବୁତକ ସେ ନିଜପାଇଁ ରଖି ଦିଅନ୍ତି, ଉପମନ୍ୟୁକୁ କିଛି ହେଲେ ଖାଇବାକୁ ଦିଅନ୍ତି ନାହିଁ ।

କିଛି ଦିନ ପରେ ଗୁରୁ ଉପମନ୍ୟୁକୁ ପୂର୍ବପରି ହୃଷ୍ଟପୁଷ୍ଟ ଦେଖି ପଚାରିଲେ— "ଉପମନ୍ୟୁ ! ଆଜିକାଲି ତୁ ଖାଉଛୁ କ'ଣ ?"

ଉପମନ୍ୟୁ ଉତ୍ତର ଦେଲା—"ଗୁରୁଦେବ ! ପ୍ରଥମ ଥର ଭିକ୍ଷା ମାଗି ମୁଁ ଆପଣଙ୍କୁ ଅର୍ପଣ କରୁଛି । ତା'ପରେ ଦ୍ୱିତୀୟ ଥର ଭିକ୍ଷା ମାଗି ନିଜର ଉଦର ପୋଷଣ କରୁଛି ।"

ଗୁରୁ କହିଲେ—"ଏହା ଭିକ୍ଷା ଧର୍ମର ବିରୁଦ୍ଧ କର୍ମ । ଏହାଦ୍ୱାରା ଗୃହସ୍ଥମାନଙ୍କୁ ଅଧିକ ହଇରାଣ କରାଯାଏ ଏବଂ ମାଗିବା ଲୋକକୁ ମଧ୍ୟ ସଙ୍କୋଚ ଲାଗିଥାଏ । ତେଣୁ ଆଜିଠାରୁ ତୁ ଆଉ ଦ୍ୱିତୀୟ ଥର ଭିକ୍ଷା ମାଗିବୁ ନାହିଁ ।"

ଉପମନ୍ୟୁ ଗୁରୁ ଆଜ୍ଞା ଶିରୋଧାର୍ଯ୍ୟ କରି ସେହି ଦିନଠାରୁ ଦ୍ୱିତୀୟ ଥର ଭିକ୍ଷା ମାଗିବା ପରିତ୍ୟାଗ କଲା ।

କିଛିଦିନ ପରେ ଗୁରୁ ପୁନର୍ବାର ଉପମନ୍ୟୁକୁ ହୃଷ୍ଟପୁଷ୍ଟ ଦେଖି ପଚାରିଲେ—"ଉପମନ୍ୟୁ ! ଏବେ ତୁ ଖାଉଛୁ କ'ଣ ?"

ଉପମନ୍ୟୁ ଉତ୍ତର ଦେଲା—"ଗୁରୁଦେବ ! ମୁଁ ଦ୍ୱିତୀୟ ଥର ଭିକ୍ଷା ମାଗିବା ଛାଡ଼ି ଦେଇଛି । ଏବେ କେବଳ ଗୋ-ଦୁଗ୍ଧ ପାନ କରି ଜୀବନ ଧାରଣ କରୁଛି ।"

ଗୁରୁ କହିଲେ—"ଏହା କିନ୍ତୁ ତୋର ବଡ଼ ଅନ୍ୟାୟ କାର୍ଯ୍ୟ । ମୋତେ ନ ପଚାରି ଗୋ-ଦୁଗ୍ଧ ପାନ କରିବା ଅନୁଚିତ । ଆଜିଠାରୁ ତୁ ଆଉ ଗୋ-ଦୁଗ୍ଧ ପାନ କରିବୁ ନାହିଁ ।"

ଉପମନ୍ୟୁ ଗୁରୁ ଆଜ୍ଞା ସ୍ୱୀକାର କରି ସେହିଦିନଠାରୁ ଗୋ-ଦୁଗ୍ଧ ପାନ କରିବା ପରିତ୍ୟାଗ କଲା ।

କିଛି ଦିନ ପରେ ଗୁରୁ ପୁନର୍ବାର ଉପମନ୍ୟୁକୁ ହୃଷ୍ଟପୁଷ୍ଟ ଦେଖିଲେ ଏବଂ ପଚାରିଲେ—"ଉପମନ୍ୟୁ ! ତୁ ଦ୍ୱିତୀୟ ଥର ମାଗିବା ଛାଡ଼ି ଦେଇଛୁ, ଗୋ-ଦୁଗ୍ଧ ପାନ କରିବା ଛାଡ଼ି ଦେଇଛୁ; ତଥାପି ତୁ'ତ ବେଶ୍ ହୃଷ୍ଟପୁଷ୍ଟ ଅଛୁ । ତୁ ଖାଉଛୁ କ'ଣ ?"

ଉପମନ୍ୟୁ କହିଲା—"ଗୁରୁଦେବ ! ବାଛୁରିମାନେ କ୍ଷୀର ଖାଇବା ସମୟରେ ସେମାନଙ୍କ ମୁହଁରୁ ଯେଉଁ ଫେଣ ତଳେ ପଡ଼ି ଯାଉଛି, ସେହି ଫେଣ ଖାଇ ମୁଁ ଉଦର ପୋଷଣ କରୁଛି ।"

ଗୁରୁ କହିଲେ—"ଦେଖ୍, ସେପରି କରିବା ତୋର ଉଚିତ ନୁହେଁ । ତୋ ପ୍ରତି ଦୟା ପ୍ରଦର୍ଶନ କରି ବାଛୁରିମାନେ ହୁଏତ ଅଧିକ ଫେଣ ତଳେ ପକାଇ ଦେଉଥିବେ । ତାହା କରିବା ଦ୍ୱାରା ସେମାନଙ୍କୁ କ୍ଷୁଧାରେ ରହିବାକୁ ପଡ଼ୁଥିବ । ତେଣୁ ଆଜିଠାରୁ ତୁ ଆଉ ବାଛୁରିମାନଙ୍କର ଫେଣ ପାନ କରିବୁ ନାହିଁ ।"

ଉପମନ୍ୟୁ ଗୁରୁଙ୍କର ଏହି ଆଦେଶ ମଧ୍ୟ ସ୍ୱୀକାର କରିନେଲା । ସେହିଦିନଠାରୁ ସେ ବାଛୁରିମାନଙ୍କର ଫେଣ ପରିତ୍ୟାଗ କରି ଉପବାସରେ କଟାଇଲା । ଉପବାସରେ ରହି ମଧ୍ୟ ତାକୁ ପ୍ରତିଦିନ ଜଙ୍ଗଲରେ ଧେନୁପଲ ନେଇ ଚରାଇବାକୁ ପଡ଼ୁଥିଲା । କ୍ରମେ ସେ ଦୁର୍ବଳ ହୋଇଗଲା, ତା'ର ଇନ୍ଦ୍ରିୟଗଣ ଶିଥିଳ ପଡ଼ିଗଲେ, ତଥାପି ମଧ୍ୟ ସେ ନିଜ କାର୍ଯ୍ୟରେ କେବେ ଅବହେଳା କରି ନ ଥିଲା । ଦିନେ ଅତ୍ୟଧିକ କ୍ଷୁଧାର ତାଡ଼ନା ସହି ନପାରି ସେ ଗୁଚ୍ଛାଏ ଅରଖପତ୍ର ଆଣି ଗିଳି ପକାଇଲା । ସେହି ବିଷାକ୍ତ ପତ୍ର ଭୋଜନ କରିବା ଦ୍ୱାରା ତା'ର ଚକ୍ଷୁ ଦୁଇଟି ନଷ୍ଟ ହୋଇଗଲା । ତଥାପି ସେ ଧେନୁ ଚରାଇବା କାର୍ଯ୍ୟ ଅବ୍ୟାହତ ରଖିଥିଲା । ଶବ୍ଦକୁ ଅନୁସରଣ କରି ସେ ଧେନୁପଲକୁ ଜଙ୍ଗଲକୁ ଚରାଇବାକୁ ନେଉଥିଲା । ଦିନେ କିନ୍ତୁ ସେ ରାସ୍ତା ଠିକ୍ ଭାବରେ ଜାଣି ପାରିଲା ନାହିଁ । ହଠାତ୍ ଏକ କୂପ ମଧ୍ୟରେ ପଡ଼ିଗଲା ।

ମହର୍ଷି ଧୌମ୍ୟ ବାହାରେ ଉପମନ୍ୟୁ ପ୍ରତି କର୍କଶ ବ୍ୟବହାର ପ୍ରଦର୍ଶନ କରୁଥିଲେ ମଧ୍ୟ ଭିତରେ ଅତ୍ୟନ୍ତ ସ୍ନେହ କରୁଥିଲେ । ସେଦିନ ରାତିରେ ଉପମନ୍ୟୁକୁ ଆଶ୍ରମକୁ ନ ଫେରିବାର ଦେଖି ସେ ଅନ୍ୟ ଶିଷ୍ୟମାନଙ୍କୁ ପଚାରିଲେ—"ଧେନୁପଲ ତ ଆଶ୍ରମକୁ ଫେରି ଆସିଲେଣି । ଉପମନ୍ୟୁ ତ କାହିଁ ଫେରିନାହିଁ ? ଜଣାଯାଉଛି, କ୍ଷୁଧା-ଯନ୍ତ୍ରଣା ସହି ନପାରି ସେ କେଉଁଆଡ଼େ ଚାଲିଯାଇଛି । ଚାଲ, ସମସ୍ତେ ଯାଇ ତାକୁ ଜଙ୍ଗଲରେ ଖୋଜିବା ।"

ଏହା କହି ମହର୍ଷି ଧୌମ୍ୟ ଶିଷ୍ୟମାନଙ୍କୁ ଧରି ଜଙ୍ଗଲକୁ ଗମନ କଲେ । ଜଙ୍ଗଲରେ ଉପମନ୍ୟୁକୁ ଖୋଜି ଖୋଜି ସେ ଡାକିବାକୁ ଲାଗିଲେ—"ଉପମନ୍ୟୁ ! ତୁ କେଉଁଠି ଅଛୁ ? ଆମେ ସମସ୍ତେ ତୋତେ ଖୋଜିବାକୁ ଆସିଛୁ । ତୁ ଶୀଘ୍ର ଆ ।" ଗୁରୁଙ୍କ ଡାକ ଶୁଣି ଉପମନ୍ୟୁ କୂପ ମଧ୍ୟରେ ଥାଇ ଖୁବ୍ ଜୋର୍‌ରେ କହିଲା—"ଗୁରୁଦେବ ! ମୁଁ ଏଠାରେ କୂଅରେ ପଡ଼ି ଯାଇଛି ।"

ଉପମନ୍ୟୁର ଶବ୍ଦ ଅନୁସରଣ କରି ଗୁରୁ ଧୌମ୍ୟ ଶିଷ୍ୟମାନଙ୍କ ସହିତ କୂପ ନିକଟରେ ପହଞ୍ଚିଲେ ଏବଂ ଶିଷ୍ୟମାନଙ୍କ ଦ୍ୱାରା ଉପମନ୍ୟୁକୁ କୂଅ ଭିତରୁ ଉଦ୍ଧାର କଲେ । ଉପମନ୍ୟୁଠାରୁ ସମସ୍ତ କଥା ଶୁଣିବା ପରେ ତାଙ୍କର ହୃଦୟ ସ୍ନେହରେ ବିଗଳିତ ହୋଇ ଉଠିଲା । ଉପମନ୍ୟୁକୁ ହୃଦୟରେ ଲଗାଇ ସେ କହିଲେ—"ଉପମନ୍ୟୁ ! ବୈଦିକ ମନ୍ତ୍ର ଉଚ୍ଚାରଣ କରି ତୁ ସ୍ୱର୍ଗ ବୈଦ୍ୟ ଅଶ୍ୱିନୀକୁମାରଙ୍କୁ ସ୍ତୁତି କର, ସେ ତୋତେ ଚକ୍ଷୁ ପ୍ରଦାନ କରିବେ ।"

ଉପମନ୍ୟୁ ଗୁରୁ ଆଜ୍ଞା ପାଳନ କରି ଅଶ୍ୱିନୀ କୁମାରଙ୍କୁ ସ୍ତୁତି କଲା । ଉପମନ୍ୟୁର ସ୍ତୁତିରେ ସନ୍ତୁଷ୍ଟ ହୋଇ ଅଶ୍ୱିନୀ କୁମାର ତା'ର ଚକ୍ଷୁ ଭଲ କରିଦେଲେ ଏବଂ ତାକୁ ଖାଇବାକୁ ଗୋଟିଏ ସୁମିଷ୍ଟ ପିଷ୍ଟକ ଅର୍ପଣ କଲେ ।

ଉପମନ୍ୟୁ କହିଲେ—"ଗୁରୁଙ୍କୁ ଅର୍ପଣ ନ କରି ମୁଁ କଦାପି ଏ ପିଷ୍ଟକ ଭୋଜନ କରି ପାରିବି ନାହିଁ ।"

ଅଶ୍ୱିନୀ କୁମାର କହିଲେ—"ଅନେକ ଦିନ ତଳେ ତୁମର ଗୁରୁ ମଧ୍ୟ ମୋତେ ସ୍ତୁତି କରିଥିଲେ । ତାଙ୍କ ସ୍ତୁତିରେ ସନ୍ତୁଷ୍ଟ ହୋଇ ମୁଁ ତାଙ୍କୁ ଏହିପରି ଗୋଟିଏ ପିଷ୍ଟକ ଅର୍ପଣ କରିଥିଲି । ସେ ବି ଗୁରୁଙ୍କୁ ଅର୍ପଣ ନ କରି ପିଷ୍ଟକଟି ଭୋଜନ କରିଥିଲେ ।"

ଉପମନ୍ୟୁ କହିଲେ—"ସେ ଯାହାହେଉ, ତଥାପି ମୋର ଗୁରୁ । ତାଙ୍କୁ ଅର୍ପଣ ନ କରି ମୁଁ କୌଣସି ଦ୍ରବ୍ୟ ଗ୍ରହଣ କରି ପାରିବି ନାହିଁ ।"

ଉପମନ୍ୟୁର ଗୁରୁଭକ୍ତି ଦେଖି ଅଶ୍ୱିନୀ କୁମାର ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ତାକୁ ସମସ୍ତ ବିଦ୍ୟା ପ୍ରଦାନ କରି ଅନ୍ତର୍ଦ୍ଧାନ ହୋଇଗଲେ ।

ଗୁରୁ ଧୌମ୍ୟ ମଧ୍ୟ ଉପମନ୍ୟୁକୁ ସର୍ବଶାସ୍ତ୍ରବିତ୍ ହେବାପାଇଁ ଆଶୀର୍ବାଦ ପ୍ରଦାନ କଲେ ।

ଭବିଷ୍ୟତ କାଳରେ ଏହି ଉପମନ୍ୟୁ ଆଚାର୍ଯ୍ୟ ପଦ ଲାଭ କରିବାର ସୌଭାଗ୍ୟ ଅର୍ଜନ କରିଥିଲେ । ଆଚାର୍ଯ୍ୟ ଉପମନ୍ୟୁ ଗୁରୁକୁଳର କଷ୍ଟ ଭଲ ଭାବରେ ଜାଣିଥିଲେ । ତେଣୁ ସେ ନିଜର ଶିଷ୍ୟମାନଙ୍କୁ କୌଣସି କାର୍ଯ୍ୟ ଦେଉ ନଥିଲେ । ସେମାନଙ୍କୁ କେବଳ ସେ ଅଧ୍ୟୟନ କାର୍ଯ୍ୟରେ ନିଯୁକ୍ତ କରୁଥିଲେ ।



# ଗୁରୁଭକ୍ତ ଉତଙ୍କ

ଆୟୋଦ ଧୌମ୍ୟଙ୍କର ତୃତୀୟ ଶିଷ୍ୟଙ୍କର ନାମ ଥିଲା ବେଦ । ବେଦଋଷି ବିଦ୍ୟାଧ୍ୟୟନ ସମାପ୍ତ କରି ସ୍ୱଗୃହକୁ ପ୍ରତ୍ୟାବର୍ତ୍ତନ କଲେ ଏବଂ ଗୃହସ୍ଥ ଧର୍ମ ପାଳନ ପୂର୍ବକ ଆଚାର୍ଯ୍ୟ ପଦରେ ଅଧିଷ୍ଠିତ ହେଲେ । ତାଙ୍କର ମଧ ତିନିଜଣ ଉତ୍ତମ ଶିଷ୍ୟ ଥିଲେ । ରାଜା ଜନ୍ମେଜୟ ଓ ରାଜା ପୌଷ୍ୟ ତାଙ୍କୁ ରାଜଗୁରୁ ପଦରେ ଅଧିଷ୍ଠିତ କରିଥିଲେ । ତାଙ୍କର ଶିଷ୍ୟମାନଙ୍କ ମଧ୍ୟରେ ଉତଙ୍କ ଥିଲେ ସବୁଠାରୁ ବଳି ବଡ଼ ଗୁରୁଭକ୍ତ । ଯେତେବେଳେ ବେଦମୁନିଙ୍କୁ ବାହାରକୁ ଯିବାକୁ ପଡ଼ୁଥିଲା, ସେତେବେଳେ ସେ ଗୃହର ଦାୟିତ୍ୱ ଉତଙ୍କଙ୍କୁ ଅର୍ପଣ କରି ଯାଉଥିଲେ । ଥରେ କୌଣସି ଏକ କାର୍ଯ୍ୟ ଉପଲକ୍ଷେ ବେଦମୁନି ବାହାରକୁ ଯିବା ସମୟରେ ଉତଙ୍କଙ୍କୁ ଡାକି କହିଲେ—"ଉତଙ୍କ ! ଏକ ଜରୁରୀ କାର୍ଯ୍ୟରେ ମୁଁ ବାହାରକୁ ଯାଉଛି । ମୁଁ ଆସିବା ପର୍ଯ୍ୟନ୍ତ ଘରର ଦାୟିତ୍ୱ ତୋ ଉପରେ । ଘରେ ଯେଉଁ ପଦାର୍ଥ ଆବଶ୍ୟକ ହେବ, ତାହା ତୁ ଯୋଗାଡ଼ କରିଦେବୁ ।"

ଉତଙ୍କ ଆନନ୍ଦର ସହିତ ଗୁରୁ ଆଜ୍ଞା ସ୍ୱୀକାର କଲେ । ଉତଙ୍କ ହସ୍ତରେ ଘରର ଦାୟିତ୍ୱ ଅର୍ପଣ କରି ବେଦ ମୁନି କାର୍ଯ୍ୟ ଉପଲକ୍ଷେ ଗୃହରୁ ବହିର୍ଗତ ହେଲେ ।

ସ୍ନେହମୟୀ ପବିତ୍ର ହୃଦୟା ଗୁରୁପତ୍ନୀ ମଧ ଗୁରୁଙ୍କ ପରି ଉତଙ୍କଙ୍କୁ ଅତ୍ୟନ୍ତ ସ୍ନେହ କରୁଥିଲେ । ଉତଙ୍କଙ୍କୁ ପରୀକ୍ଷା କରିବା କରିବାପାଇଁ ସେ ଦିନେ କହିଲେ—"ଉତଙ୍କ ! ବର୍ତ୍ତମାନ ମୁଁ ଋତୁସ୍ନାନ କରି ପବିତ୍ର ହୋଇଛି । ଆଜି ତୁମର ଗୁରୁ ଏଠାରେ ନାହାନ୍ତି । ସେ ତୁମ ହସ୍ତରେ ଘରର ସମସ୍ତ ଦାୟିତ୍ୱ ଅର୍ପଣ କରି ଯାଇଛନ୍ତି । ମୋର ଅନୁରୋଧ, ତୁମେ ଏପରି କାମ କର, ଯେପରି କି ମୋର ଋତୁ କାଳ ବ୍ୟର୍ଥ ହୋଇ ନ ଯାଏ ।"

ଗୁରୁପତ୍ନୀଙ୍କ ମୁଖରୁ ଏପରି କଥା ଶୁଣି ଉତଙ୍କ ଅତ୍ୟନ୍ତ ନମ୍ରତାର ସହିତ କହିଲେ—"ଗୁରୁ ମୋତେ ଅନୁଚିତ କାର୍ଯ୍ୟ କରିବାକୁ କହି ନାହାନ୍ତି । ତେଣୁ ମୁଁ ଏପରି କାର୍ଯ୍ୟ କେବେ କରି ପାରିବି ନାହିଁ ।"

ଅନେକ ଦିନ ପରେ ବେଦ ମୁନି ଗୃହକୁ ଫେରି ଆସିଲେ । ସେ ଯେତେ-ବେଳେ ଉତଙ୍କଙ୍କର ଏହି ସଦାଗ୍ରହମସ୍ତ କଥା ଶୁଣିଲେ ସେତେବେଳେ ସେ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ଉତଙ୍କଙ୍କୁ ସର୍ବଶାସ୍ତ୍ରବିତ୍ ହେବାକୁ ଆଶୀର୍ବାଦ ଦେଲେ ।

କିଛି ଦିନ ପରେ ଉତଙ୍କଙ୍କର ଅଧ୍ୟୟନ ସମାପ୍ତ ହେଲା । ବିଦ୍ୟାଧ୍ୟୟନ ସମାପ୍ତ ହେବା ପରେ ଗୁରୁଙ୍କୁ ଗୁରୁ ଦକ୍ଷିଣା ଦେବା କଥା । ତେଣୁ ଗୃହକୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ଉତଙ୍କ ଗୁରୁଙ୍କ ନିକଟକୁ ଆସି କହିଲେ—"ଗୁରୁଦେବ ! ଆପଣଙ୍କୁ ମୁଁ କ'ଣ ଦକ୍ଷିଣା ଦେବି ? କେଉଁ କାର୍ଯ୍ୟ କଲେ ଆପଣ ସନ୍ତୁଷ୍ଟ ହେବେ ?"

ଗୁରୁ କହିଲେ—"ତୁ ମୋର ଯେଉଁ ସେବା କରିଛୁ, ତାହା ହିଁ ସର୍ବଶ୍ରେଷ୍ଠ ଗୁରୁ ଦକ୍ଷିଣା ।"

କିନ୍ତୁ ଉତଙ୍କ କିଛି ନା କିଛି ଗୁରୁ ଦକ୍ଷିଣା ଦେବାକୁ ବାରମ୍ବାର ଆଗ୍ରହ ପ୍ରକାଶ କଲେ । ତେଣୁ ଗୁରୁ କହିଲେ—"ତୁ ଗୃହ ଭିତରକୁ ଯାଇ ଗୁରୁପତ୍ନୀଙ୍କୁ ପଚାର । ତାଙ୍କର ଯାହା ପ୍ରିୟ, ସେହି କାର୍ଯ୍ୟ କରି ପାରିଲେ ତାହା ହେବ ତୋର ଗୁରୁ ଦକ୍ଷିଣା ।"

ଅନନ୍ତର ଉତଙ୍କ ଗୃହ ଭିତରକୁ ଯାଇ ଗୁରୁପତ୍ନୀଙ୍କୁ କିଛି ମାଗିବାକୁ ଅନୁରୋଧ କଲେ । ଗୁରୁପତ୍ନୀ କହିଲେ—"ରାଜା ପୌଷ୍ୟଙ୍କର ରାଣୀ ଯେଉଁ କୁଣ୍ଡଳ ପିନ୍ଧିଛନ୍ତି, ସେହି କୁଣ୍ଡଳ ଆଣି ଆଜିଠାରୁ ଚତୁର୍ଥ ଦିନ ମୋତେ ପ୍ରଦାନ କରିବାକୁ ହେବ । ସେଦିନ ପୁଣ୍ୟକ ନାମକ ବ୍ରତ ପଡ଼ୁଅଛି । ସେହି ବ୍ରତରେ ରାଣୀଙ୍କର କୁଣ୍ଡଳ ପରିଧାନ କରି ମୁଁ ବ୍ରାହ୍ମଣମାନଙ୍କୁ ଭୋଜନ ପ୍ରଦାନ କରିବାକୁ ଇଚ୍ଛା ପୋଷଣ କରୁଅଛି ।"

ଏକଥା ଶୁଣି ଉତଙ୍କ ଋଷି ଗୁରୁ ଓ ଗୁରୁପତ୍ନୀଙ୍କୁ ପ୍ରଣାମ କରି ପୌଷ୍ୟ ରାଜାଙ୍କ ରାଜଧାନୀକୁ ପ୍ରସ୍ଥାନ କଲେ । ପଥ ମଧ୍ୟରେ ସେ ଧର୍ମରୂପୀ ବୃଷଭ ଆରୋହଣ କରି ଆସୁଥିବା ଦେବରାଜ ଇନ୍ଦ୍ରଙ୍କର ସାକ୍ଷାତ ପାଇଲେ । ଇନ୍ଦ୍ର କହିଲେ—"ଉତଙ୍କ ! ତୁମେ ଏହି ବୃଷଭର ଗୋବର ଭୋଜନ କର । ଭୟ କରିବାର କିଛି କାରଣ ନାହିଁ । ତୁମର ଗୁରୁ ମଧ୍ୟ ଏହାର ଗୋବର ଭୋଜନ କରିଥିଲେ ।"

ଇନ୍ଦ୍ରଙ୍କର ନିର୍ଦ୍ଦେଶ ମାନି ଉତଙ୍କ ଧର୍ମରୂପୀ ବୃଷଭର ଗୋବର ଭୋଜନ କଲେ । ତା'ପରେ ସେ ସାଧାରଣ ଭାବରେ ଆଚମନ କରି ପୌଷ୍ୟ ରାଜାଙ୍କ ନିକଟରେ ଉପସ୍ଥିତ ହେଲେ । ପୌଷ୍ୟ ରାଜା ତାଙ୍କୁ ଆଗମନର କାରଣ ପଚାରିଲେ । ଉତଙ୍କ କହିଲେ—"ଗୁରୁ ଦକ୍ଷିଣା ଭାବରେ ଗୁରୁପତ୍ନୀଙ୍କୁ ଦେବାପାଇଁ ମୁଁ ଆପଣଙ୍କୁ ରାଣୀଙ୍କର କୁଣ୍ଡଳ ଯାଚନା କରିବାକୁ ଆସିଅଛି ।"

ରାଜା କହିଲେ—"ଆପଣ ତ ସ୍ନାତକ ବ୍ରହ୍ମଚାରୀ । ତେଣୁ ଆପଣ ସ୍ୱୟଂ ଯାଇ ରାଣୀଙ୍କୁ କୁଣ୍ଡଳ ଯାଚନା କରନ୍ତୁ ।"

ରାଜାଙ୍କ କଥାନୁସାରେ ଉତ୍ତଙ୍କ ରାଜମହଲକୁ ଗଲେ; କିନ୍ତୁ କେଉଁଠାରେ ହେଲେ ରାଣୀଙ୍କୁ ଦେଖିଲେ ନାହିଁ । ତେଣୁ ସେ ରାଜାଙ୍କ ନିକଟକୁ ଫେରି ଆସି କହିଲେ—"ମହାରାଜ ! ଆପଣ କ'ଣ ମୋ ସହିତ ଥଟ୍ଟା ଖେଳୁଛନ୍ତି ? ରାଣୀ ତ ଭିତରେ ନାହାନ୍ତି ।"

ରାଜା କହିଲେ—"ବ୍ରହ୍ମନ୍ ! ରାଣୀ ଭିତରେ ହିଁ ଅଛନ୍ତି । ଆପଣଙ୍କ ମୁଖରେ କୌଣସିଏ ଉଚ୍ଛିଷ୍ଟ ଲାଗିଛି । ସତୀ ସ୍ତ୍ରୀଗଣ ଉଚ୍ଛିଷ୍ଟ ମୁଖ ପୁରୁଷଙ୍କୁ ଦୃଶ୍ୟ ହୁଅନ୍ତି ନାହିଁ ।"

ଏହାଶୁଣି ଉତ୍ତଙ୍କ ନିଜର ଭୁଲ୍ ବୁଝି ପାରିଲେ । ସେ ହସ୍ତପଦ ଧୋଇବା ପରେ ପ୍ରାଣାୟାମ କରି ତିନିଥର ଆଚମନ କଲେ । ତା'ପରେ ସେ ଭିତରକୁ ଗଲେ । ଭିତରକୁ ଯିବା ପରେ ରାଣୀଙ୍କୁ ସେ ରତ୍ନ ପଲଙ୍କ ଉପରେ ବସିଥିବାର ଦେଖିଲେ । ରାଣୀ ଉତ୍ତଙ୍କଙ୍କୁ ଦେଖି ସତ୍କାର କଲେ ଏବଂ ଆଗମନର କାରଣ ପଚାରିଲେ । ଉତ୍ତଙ୍କ କହିଲେ—"ଗୁରୁ ପତ୍ନୀଙ୍କପାଇଁ ଆପଣଙ୍କ କୁଣ୍ଡଳ ଯାଚନା କରିବାକୁ ମୁଁ ଏଠାକୁ ଆସିଅଛି ।"

ଉତ୍ତଙ୍କଙ୍କୁ ସ୍ନାତକ ବ୍ରହ୍ମଚାରୀ ଓ ସତ୍ପାତ୍ର ବୋଲି ବିଚାର କରି ରାଣୀ ନିଜର କୁଣ୍ଡଳ କାଢ଼ି ତାଙ୍କ ହସ୍ତରେ ଅର୍ପଣ କଲେ ଏବଂ କହିଲେ—"ଆପଣ ଏହି କୁଣ୍ଡଳକୁ ଅତ୍ୟନ୍ତ ସାବଧାନତାର ସହିତ ନେଇ କରି ଯିବେ । କାରଣ ସର୍ପରାଜ ତକ୍ଷକ ଏହି କୁଣ୍ଡଳକୁ ଅନ୍ୱେଷଣ କରି ସର୍ବଦା ବିଚରଣ କରୁଛନ୍ତି ।"

ଉତ୍ତଙ୍କ ମୁନି ରାଣୀଙ୍କୁ ଆଶୀର୍ବାଦ ପ୍ରଦାନ ପୂର୍ବକ କୁଣ୍ଡଳ ଧରି ଗୁରୁ-ଆଶ୍ରମ ଅଭିମୁଖେ ଯାତ୍ରା ଆରମ୍ଭ କଲେ । ପଥ ମଧ୍ୟରେ ଏକ ନଦୀ କୂଳରେ କୁଣ୍ଡଳକୁ ରଖି ନିତ୍ୟକର୍ମ ସମାପ୍ତ କରିବାକୁ ସେ ନଦୀରେ ପ୍ରବେଶ କଲେ । ଏହି ସମୟରେ ତକ୍ଷକ ମନୁଷ୍ୟ ବେଶ ଧାରଣ କରି କୁଣ୍ଡଳକୁ ନେଇ ପଳାୟନ କଲେ । ଉତ୍ତଙ୍କ ମୁନି ଏହା ଦେଖି ତକ୍ଷକ ପଛରେ ଧାବମାନ ହେଲେ । କିନ୍ତୁ ତକ୍ଷକ ନିଜ ରୂପ ଧାରଣ କରି ପାତାଳକୁ ଚାଲିଗଲେ । ଉତ୍ତଙ୍କ ମଧ୍ୟ ଇନ୍ଦ୍ରଙ୍କ ସହାୟତାରେ ପାତାଳରେ ପ୍ରବେଶ କଲେ । ସେଠାରେ ସେ ଇନ୍ଦ୍ରଙ୍କୁ ସ୍ତୁତି କରି ତାଙ୍କଠାରୁ ଶକ୍ତିଲାଭ କଲେ । ସେହି ଶକ୍ତି ଦ୍ୱାରା ନାଗମାନଙ୍କୁ ପରାସ୍ତ କରି ସେ ପୁନଶ୍ଚ କୁଣ୍ଡଳର ଅଧିକାରୀ ହେଲେ । ଇନ୍ଦ୍ରଙ୍କ ସହାୟତାରେ ସେ ମଧ୍ୟ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ଗୁରୁପତ୍ନୀଙ୍କ ନିକଟରେ ଉପସ୍ଥିତ ହୋଇପାରି ଥିଲେ ।

ଗୁରୁପତ୍ନୀ ଉତ୍ତଙ୍କଙ୍କୁ ଦେଖି ଅତ୍ୟନ୍ତ ପ୍ରସନ୍ନ ହୋଇ କହିଲେ—"ଅଉ ସାମାନ୍ୟ ବିଳମ୍ବ କରିଥିଲେ ମୁଁ ତୋତେ ଅଭିଶାପ ଦେଇଥାନ୍ତି । ବର୍ତ୍ତମାନ ଆଶୀର୍ବାଦ କରୁଛି, ତୋତେ ସମସ୍ତ ସିଦ୍ଧି ପ୍ରାପ୍ତ ହେଉ ।"

ଗୁରୁପତ୍ନୀଙ୍କୁ କୁଣ୍ଡଳ ଦେଇ ଉତ୍ତଙ୍କ ଗୁରୁଙ୍କ ନିକଟକୁ ଯିବା କଲେ । ସବୁ କଥା ଶୁଣି ଗୁରୁ କହିଲେ—"ଇନ୍ଦ୍ର ମୋର ପରମ ମିତ୍ର । ତୁ ଯେଉଁ ଗୋବର ଭୋଜନ କଲୁ, ତାହା ଥିଲା ସାକ୍ଷାତ୍ ଅମୃତ ସ୍ୱରୂପ । ସେହି ହେତୁ ତୁ ପାତାଳକୁ ଯିବାକୁ ସମର୍ଥ ହୋଇ ପାରିଲୁ । ତୋର ସାହସରେ ମୁଁ ଅତ୍ୟନ୍ତ ପ୍ରସନ୍ନ ହୋଇଛି । ଆନନ୍ଦର ସହିତ ତୁ ବର୍ତ୍ତମାନ ଗୃହକୁ ପ୍ରତ୍ୟାବର୍ତ୍ତନ କର ।"

ଏହାପରେ ଗୁରୁ ଓ ଗୁରୁପତ୍ନୀଙ୍କ ଆଶୀର୍ବାଦ ନେଇ ଉତ୍ତଙ୍କ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ ।

ଉତ୍ତଙ୍କ ଥିଲେ ଜଣେ ପ୍ରତାପୀ, ତପସ୍ୱୀ ଓ ଜ୍ଞାନସିଦ୍ଧ ଋଷି । ମହାଭାରତ ଯୁଦ୍ଧର ସମାପ୍ତି ପରେ ଭଗବାନ ଶ୍ରୀକୃଷ୍ଣ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତନ କରିବା ସମୟରେ ନିଜର ମହିମାମୟ ବିଶ୍ୱରୂପ ଉତ୍ତଙ୍କଙ୍କୁ ଦର୍ଶନ କରାଇ ଥିଲେ ।



# ମହର୍ଷି ପୁଲସ୍ତ୍ୟ

ସ୍ୱାୟଂଭୁବ ମନ୍ୱନ୍ତରରେ ପିତାମହ ବ୍ରହ୍ମାଙ୍କର କର୍ଣ୍ଣ ଗହ୍ୱରରୁ ମହର୍ଷି ପୁଲସ୍ତ୍ୟଙ୍କର ଆବିର୍ଭାବ ଘଟିଥିଲା । ସେ ଥିଲେ ତପସ୍ୟାର ସ୍ୱରୂପ; ସେଥିପାଇଁ ଅନ୍ୟ ପ୍ରଜାପତିମାନଙ୍କ ପରି ତାଙ୍କୁ ମଧ୍ୟ 'ବ୍ରହ୍ମା' ନାମରେ ଅଭିହିତ କରାଯାଏ । ସେ ଗଙ୍ଗାଦ୍ୱାରରେ କଠୋର ତପସ୍ୟା କରି ବ୍ରହ୍ମାଙ୍କର ପ୍ରିୟପାତ୍ର ହୋଇ ପାରିଥିଲେ । ପିତୃଭକ୍ତ ଭୀଷ୍ମଙ୍କର କଲ୍ୟାଣ ଉଦ୍ଦେଶ୍ୟରେ ବ୍ରହ୍ମା ତାଙ୍କୁ ଭୀଷ୍ମଙ୍କ ନିକଟକୁ ପ୍ରେରଣ କରିଥିଲେ । ଭୀଷ୍ମ ମହର୍ଷି ପୁଲସ୍ତ୍ୟଙ୍କର ଦର୍ଶନ ପାଇ କୃତକୃତ୍ୟ ହୋଇଥିଲେ ଏବଂ ଯଥାବିଧି ତାଙ୍କର ପୂଜାର୍ଚ୍ଚନା କରି ପଚାରିଥିଲେ—"ମହାତ୍ମନ ! ମନୁଷ୍ୟ ଜନ୍ମ ଶ୍ରେଷ୍ଠ କାହିଁକି ?"

ମହର୍ଷି ପୁଲସ୍ତ୍ୟ ଉତ୍ତର ଦେଇଥିଲେ—"ମାନବ ଯୋନିକୁ କର୍ମ ଯୋନି ବୋଲି ମନେ କରାଯାଏ । ମନୁଷ୍ୟ ଇଚ୍ଛା କଲେ ବ୍ରହ୍ମ ହୋଇପାରେ, ପଥର ମଧ୍ୟ । ଶାସ୍ତ୍ର ବିହିତ କର୍ମ ଅନୁଷ୍ଠାନ କରି ମନୁଷ୍ୟ ସ୍ୱର୍ଗ ଓ ଅପବର୍ଗ—ଉଭୟ ପ୍ରାପ୍ତ ହୋଇପାରେ । କେବଳ ସେତିକି ନୁହେଁ, ଯେ କୌଣସି ପଦ ପାଇବାକୁ ଇଚ୍ଛା କଲେ ମଧ୍ୟ ମନୁଷ୍ୟ ସାଧନା ଦ୍ୱାରା ତାହା ପାଇବାକୁ ସମର୍ଥ ହୋଇଥାଏ । ସେଥିପାଇଁ ମନୁଷ୍ୟ ଜନ୍ମ ସର୍ବଶ୍ରେଷ୍ଠ ।"

ଭୀଷ୍ମ ପଚାରିଲେ—"ସୁଖ-ସମୃଦ୍ଧି ଆଦି ସର୍ବବିଧ ମଙ୍ଗଳ କିପରି ପ୍ରାପ୍ତ ହୋଇଥାଏ ?"

ମହର୍ଷି ପୁଲସ୍ତ୍ୟ କହିଲେ—"ଜନଲୋକ ଓ ସବୁ ଯୁଗରେ ବ୍ରାହ୍ମଣଙ୍କୁ ସର୍ବଦା ପବିତ୍ର ବୋଲି ମନେ କରାଯାଏ । ବ୍ରାହ୍ମଣ ଦେବତାମାନଙ୍କର ମଧ୍ୟ ଦେବତା । ଯାହା ଉପରେ ବ୍ରାହ୍ମଣ ପ୍ରସନ୍ନ ହୁଅନ୍ତି, ତାହା ଉପରେ ବିଷ୍ଣୁ ମଧ୍ୟ ପ୍ରସନ୍ନ ହୁଅନ୍ତି । ବ୍ରାହ୍ମଣ ଶରୀରରେ ବିଷ୍ଣୁ ସର୍ବଦା ଅବସ୍ଥାନ କରନ୍ତି । କେବଳ ବ୍ରାହ୍ମଣ ପୂଜାରେ ହିଁ ଶତ ଯଜ୍ଞର ଅନୁଷ୍ଠାନ ହୋଇଥାଏ । ବ୍ରାହ୍ମଣଙ୍କୁ ପୂଜା କରୁଥିବା ମନୁଷ୍ୟ କେବେ-ହେଲେ ଦରିଦ୍ର, ଦୁଃଖୀ କିମ୍ବା ରୋଗୀ ହୁଏନାହିଁ । ବ୍ରାହ୍ମଣ ମୁଖରୁ ହିଁ ଦେବତା ହବ୍ୟ ଓ ପିତୃପୁରୁଷ କବ୍ୟ ଉପଭୋଗ କରିଥାନ୍ତି । ବ୍ରାହ୍ମଣ ବିନା ଦାନ, ହୋମ ଓ ବଳି

ବ୍ୟର୍ଥ ଅଟେ । ବ୍ରାହ୍ମଣଙ୍କୁ ପ୍ରଣାମ ନ କରିବା ଦ୍ୱାରା ଏବଂ ତାଙ୍କ ପ୍ରତି ଦ୍ୱେଷ ଓ ଅଶ୍ରଦ୍ଧା ପ୍ରଦର୍ଶନ କରିବା ଦ୍ୱାରା ମନୁଷ୍ୟର ଆୟୁ କ୍ଷୀଣ ଓ ଧନ-ଐଶ୍ୱର୍ଯ୍ୟ ନାଶ ହୁଏ ତଥା ପରଲୋକରେ ଭୟ ପ୍ରାପ୍ତ ହୁଏ ।

"ପିତା ହିଁ ଧର୍ମ, ପିତା ହିଁ ସ୍ୱର୍ଗ ଏବଂ ପିତା ହିଁ ପରମ ତପ । ପିତା ପ୍ରସନ୍ନ ହେଲେ ସମସ୍ତ ଦେବତା ପ୍ରସନ୍ନ ହୁଅନ୍ତି । ମାତା ସର୍ବତୀର୍ଥ ସ୍ୱରୂପା ଓ ପିତା ସର୍ବଦେବ ସ୍ୱରୂପ । ତେଣୁ ପିତା ମାତାଙ୍କର ସେବା ଓ ପୂଜା ପ୍ରଯତ୍ନ ପୂର୍ବକ କରିବା ଉଚିତ । ଯିଏ ମାତା-ପିତାଙ୍କୁ ପ୍ରଦକ୍ଷିଣା କରେ, ସେ ସମ୍ପୂର୍ଣ୍ଣ ପୃଥିବୀ ପ୍ରଦକ୍ଷିଣା କରିବାର ଫଳ ପ୍ରାପ୍ତ ହୁଏ । ମାତା ପିତାଙ୍କୁ ପୂଜା କରିବା ଦ୍ୱାରା ମନୁଷ୍ୟ ଯେଉଁ ଧର୍ମ ପ୍ରାପ୍ତ ହୁଏ, ସେପରି ଧର୍ମ ହଜାର ହଜାର ଯଜ୍ଞ ଓ ତୀର୍ଥଯାତ୍ରା ଦ୍ୱାରା ପ୍ରାପ୍ତ ହୁଏ ନାହିଁ ।"

"ଯେଉଁ ପତିବ୍ରତା ନାରୀ ପତିଙ୍କୁ ପରମେଶ୍ୱର ମନେକରି ପ୍ରତିଦିନ ପତିଙ୍କର ହିତ କାର୍ଯ୍ୟରେ ରତ ରହେ, ସେ ପିତା ଓ ପତି—ଉଭୟ କୁଳକୁ ଉଦ୍ଧାର କରିଥାଏ ।"

ଏହିପରି ନାନା ପ୍ରକାର ଉପଦେଶ ଦେଇ ମହର୍ଷି ପୁଲସ୍ତ୍ୟ ଭୀଷ୍ମଙ୍କର ଅଶେଷ କଲ୍ୟାଣ ସାଧନ କରି ଥିଲେ । ଲୋକ-କଲ୍ୟାଣପାଇଁ ପୁଲସ୍ତ୍ୟଙ୍କର ସମଗ୍ର ଜୀବନ ବ୍ୟୟିତ ହୋଇଥିଲା ।

●

# ମହର୍ଷି ମରୀଚି

ବ୍ରହ୍ମାଙ୍କର ଦଶଜଣ ମାନସ ପୁତ୍ରଙ୍କ ମଧ୍ୟରେ ମହର୍ଷି ମରୀଚି ଥିଲେ ସବୁଠାରୁ ବଡ଼ । କର୍ଦ୍ଦମ ଋଷିଙ୍କ ପୁତ୍ରୀ କଳାଙ୍କ ଗର୍ଭରୁ ତାଙ୍କ ଔରସରେ ଦୁଇଟି ପୁତ୍ର ଉତ୍ପନ୍ନ ହୋଇଥିଲେ—କଶ୍ୟପ ଓ ପୂର୍ଣ୍ଣିମା । କଶ୍ୟପଙ୍କର ବଂଶ ପରମ୍ପରା ଏପରି ବୃଦ୍ଧି ପାଇଲା ଯେ ସମଗ୍ର ସଂସାରରେ ତାଙ୍କର ବଂଶଧରମାନେ ପରିବ୍ୟାପ୍ତ ହୋଇଗଲେ । ମହର୍ଷି ମରୀଚିଙ୍କର ଦ୍ୱିତୀୟ ସ୍ତ୍ରୀଙ୍କର ନାମ ଥିଲା ଊର୍ଣ୍ଣା । ଊର୍ଣ୍ଣାଙ୍କ ଗର୍ଭରୁ ଛଅଜଣ ପୁତ୍ର ଉତ୍ପନ୍ନ ହୋଇଥିଲେ । ସେମାନଙ୍କୁ ଷଡ଼୍‌ଗର୍ଭ କୁହାଯାଉଥିଲା । ସେମାନେ ଧର୍ମଶାସ୍ତ୍ରରେ ଜଣେ ଜଣେ ପ୍ରକାଣ୍ଡ ବିଦ୍ୱାନ୍ ଥିଲେ ।

ବ୍ରହ୍ମାଙ୍କର ସଭା ଥିଲା ଅତ୍ୟନ୍ତ ଅଦ୍ଭୁତ । କୌଷୀତକି-ଉପନିଷଦ୍‌ରେ ସେହି ସଭାର ବିସ୍ତୃତ ବିବରଣ ପରିଦୃଷ୍ଟ ହୁଏ । ପ୍ରତି ମୁହୂର୍ତ୍ତରେ ସେହି ସଭା ନବୀନ ରୂପ ଧାରଣ କରିଥାଏ । ମହର୍ଷି ମରୀଚି ସେହି ସଭାରେ ଉପବେଶନ କରି ପିତାଙ୍କର ଉପାସନାରେ ତଲ୍ଲୀନ ହୋଇଯାଉ ଥିଲେ । ତାଙ୍କର ତପସ୍ୟା ଏତେ ଗଭୀର ଥିଲା ଯେ ତାଙ୍କୁ ମଧ୍ୟ 'ବ୍ରହ୍ମା' ଉପାଧିରେ ଭୂଷିତ କରାଯାଇଥିଲା । କାଶୀରେ ସେ ନିଜ ନାମାନୁସାରେ 'ମରୀଚୀଶ୍ୱର' ନାମକ ଯେଉଁ ଶିବଲିଙ୍ଗ ପ୍ରତିଷ୍ଠା କରିଥିଲେ, ସେହି ଲିଙ୍ଗ ଏବେ ମଧ୍ୟ ମରୀଚିକୁଣ୍ଡ ନିକଟରେ ଅବସ୍ଥିତ ।

ମହର୍ଷି ଅତ୍ରିଙ୍କ ସହିତ ସେ ଭକ୍ତଶ୍ରେଷ୍ଠ ଧ୍ରୁବଙ୍କୁ ଯେଉଁ ଉପଦେଶ ଦେଇଥିଲେ, ତାହା ଥିଲା ସମସ୍ତଙ୍କର ଆଦର୍ଶ ସ୍ଥାନୀୟ । ସେ କହିଥିଲେ—"ଯେଉଁ ସର୍ବୋଚ୍ଚ ସ୍ଥାନ ଲାଭ କରିବାପାଇଁ ତୁମେ ମନରେ ଅଭିଳାଷ ପୋଷଣ କରିଛ, ତାହାର ପୂର୍ତ୍ତିପାଇଁ ତୁମେ ଭଗବାନ ବିଷ୍ଣୁଙ୍କ ଆରାଧନା କର । ଭଗବାନ ବିଷ୍ଣୁଙ୍କ ଆରାଧନା ନ କଲେ ତୁମେ କେବେହେଲେ ସେହି ସ୍ଥାନ ପାଇପାରିବ ନାହିଁ । ତେଣୁ ତୁମେ ତାଙ୍କର ଧ୍ୟାନ କର 'ଓଁ ନମୋ ଭଗବତେ ବାସୁଦେବାୟ' ମନ୍ତ୍ର ଜପ କର । ବସିବା, ଚାଲିବା, ଶୋଇବା, ଉଠିବା, ସବୁ ଅବସ୍ଥାରେ ତଥା ସବୁ ସମୟରେ ତାଙ୍କର ନାମ ଜପ କରିବା ଉଚିତ ।"

ଏହା କେବଳ ଧ୍ରୁବଙ୍କୁ ନୁହେଁ, ସମଗ୍ର ମାନବ ସମାଜପାଇଁ ଏହା ମହର୍ଷି ମରୀଚିଙ୍କର ସନ୍ଦେଶ ।

# ମହର୍ଷି ଅଙ୍ଗିରା

ବ୍ରହ୍ମାଙ୍କର ଛଅ ଜଣ ଶକ୍ତିଶାଳୀ ପୁତ୍ରଙ୍କ ମଧ୍ୟରେ ମହର୍ଷି ଅଙ୍ଗିରା ଥିଲେ ଅନ୍ୟତମ । ତାଙ୍କର ମଧ୍ୟ ତିନିଜଣ ପୁତ୍ର ବିଶ୍ୱବିଖ୍ୟାତ ହୋଇଥିଲେ । ସେମାନେ ହେଉଛନ୍ତି—ବୃହସ୍ପତି, ଉତଥ୍ୟ ଓ ସମ୍ବର୍ତ୍ତ । ପୁରାଣରେ ମହର୍ଷି ଅଙ୍ଗିରାଙ୍କୁ ବହୁତ ଉଚ୍ଚ ସ୍ଥାନ ପ୍ରଦାନ କରାଯାଇଛି । ପ୍ରଜାପତିମାନଙ୍କ ମଧ୍ୟରେ ସେ ଅନ୍ୟତମ ହୋଇଥିବାରୁ ତାଙ୍କୁ 'ବ୍ରହ୍ମା' ନାମରେ ମଧ୍ୟ ଅଭିହିତ କରାଯାଏ । ତଥାପି ପ୍ରବୃତ୍ତି ମାର୍ଗର ପ୍ରଧାନତା ହେତୁ ତାଙ୍କ ଉପରେ ମାୟାର ପ୍ରଭାବ ପଡ଼ି ଯାଇଥିଲା । ଅଙ୍ଗିରା ଓ ଭୃଗୁ ପରସ୍ପର ମଧ୍ୟରେ ସ୍ଥିର କଲେ ଯେ ଯେ ଦୁହିଁଙ୍କର ସନ୍ତାନମାନଙ୍କର ଶିକ୍ଷାର ଦାୟିତ୍ୱ ସେମାନଙ୍କ ମଧ୍ୟରୁ ଜଣେ ବହନ କରିବା ଉଚିତ । ଅଙ୍ଗିରା ଏହି ଦାୟିତ୍ୱ ନିଜେ ବହନ କଲେ ଏବଂ ନିଜ ପୁତ୍ରମାନଙ୍କ ସହିତ ଭୃଗୁଙ୍କ ପୁତ୍ର କବିଙ୍କୁ ଶିକ୍ଷା ଦେବାକୁ ମନସ୍ଥ କରି କହିଲେ—"ମୁଁ ବୃହସ୍ପତି ଓ ଆପଣଙ୍କ ପୁତ୍ର କବିଙ୍କ ମଧ୍ୟରେ କୌଣସି ଭେଦଭାବ ନ ରଖି ଶିକ୍ଷା ଦାନ କରିବି । କବି ଆଜିଠାରୁ ଏଇଠାରେ ହିଁ ରହିବ ।"

ସେହିଦିନଠାରୁ କବି ଅଙ୍ଗିରା-ଆଶ୍ରମରେ ରହି ଅଙ୍ଗିରାଙ୍କର ସେବା କରିବାକୁ ଲାଗିଲେ । କିନ୍ତୁ ଅଙ୍ଗିରା ମାୟାଗ୍ରସ୍ତ ହୋଇ ପଡ଼ିବାରୁ କବି ଓ ବୃହସ୍ପତିଙ୍କ ମଧ୍ୟରେ ସମବୃଦ୍ଧି ରଖି ପାରିଲେ ନାହିଁ । ସେ ବୃହସ୍ପତି ଓ କବିଙ୍କୁ ଅଲଗା ଅଲଗା ପଢ଼ାଇବାକୁ ଲାଗିଲେ । ଏଥିରେ କବି ଦୁଃଖିତ ହୋଇ କହିଲେ—"ଆପଣ ବୃହସ୍ପତିଙ୍କୁ ଅଧିକ ପଢ଼ାଉଛନ୍ତି, କିନ୍ତୁ ମୋତେ କମ୍ । ଗୁରୁ ଏପରି ଭେଦଭାବ ରଖିବା ଉଚିତ ନୁହେଁ ।"

ଅଙ୍ଗିରା କିନ୍ତୁ ଉଭୟଙ୍କୁ ସମବ୍ୟବହାର ଦେଖାଇ ପାରିଲେ ନାହିଁ । ଫଳରେ କବି ସେଠାରେ ଅଧ୍ୟୟନ ବନ୍ଦ କରିଦେଲେ ଏବଂ ଗୁରୁଙ୍କର ଅନୁମତି ନେଇ ସେଠାରୁ ବିଦାୟ ଗ୍ରହଣ କଲେ । ତାଙ୍କ ମଧ୍ୟରେ ସାତ୍ତ୍ୱିକ ସ୍ପର୍ଦ୍ଧା ଜାଗ୍ରତ ହେଲା । ସେ ଭଗବାନ ଶଙ୍କରଙ୍କୁ ଗୁରୁ ମନେକରି କଠୋର ତପସ୍ୟା କରିବାକୁ ଲାଗିଲେ । ଶେଷରେ ସେ ଶଙ୍କରଙ୍କ କୃପାରୁ ସଞ୍ଜୀବନୀ ବିଦ୍ୟା ପ୍ରାପ୍ତ ହେଲେ । ସଞ୍ଜୀବନୀ ବିଦ୍ୟା ମହର୍ଷି ଅଙ୍ଗିରାଙ୍କୁ ମଧ୍ୟ ଅଜ୍ଞାତ ଥିଲା ।

ଶିକ୍ଷା ସମାପ୍ତ ହେବା ପରେ ଅଙ୍ଗିରାଙ୍କ ପୁତ୍ର ବୃହସ୍ପତି ଦେବତାମାନଙ୍କର ଗୁରୁ ହୋଇଥିଲେ, କିନ୍ତୁ ସଞ୍ଜୀବନୀ ପରି ଅଦ୍ଭୁତ ବିଦ୍ୟା ତାଙ୍କ ନିକଟରେ ନ ଥିଲା । ଅନ୍ୟ ପକ୍ଷରେ କବି ସଞ୍ଜୀବନୀ ବିଦ୍ୟାର ଅଧିକାରୀ ହୋଇ ଅସୁରମାନଙ୍କର ଗୁରୁ ହେବାପାଇଁ ନିଷ୍ପତ୍ତି ଗ୍ରହଣ କରିଥିଲେ । ତାଙ୍କର ଏହି ନିଷ୍ପତ୍ତି ମହର୍ଷି ଅଙ୍ଗିରାଙ୍କର ଦୃଷ୍ଟିକୋଣକୁ ବଦଳାଇ ଦେଇଥିଲା । ଶିକ୍ଷା ଦାନ ସମୟରେ ଭେଦଭାବ ରଖିବାର ପରିଣତି ସେ ହୃଦୟଙ୍ଗମ କରି ପାରିଲେ । ତାଙ୍କ ମଧ୍ୟରୁ ସମସ୍ତ ମାୟା ବିଦୂରିତ ହୋଇଗଲା । ସେ ଜଣେ ଆଦର୍ଶ ଗୁରୁ ଭାବରେ ନିଜକୁ ପ୍ରତିଷ୍ଠିତ କରିଥିଲେ ।

ମହର୍ଷି ଅଙ୍ଗିରା ଥିଲେ ବ୍ରହ୍ମବିଦ୍ୟାର ଜଣେ ପ୍ରଖ୍ୟାତ ପ୍ରବକ୍ତା । ଥରେ ମହାଶାଳ (ମହାଗୃହସ୍ଥ) ଶୌନକ ହାତରେ ସମିଧା ଧରି ଅଙ୍ଗିରା-ଆଶ୍ରମରେ ଉପସ୍ଥିତ ହେଲେ । ସେଠାରେ ସେ ଶ୍ରୋତ୍ରିୟ ବ୍ରହ୍ମନିଷ୍ଠ ପରମ ଋଷି ଅଙ୍ଗିରାଙ୍କୁ ବିଧି ପୂର୍ବକ ପ୍ରଣାମ କରି ପଚାରିଲେ—"ଭଗବନ୍ ! ଏପରି କୌଣସି ବିଦ୍ୟା ଅଛି କି ଯାହା ଜାଣିଲେ ଅନ୍ୟ ସମସ୍ତ ବିଦ୍ୟା ଆପେ ଆପେ ଜ୍ଞାତ ହୋଇଥାଏ ?"

ଅଙ୍ଗିରା—ବ୍ରହ୍ମବେତ୍ତା ଋଷିଗଣ କହନ୍ତି ଯେ ଦୁଇ ପ୍ରକାର ବିଦ୍ୟା ଅଛି—ଗୋଟିଏ ପରା ଅନ୍ୟଟି ଅପରା ।

ଶୌନକ—ଅପରା ବିଦ୍ୟା କାହାକୁ କହନ୍ତି ଓ ପରା ବିଦ୍ୟା କାହାକୁ କହନ୍ତି ?

ଅଙ୍ଗିରା—ଋଗ୍‌ବେଦ, ଯଜୁର୍ବେଦ, ସାମବେଦ, ଅଥର୍ବବେଦ, ଶିକ୍ଷା, କଳ୍ପ, ବ୍ୟାକରଣ, ନିରୁକ୍ତ, ଛନ୍ଦ ଓ ଜ୍ୟୋତିଷ—ଏହାହିଁ ଅପରା ବିଦ୍ୟା । ଯେଉଁ ବିଦ୍ୟା ଦ୍ୱାରା ଅକ୍ଷର ବ୍ରହ୍ମଙ୍କୁ ଜାଣି ହୁଏ, ତାହା ହେଉଛି ପରା ବିଦ୍ୟା ।

ଶୌନକ—ଅକ୍ଷର ବ୍ରହ୍ମ କ'ଣ ?

ଅଙ୍ଗିରା—ଯିଏ ଅଦୃଶ୍ୟ, ଅଗ୍ରାହ୍ୟ, ଅଗୋତ୍ର, ଅବର୍ଣ୍ଣ ଓ ଚକ୍ଷୁ-ଶ୍ରୋତ୍ରାଦି ରହିତ, ଯିଏ ଅପାଣିପାଦ, ନିତ୍ୟ, ବିଭୁ, ସର୍ବଗତ, ଅତ୍ୟନ୍ତ ସୂକ୍ଷ୍ମ ଓ ଅବ୍ୟକ୍ତ, ଯିଏ ସମ୍ପୂର୍ଣ୍ଣ ଭୂତର କାରଣ, ଯାହାଙ୍କୁ ଧୀର ପୁରୁଷ ସର୍ବତ୍ର ଦର୍ଶନ କରନ୍ତି, ସେ ହିଁ ବ୍ରହ୍ମ ।

ଶୌନକ—ଯେଉଁ ବିଶ୍ୱ ସର୍ବତ୍ର ଦୃଶ୍ୟମାନ ତାହା କିପରି ବ୍ରହ୍ମଙ୍କଠାରୁ ଉତ୍ପନ୍ନ ହୁଏ ?

ଅଙ୍ଗିରା—ଯେପରି ବୁଢ଼ିଆଣୀଠାରୁ ଜାଲ ଉତ୍ପନ୍ନ ହୁଏ, ମାଟିରୁ ତରୁ ଲତା ଉତ୍ପନ୍ନ ହୁଏ, ସଜୀବ ପୁରୁଷଠାରୁ କେଶ ଓ ଲୋମ ଉତ୍ପନ୍ନ ହୁଏ, ସେହିପରି ଅକ୍ଷର ବ୍ରହ୍ମଙ୍କଠାରୁ ବିଶ୍ୱ ଉତ୍ପନ୍ନ ହୁଏ ।

ଶୌନକ—ବ୍ରହ୍ମଙ୍କଠାରୁ ବିଶ୍ୱର ଉତ୍ପତ୍ତି କେଉଁ କ୍ରମରେ ହୋଇଥାଏ ?

ଅଙ୍ଗିରା—

ତପସା ଚୀୟତେ ବ୍ରହ୍ମ ତତୋଽନ୍ନମଭିଜାୟତେ
ଅନ୍ନାତ୍ ପ୍ରାଣୋ ମନଃ ସତ୍ୟଂ ଲୋକାଃ କର୍ମସୁ ଚାମୃତମ୍ ।

(ମୁଣ୍ଡକୋପନିଷଦ୍, ୧।୧।୮)

ଉତ୍ପତ୍ତି ବିଧିର ଯେଉଁ ଜ୍ଞାନ, ସେହି ଜ୍ଞାନରୂପ ତପରୁ ସୃଷ୍ଟାଭିମୁଖୀ ବ୍ରହ୍ମ ସ୍ଥୂଳତା ପ୍ରାପ୍ତ ହୁଏ । ସେହି ସ୍ଥୂଳତାରୁ ଅନ୍ନ ଉତ୍ପନ୍ନ ହୁଏ; ଅନ୍ନରୁ କ୍ରମଶଃ ପ୍ରାଣ, ମନ, ସତ୍ୟ, ଲୋକ ତଥା କର୍ମ ଏବଂ କର୍ମରୁ ଅମୃତ ଉତ୍ପନ୍ନ ହୁଏ ।

ଯଃ ସର୍ବଜ୍ଞଃ ସର୍ବବିଦ୍ ଯସ୍ୟ ଜ୍ଞାନମୟଂ ତପଃ
ତସ୍ମାଦେତଦ୍ ବ୍ରହ୍ମ ନାମ ରୂପମନ୍ନଂ ଚ ଜାୟତେ ।

(ମୁଣ୍ଡକୋପନିଷଦ୍, ୧।୧।୯)

ଯିଏ ସର୍ବଜ୍ଞ ଓ ସର୍ବବିଦ୍, ଯାହାଙ୍କର ଜ୍ଞାନମୟ ତପ, ସେହି ଅକ୍ଷର ବ୍ରହ୍ମଙ୍କଠାରୁ ଏହି ବିଶ୍ୱରୂପ ବ୍ରହ୍ମ, ନାମ-ରୂପ ଓ ଅନ୍ନ ଉତ୍ପନ୍ନ ହୋଇଥାଏ ।

ଶୌନକ—ଭଗବନ୍ ! ଯେଉଁ ଅବ୍ୟୟ ପୁରୁଷ ଏହି ବିଶ୍ୱର ମୂଳ, ତାଙ୍କୁ କପରି ଜାଣିବ ?

ଅଙ୍ଗିରା—

ତପଃ ଶ୍ରଦ୍ଧେ ଯେ ହ୍ୟୁପବସନ୍ତ୍ୟରଣ୍ୟେ
ଶାନ୍ତା ବିଦ୍ୱାଂସୋ ଭୈକ୍ଷ୍ୟଚର୍ଯ୍ୟାଂ ଚରନ୍ତଃ
ସୂର୍ଯ୍ୟଦ୍ୱାରେଣ ତେ ବିରଜାଃ ପ୍ରୟାନ୍ତି
ଯତ୍ରାମୃତଃ ସ ପୁରୁଷୋ ହ୍ୟବ୍ୟୟାତ୍ମା ।

(ମୁଣ୍ଡକୋପନିଷଦ୍, ୧।୨।୧୧)

ଯେଉଁ ଶାନ୍ତ ଓ ବିଦ୍ୱାନ ଲୋକ ବନରେ ଭିକ୍ଷାବୃତ୍ତି ଅବଲମ୍ବନ କରି ତପ ଓ ଶ୍ରଦ୍ଧା ସେବନ କରନ୍ତି, ସେ ଶାନ୍ତରଜ ହୋଇ ସୂର୍ଯ୍ୟ ଦ୍ୱାର ଦେଇ ସେହି ସ୍ଥାନକୁ ଗମନ କରନ୍ତି, ଯେଉଁଠାରେ କି ସେହି ଅମୃତ ଅବ୍ୟୟ ପୁରୁଷ ଅବସ୍ଥାନ କରନ୍ତି ।

ଶୌନକ—ଭଗବନ୍ ! ସୂର୍ଯ୍ୟ ଦ୍ୱାର ଦେଇ ସେହି ଅବ୍ୟୟ ଧାମକୁ ଯାତ୍ରା କରିବାର ସାଧନ ସବୁ କ'ଣ ?

ଅଙ୍ଗିରା—

ପରୀକ୍ଷ୍ୟ ଲୋକାନ୍ କର୍ମଚିତାନ୍ ବ୍ରାହ୍ମଣୋ
ନିର୍ବେଦମାୟାନ୍ନାସ୍ତ୍ୟକୃତଃ କୃତେନ
ତଦ୍‌ବିଜ୍ଞାନାର୍ଥଂ ସ ଗୁରୁମେବାଭିଗଚ୍ଛେତ୍
ସମିତ୍ପାଣିଃ ଶ୍ରୋତ୍ରିୟଂ ବ୍ରହ୍ମନିଷ୍ଠମ୍ ।
(ମୁଣ୍ଡକୋପନିଷଦ୍, ୧।୨।୧୨)

କର୍ମରୁ ଯେଉଁ ଯେଉଁ ଲୋକ ପ୍ରାପ୍ତ ହୁଏ, ତାହା ପରୀକ୍ଷା କରି ବ୍ରାହ୍ମଣ ନିର୍ବେଦ ଲାଭ କରିବା ଉଚିତ; କାରଣ ସଂସାରରେ ନିତ୍ୟ ପଦାର୍ଥ କିଛି ହେଲେ ନାହିଁ । ତେଣୁ କର୍ମରେ ଆମର ପ୍ରୟୋଜନ କ'ଣ ? ତତ୍ (ସେହି ପରମ ପୁରୁଷ)ଙ୍କୁ ଜାଣିବାପାଇଁ ହାତରେ ସମିଧା ଧରି ଶ୍ରୋତ୍ରିୟ ବ୍ରହ୍ମନିଷ୍ଠ ଗୁରୁଙ୍କ ନିକଟକୁ ଗମନ କରିବା ଉଚିତ ।

ବିଦ୍ୱାନ୍ ବ୍ରହ୍ମନିଷ୍ଠ ଗୁରୁ ପ୍ରଶାନ୍ତ ଚିତ୍ତ ଜିତେନ୍ଦ୍ରିୟ ଶିଷ୍ୟଙ୍କୁ ସେହି ବ୍ରହ୍ମବିଦ୍ୟା ଶିକ୍ଷା ଦିଅନ୍ତି, ଯେଉଁ ଶିକ୍ଷା ଦ୍ୱାରା ଶିଷ୍ୟ ସତ୍ୟ ଓ ଅକ୍ଷର ପୁରୁଷଙ୍କର ଜ୍ଞାନ ଲାଭ କରିଥାନ୍ତି । ସେହି ଅକ୍ଷର ପୁରୁଷଙ୍କଠାରୁ ପ୍ରାଣ, ମନ, ଇନ୍ଦ୍ରିୟ, ଆକାଶ, ବାୟୁ, ତେଜ, ଜଳ ଓ ପୃଥିବୀ ଉତ୍ପନ୍ନ ହୋଇଥାଏ । ଅଗ୍ନି (ଦ୍ୟୁଲୋକ) ତାଙ୍କର ମସ୍ତକ, ଚନ୍ଦ୍ର-ସୂର୍ଯ୍ୟ ନେତ୍ର, ଦିଗସମୂହ ଶ୍ରବଣ, ପ୍ରସିଦ୍ଧ ବେଦ ବାଣୀ, ବାୟୁ ପ୍ରାଣ ଓ ବିଶ୍ୱ ହୃଦୟ । ତାଙ୍କ ଚରଣରୁ ପୃଥିବୀ ଉତ୍ପନ୍ନ ହୁଏ, ସେ ସମସ୍ତ ପ୍ରାଣୀଙ୍କର ଅନ୍ତରାତ୍ମା । ଦେବତାଗଣ ତାଙ୍କଠାରୁ ହିଁ ଉତ୍ପନ୍ନ ହୋଇଛନ୍ତି । ସାଧଗଣ, ମନୁଷ୍ୟ, ପଶୁ, ପକ୍ଷୀ, ପ୍ରାଣ-ଅପାନ, ବ୍ରୀହି, ଯବ, ତପ, ଶ୍ରଦ୍ଧା, ବ୍ରହ୍ମଚର୍ଯ୍ୟ ଓ ବିଧି—ସବୁ ତାଙ୍କର ସୃଷ୍ଟି ।

ଶୌନକ—ସତ୍ୟ ସ୍ୱରୂପ ପୁରୁଷଙ୍କଠାରୁ ଏସବୁ ଉତ୍ପନ୍ନ ହୋଇଛନ୍ତି, ଅର୍ଥାତ୍ ଏସବୁ ବିକାର ମାତ୍ର ଅଟନ୍ତି । ପୁରୁଷ ହିଁ କେବଳ ଏକମାତ୍ର ସତ୍ୟ । ଏପରି ମନେ କରିବା କ'ଣ ଉଚିତ୍ ନୁହେ ?

ଅଙ୍ଗିରା—ନା, ଏହି ସମଗ୍ର ଜଗତ, କର୍ମ ଓ ତପ ସ୍ୱୟଂ ପୁରୁଷ ଅଟନ୍ତି, ବ୍ରହ୍ମ ଅଟନ୍ତି, ପର ଅଟନ୍ତି, ଅମୃତ ଅଟନ୍ତି । ଏହି ଗୁହାରେ ଲୁକ୍କାୟିତ ସତ୍ୟଙ୍କୁ ଯିଏ ଜାଣି ପାରନ୍ତି, ହେ ସୌମ୍ୟ ! ତାଙ୍କର ସମସ୍ତ ଅବିଦ୍ୟା-ଗ୍ରନ୍ଥି ଛିନ୍ନ ହୋଇଯାଏ । ସେ ହେଉଛନ୍ତି ଦୀପ୍ତିମାନ୍, ଅଣୁଠାରୁ ମଧ୍ୟ ଅଣୁ । ତାଙ୍କ ମଧ୍ୟରେ ସମ୍ପୂର୍ଣ୍ଣ ଲୋକ ଓ ସେ ସବୁର ଅଧିବାସୀ ଅବସ୍ଥାନ କରନ୍ତି । ସେ ହେଉଛନ୍ତି ଅକ୍ଷର ବ୍ରହ୍ମ, ପ୍ରାଣ, ବାଣୀ ଓ ମନ । ସେ ହେଉଛନ୍ତି ସତ୍ୟ ଓ ଅମୃତ । ତାଙ୍କୁ ଉପଲବ୍ଧି କରିବା ଉଚିତ । ହେ ସୌମ୍ୟ ! ତୁମେ ତାଙ୍କୁ ଉପଲବ୍ଧି କର ।

ଶୌନକ—ଭଗବନ୍ ! ତାଙ୍କୁ କିପରି ଉପଲବ୍‌ଧି କରାଯାଏ ?

ଅଙ୍ଗିରା—ହେ ସୌମ୍ୟ ! ଔପନିଷଦ୍ ମହାସ୍ତ୍ର (ଧନୁ) ସାହାଯ୍ୟରେ ଉପାସନା ଦ୍ୱାରା ତୀକ୍ଷ୍ଣ କରାଯାଇଥିବା ବାଣ ତାଙ୍କ ଉପରକୁ ନିକ୍ଷେପ କରି ଏବଂ ତଦ୍‌ଭାବ ଭାବିତ ଚିତ୍ତରେ ସେହି ଅକ୍ଷର ବ୍ରହ୍ମ-ଲକ୍ଷ୍ୟ ଭେଦ କର ।

ଶୌନକ—ଭଗବନ୍ ! ସେହି ଔପନିଷଦ୍ ମହାସ୍ତ୍ର କ'ଣ ? ସେହି ବାଣ କିପରି ? କିପରି ସେହି ଲକ୍ଷ୍ୟ-ଭେଦ କରାଯାଇ ପାରିବ ?

ଅଙ୍ଗିରା—ପ୍ରଣବ ହେଉଛି ସେହି ମହାସ୍ତ୍ର (ଧନୁ), ଆତ୍ମା ହେଉଛି ବାଣ ଏବଂ ବ୍ରହ୍ମ ହେଉଛି ଲକ୍ଷ୍ୟ । ପ୍ରମାଦ ରହିତ (ସାବଧାନ) ହୋଇ ସେହି ଲକ୍ଷ୍ୟ ଭେଦ କରିବା ନିମିତ୍ତ ବାଣ ସଦୃଶ ତନ୍ମୟ ହେବା ଉଚିତ । ଯାହାଙ୍କ ମଧ୍ୟରେ ଦ୍ୟୁଲୋକ ପୃଥ୍ୱୀ ଓ ଅନ୍ତରିକ୍ଷ ତଥା ମନ ସମସ୍ତ ପ୍ରାଣ ସହିତ ଅବସ୍ଥିତ, ସେହି ଏକ ଆତ୍ମାଙ୍କୁ ଉପଲବ୍‌ଧି କର, ଅନ୍ୟ କଥା ପରିତ୍ୟାଗ କର; ଏହା ହିଁ ଅମୃତର ସେତୁ । ଯେପରି ରଥ ଚକ୍ରର ନାଭିରେ ଅର ଲଗା ହୋଇଥାଏ, ସେହିପରି ଯାହା ସହିତ ସମସ୍ତ ନାଡ଼ି ଜଡ଼ିତ, ତାହା ହିଁ ହେଉଛି ଅନ୍ତର୍ଯ୍ୟାମୀ ଆତ୍ମା । ତାହା ଅନେକ ପ୍ରକାରେ ଉତ୍ପନ୍ନ ହୋଇଥାଏ । ସେହି ଆତ୍ମାଙ୍କୁ 'ଓଁ' ରୂପରେ ଧ୍ୟାନ କର । ତମ (ଅଜ୍ଞାନ)ରୁ ମୁକ୍ତ ରହିଥିବା ତୁମର କଲ୍ୟାଣ ହେଉ । ଯିଏ ସର୍ବଜ୍ଞ ଓ ସର୍ବବିଦ୍, ଯାହାଙ୍କର ମହିମା ଭୂଲୋକରେ ପରିବ୍ୟାପ୍ତ ସେହି ଆତ୍ମା ବ୍ରହ୍ମପୁର ଆକାଶରେ ଅବସ୍ଥିତ । ସେ ହିଁ ମନୋମୟ ପ୍ରାଣ ଶରୀରର ନେତା । ସେ ଅନ୍ନମୟ ଶରୀରରେ ହୃଦୟକୁ ଆଶ୍ରୟ କରି ଅବସ୍ଥାନ କରେ । ତାଙ୍କର ବିଜ୍ଞାନ ପ୍ରାପ୍ତ ହୋଇ ଧୀର ପୁରୁଷ ସେହି ପ୍ରକାଶମାନ ଆନନ୍ଦରୂପ ଅମୃତଙ୍କୁ ସର୍ବତ୍ର ଦର୍ଶନ କରିଥାନ୍ତି ।

ଭିଦ୍ୟତେ ହୃଦୟଗ୍ରନ୍ଥିଶ୍ଛିଦ୍ୟନ୍ତେ ସର୍ବସଂଶୟାଃ
କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ ଦୃଷ୍ଟେ ପରାବରେ ।

(ମୁଣ୍ଡକୋପନିଷଦ୍, ୨।୨।୮)

ସେହି ପରାବର ବ୍ରହ୍ମଙ୍କର ସାକ୍ଷାତ୍କାର ହେଲେ ହୃଦୟର ଗ୍ରନ୍ଥି ସମୂହ ଛିନ୍ନ ହୋଇଯାଏ, ସମସ୍ତ ସଂଶୟ ଦୂର ହୋଇଯାଏ ଏବଂ କର୍ମରାଜି କ୍ଷୀଣ ହୋଇଯାଏ ।

ସେହି ଅମୃତ-ବ୍ରହ୍ମ ଅଗ୍ରଭାଗରେ, ପୃଷ୍ଠ ଦେଶରେ, ଦକ୍ଷିଣରେ, ବାମରେ, ନିମ୍ନ ଭାଗରେ ଓ ଊର୍ଦ୍ଧ୍ୱ ଦେଶରେ ଅବସ୍ଥିତ । ଏହି ସମଗ୍ର ବିଶ୍ୱ ସେହି ବରିଷ୍ଠ ବ୍ରହ୍ମଙ୍କର ପରିପ୍ରକାଶ ମାତ୍ର ।

ଶୌନକ—ସେହି ବ୍ରହ୍ମଙ୍କ ସହିତ ଏହି ଜୀବର ସମ୍ପର୍କ କିପରି ?

ଅଙ୍ଗିରା—ସେ ଦୁହେଁ ସୁନ୍ଦର ପକ୍ଷଯୁକ୍ତ ଦୁଇଟି ପକ୍ଷୀ ପରି ଗୋଟିଏ ବୃକ୍ଷରେ ଆଶ୍ରୟ ଗ୍ରହଣ କରିଥିବା ଦୁଇଜଣ ସଖା । ସେଥିରୁ ଜଣେ ସେହି ବୃକ୍ଷର ଫଳ ଭକ୍ଷଣ କରେ; କିନ୍ତୁ ଅନ୍ୟ ଜଣକ କିଛି ଭକ୍ଷଣ ନ କରି କେବଳ ଦର୍ଶନ କରେ । ଯିଏ ସେହି ଫଳ ଭକ୍ଷଣ କରେ ସେ ଦୀନ (ଅଜ୍ଞାନ) ହୋଇ ଶୋକ ପ୍ରାପ୍ତ ହୁଏ । କିନ୍ତୁ ଯେତେବେଳେ ସେ ଅନ୍ୟକୁ ଈଶ୍ୱର ରୂପରେ ଦେଖି ତାଙ୍କ ମହିମା ଉପଲବ୍ଧି କରେ, ସେତେବେଳେ ସେ ମଧ୍ୟ ବୀତଶୋକ ହୋଇଯାଏ । ଜଗତ୍‌କର୍ତ୍ତା ଈଶ୍ୱର-ପୁରୁଷଙ୍କୁ ଦେଖି ସେ ପାପ-ପୁଣ୍ୟ ଉଭୟ ପରିତ୍ୟାଗ ପୂର୍ବକ ନିରଞ୍ଜନ ପରମ ସତ୍ୟ ପ୍ରାପ୍ତ ହୁଏ ।

ଶୌନକ—ସେହି ଈଶ୍ୱର-ପୁରୁଷଙ୍କୁ ଦର୍ଶନ କରିବାର ଉପାୟ ସବୁ କ'ଣ ?

ଅଙ୍ଗିରା—ସତ୍ୟ, ତପ, ସମ୍ୟଗ୍‌ଜ୍ଞାନ ଓ ବ୍ରହ୍ମଚର୍ଯ୍ୟ ଦ୍ୱାରା ବିଶୁଦ୍ଧାତ୍ମା ଯୋଗୀଜନ ଅନ୍ତଃଶରୀରରେ ତାହାଙ୍କୁ ଜ୍ୟୋତିର୍ମୟ ଶୁଭ୍ର ରୂପରେ ଦର୍ଶନ କରିଥାନ୍ତି । ତାହା ହିଁ ଆତ୍ମା । ସେ ବୃହତ୍, ଦିବ୍ୟ, ସୂକ୍ଷ୍ମାତିସୂକ୍ଷ୍ମ, ଦୂରରୁ ଦୂରତର ଓ ନିକଟରୁ ନିକଟତର । ସେ ହୃଦୟ ଗହ୍ୱରରେ ଗୁପ୍ତ ଅବସ୍ଥାରେ ଅବସ୍ଥାନ କରନ୍ତି । ସେ ଚକ୍ଷୁ ଦ୍ୱାରା ଦୃଶ୍ୟ ହୁଅନ୍ତି ନାହିଁ; ବାଣୀ, ଅନ୍ୟାନ୍ୟ ଇନ୍ଦ୍ରିୟ, ତପ କିମ୍ବା କର୍ମ ଦ୍ୱାରା ଜ୍ଞାତ ହୁଅନ୍ତି ନାହିଁ । ଜ୍ଞାନ ଦ୍ୱାରା ଅନ୍ତଃକରଣ ବିଶୁଦ୍ଧ ହେଲେ ସେହି ନିଷ୍କଳ ପୁରୁଷଙ୍କର ସାକ୍ଷାତ୍‌କାର ହୁଏ । ଯାହାର ଏପରି ସାକ୍ଷାତ୍‌କାର ଘଟେ, ସେ ଯାହା ସଂକଳ୍ପ କରେ, ତାହା ସିଦ୍ଧ ହୋଇଯାଏ । ସଙ୍କଳ୍ପ ମାତ୍ରେ ସେ ଯେ କୌଣସି ଲୋକ କିମ୍ବା ଭୋଗ ଲାଭ କରିପାରେ । ଏପରି ପୁରୁଷଙ୍କୁ ଯିଏ ଉପାସନା କରେ, ସେ ମଧ୍ୟ ବନ୍ଧନ ମୁକ୍ତ ହୋଇ ଆତ୍ମ ସାକ୍ଷାତ୍‌କାର ଲାଭ କରିଥାଏ ।

ଶୌନକ—ଆତ୍ମ-କଥା ପ୍ରଚୁର କରିଥିବା ଶାସ୍ତ୍ର ସମୂହର ପ୍ରବଚନ ଦ୍ୱାରା କ'ଣ ତାହାଙ୍କୁ ଲାଭ କରାଯାଇ ପାରିବ ନାହିଁ ?

ଅଙ୍ଗିରା—ନା ।

ନାୟମାତ୍ମା ପ୍ରବଚନେନ ଲଭ୍ୟୋ
ନ ମେଧୟା ନ ବହୁନା ଶ୍ରୁତେନ
ଯମେବୈଷ ବୃଣୁତେ ତେନ ଲଭ୍ୟ-
ସ୍ତସ୍ୟୈଷ ଆତ୍ମା ବିବୃଣୁତେ ତନୂଁ ସ୍ୱାମ୍ ।

(ମୁଣ୍ଡକୋପନିଷଦ୍, ୩।୨।୩)

ଏହି ଆତ୍ମା ପ୍ରବଚନ ଦ୍ୱାରା, ମେଧା ଦ୍ୱାରା, କିମ୍ବା ବହୁତ ଶ୍ରବଣ କରିବା ଦ୍ୱାରା ପ୍ରାପ୍ତ ହୁଅନ୍ତି ନାହିଁ । ସେ ଯାହାଙ୍କୁ ବରଣ କରନ୍ତି, ତାଙ୍କୁ ହିଁ ସେ ପ୍ରାପ୍ତ

ହୁଅନ୍ତି । ତାଙ୍କ ନିକଟରେ ସେ ନିଜର ସ୍ୱରୂପ ବ୍ୟକ୍ତ କରି ଦିଅନ୍ତି । ଯିଏ ବଳ, ଅପ୍ରମାଦ, ସନ୍ନ୍ୟାସ ଓ ଜ୍ଞାନଦ୍ୱାରା ଆତ୍ମାଙ୍କୁ ଲାଭ କରିବାପାଇଁ ପ୍ରଯତ୍ନ କରନ୍ତି, ଆତ୍ମା ତାଙ୍କୁ ନିଜ ଧାମକୁ ନେଇ ଯାଆନ୍ତି ।

ଶୌନକ—ଯିଏ ଆତ୍ମତତ୍ତ୍ୱ ଲାଭ କରନ୍ତି, ତାଙ୍କର ସ୍ଥିତି କିପରି ହୁଏ ?

ଅଙ୍ଗିରା—ଯିଏ ସେହି ପରଂବ୍ରହ୍ମଙ୍କୁ ଜାଣି ପାରନ୍ତି, ସେ ନିଜେ ହିଁ ବ୍ରହ୍ମ ହୋଇଯା'ନ୍ତି । ତାଙ୍କ କୁଳରେ କେହି ଅବ୍ରହ୍ମବିଦ୍ ରହନ୍ତି ନାହିଁ । ସେ ଶୋକ ରହିତ ହୋଇ ପାପମୁକ୍ତ ହୋଇଯା'ନ୍ତି ଓ ହୃଦୟ-ଗ୍ରନ୍ଥିରୁ ବିମୁକ୍ତ ହୋଇ ଅମୃତ ହୋଇଯା'ନ୍ତି ।

ଶୌନକ—ଭଗବନ୍ ! କିଏ ଏହି ବ୍ରହ୍ମବିଦ୍ୟାର ଅଧିକାରୀ ହୁଅନ୍ତି, କୃପାକରି ପ୍ରକାଶ କରନ୍ତୁ ।

ଅଙ୍ଗିରା—ଯିଏ କ୍ରିୟାବାନ୍, ଶ୍ରୋତ୍ରିୟ ଓ ବ୍ରହ୍ମନିଷ୍ଠ, ଯିଏ ଶ୍ରଦ୍ଧା ପୂର୍ବକ ଏକର୍ଷି-ହବନ କରନ୍ତି ଏବଂ ଯିଏ ବିଧିପୂର୍ବକ ଶିରୋବ୍ରତ ଅନୁଷ୍ଠାନ କରନ୍ତି, ସେ ହିଁ ବ୍ରହ୍ମବିଦ୍ୟାର ପ୍ରକୃତ ଅଧିକାରୀ ।

ଏହିପରି ଭାବରେ ମହର୍ଷି ଅଙ୍ଗିରା ମହାଶାଳ ଶୌନକଙ୍କୁ ବ୍ରହ୍ମବିଦ୍ୟା ପ୍ରଦାନ କରି ତାଙ୍କ ଜୀବନକୁ କୃତାର୍ଥ କରିଥିଲେ ।



# ମହର୍ଷି ଯାଜ୍ଞବଲ୍କ୍ୟ

ମହର୍ଷି ଯାଜ୍ଞବଲ୍କ୍ୟ ଥିଲେ ଜଣେ ମହା ବୁଦ୍ଧିମାନ୍ ଶାସ୍ତ୍ରବେତ୍ତା ଓ ମହାନ୍ ପଣ୍ଡିତ । ଏପରି କୌଣସି ବିଷୟ ନାହିଁ, ଯାହାକି ସେ ଜାଣି ନ ଥିଲେ । ତାଙ୍କର ଛାତ୍ର-ଜୀବନ ଥିଲା ଅତ୍ୟନ୍ତ ଅଧ୍ୟବସାୟ-ସମ୍ପନ୍ନ । ତାଙ୍କର ମାମୁଁ ବୈଶମ୍ପାୟନ ହିଁ ଥିଲେ ତାଙ୍କର ଗୁରୁ । ପରେ ବୈଶମ୍ପାୟନ ତାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ତାଙ୍କୁ ଶିକ୍ଷା ଦେବାକୁ ନାସ୍ତି କରିଦେଲେ । ଯାଜ୍ଞବଲ୍କ୍ୟ କିନ୍ତୁ ହତୋତ୍ସାହ ନ ହୋଇ ଚିନ୍ତା କଲେ—"ମୁଁ ଏପରି ବିଦ୍ୟା ପ୍ରାପ୍ତ ହେବି, ଯାହା ମୋର ଗୁରୁଙ୍କୁ ମଧ୍ୟ ଅଜ୍ଞାତ ଥିବ । ସେଥିପାଇଁ ସେ ଭଗବାନ ଭାସ୍କରଙ୍କ ଉପାସନା କରିବାକୁ ଲାଗିଲେ । ଭଗବାନ ଭାସ୍କର ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ତାଙ୍କୁ ଶୁକ୍ଳ ଯଜୁର୍ବେଦର ପନ୍ଦର ଗୋଟି ଶାଖା ପ୍ରଦାନ କଲେ । ସେହି ପନ୍ଦର ଗୋଟି ଶାଖା ସେପର୍ଯ୍ୟନ୍ତ ପୃଥିବୀର ଲୋକଙ୍କୁ ଅଜ୍ଞାତ ଥିଲା । ଭଗବାନ ଭାସ୍କର ସେହି ଶାଖା ମଧ୍ୟରେ ବାଙ୍ମୟୀ ସରସ୍ୱତୀଙ୍କୁ ପ୍ରବେଶ କରାଇ ଦେଇଥିଲେ । ସରସ୍ୱତୀଙ୍କର ଅପାର କରୁଣାରୁ ସେ ସର୍ବଶାସ୍ତ୍ରରେ ପଣ୍ଡିତ ହୋଇ ପାରିଥିଲେ । ତାଙ୍କର ପୌରାଣିକ ଗୁରୁ ଥିଲେ ବ୍ୟାସଙ୍କର ଶିଷ୍ୟ ରୋମହର୍ଷଣ । ରୋମହର୍ଷଣଙ୍କଠାରୁ ସେ ସମସ୍ତ ପୁରାଣ ଅବଗତ ହୋଇଥିଲେ ।

ଏହିପରି ଭାବରେ କଠୋର ଅଧ୍ୟବସାୟ ସହିତ ସମ୍ପୂର୍ଣ୍ଣ ବିଦ୍ୟା ପ୍ରାପ୍ତ ହୋଇ ମହର୍ଷି ଯାଜ୍ଞବଲ୍କ୍ୟ ନିଜର ହଜାର ହଜାର ଶିଷ୍ୟଙ୍କୁ ଶିକ୍ଷା ପ୍ରଦାନ କରିଥିଲେ । ତାଙ୍କର ଶିଷ୍ୟଗଣ ଦେଶ-ବିଦେଶରେ ଭ୍ରମଣ କରି ଶିକ୍ଷାର ପ୍ରସାରରେ ବ୍ରତୀ ହୋଇଥିଲେ । ତାଙ୍କ ଯୋଗୁଁ ହିଁ ସମଗ୍ର ଭୂମଣ୍ଡଳ ଶିକ୍ଷାର ପ୍ରକାଶରେ ଆଲୋକିତ ହୋଇଥିଲା ।

ଥରେ ବିଶ୍ୱାବସୁ ନାମକ ଜଣେ ବେଦାନ୍ତବିତ୍ ଆସି ମହର୍ଷି ଯାଜ୍ଞବଲ୍କ୍ୟଙ୍କୁ ଚବିଶଗୋଟି ପ୍ରଶ୍ନ ପଚାରିଲେ । ସେହି ପ୍ରଶ୍ନଗୁଡ଼ିକ ଥିଲା ଅତ୍ୟନ୍ତ ଦୁରୂହ । ମହର୍ଷି ଯାଜ୍ଞବଲ୍କ୍ୟ ସେହି ପ୍ରଶ୍ନଗୁଡ଼ିକ ଉପରେ ବିଚାର କରିବାପାଇଁ କିଛି ସମୟ ମାଗିଲେ ଏବଂ ସେହି ସମୟ ମଧ୍ୟରେ ଭଗବତୀ ସରସ୍ୱତୀଙ୍କୁ ସ୍ମରଣ କଲେ । ସଙ୍ଗେ ସଙ୍ଗେ ସେ

ସରସ୍ୱତୀଙ୍କ କୃପାରୁ ଦେହରୁ ଲକ୍ଷ୍ମଣି ନିର୍ଗତ ହେବା ପରେ ଉପରୋକ୍ତ ପ୍ରଶ୍ନଗୁଡ଼ିକର ଉତ୍ତର ପାଇ ପାରିଲେ । ସେହି ଉତ୍ତର ଶୁଣି ବିଶ୍ୱାବସୁ ଅତ୍ୟନ୍ତ ସନ୍ତୁଷ୍ଟ ହୋଇଲେ ଏବଂ ମହର୍ଷିଙ୍କୁ ପରିକ୍ରମା କରି ତାଙ୍କୁ ଅଭିନନ୍ଦନ ଜଣାଇଲେ ତଥା ପ୍ରସନ୍ନତାର ସହିତ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ବିଶ୍ୱାବସୁ ମହର୍ଷି ଯାଜ୍ଞବଲ୍‌କ୍ୟଙ୍କଠାରୁ ପ୍ରାପ୍ତ ବିଦ୍ୟା ପ୍ରସାର କରିବାପାଇଁ ଯତ୍ନବାନ୍ ହୋଇଥିଲେ ଏବଂ ତ୍ରିଲୋକ ଭ୍ରମଣ କରି ସେହି ବିଦ୍ୟା ପ୍ରଚାର କରିଥିଲେ । ଫଳରେ ଯାଜ୍ଞବଲ୍‌କ୍ୟଙ୍କ ବିଦ୍ୟା ସମଗ୍ର ବ୍ରହ୍ମାଣ୍ଡରେ ପ୍ରଚାରିତ ହୋଇଥିଲା ।

ମହର୍ଷି ଯାଜ୍ଞବଲ୍‌କ୍ୟଙ୍କର ଦୁଇଜଣ ପତ୍ନୀ ଥିଲେ—ମୈତ୍ରେୟୀ ଓ କାତ୍ୟାୟନୀ । ଦୁଇଜଣଯାକ ସଦାଚାରିଣୀ ଓ ପତିବ୍ରତା ଥିଲେ ମଧ୍ୟ ମୈତ୍ରେୟୀ ଥିଲେ ଅଧ୍ୟାତ୍ମ ପରାୟଣା, କିନ୍ତୁ କାତ୍ୟାୟନୀ ଥିଲେ ସଂସାରାସକ୍ତା ଗୃହିଣୀ । ମହର୍ଷି ଯାଜ୍ଞବଲ୍‌କ୍ୟ ସନ୍ନ୍ୟାସ ଗ୍ରହଣ କରିବା ସମୟରେ ମୈତ୍ରେୟୀଙ୍କୁ ପାଖକୁ ଡାକି କହିଲେ—"ମୈତ୍ରେୟୀ ! ମୁଁ ଗୃହସ୍ଥାଶ୍ରମ ପରିତ୍ୟାଗ କରି ସନ୍ନ୍ୟାସ ଗ୍ରହଣ କରିବାକୁ ଇଚ୍ଛା କରୁଛି । ମୁଁ ସନ୍ନ୍ୟାସ ଗ୍ରହଣ କରିବା ପରେ ତୁମେ ଦୁଇଜଣ ପରସ୍ପର ମଧ୍ୟରେ ବିବାଦ ନ କରି ସୁଖ ପୂର୍ବକ ଅବସ୍ଥାନ କରିବ; ସେଥିପାଇଁ ତୁମ ଦୁହିଁଙ୍କ ମଧ୍ୟରେ ମୁଁ ଗୃହର ସମସ୍ତ ସମ୍ପତ୍ତି ଦୁଇ ଭାଗ କରି ବାଣ୍ଟି ଦେଇ ଯିବି ।"

ମହର୍ଷିଙ୍କ କଥା ଶୁଣି ମୈତ୍ରେୟୀ ଚିନ୍ତାକଲେ—"ମନୁଷ୍ୟ ସେତେବେଳେ ନିଜ ନିକଟରେ ଥିବା କୌଣସି ବସ୍ତୁ ପରିତ୍ୟାଗ କରେ, ଯେତେବେଳେ ସେ ପ୍ରଥମ ବସ୍ତୁ ଅପେକ୍ଷା କୌଣସି ଅଧିକ ଉତ୍ତମ ବସ୍ତୁ ପ୍ରାପ୍ତ ହୁଏ । ମହର୍ଷି ଯେତେବେଳେ ଘରଦ୍ୱାର ପରିତ୍ୟାଗ କରିବାକୁ ଯାଉଛନ୍ତି, ସେତେବେଳେ ଏହା ନିଶ୍ଚିତ ଯେ ସେ ଏପରି ଏକ ବସ୍ତୁର ସନ୍ଧାନ ପାଇଛନ୍ତି, ଯାହା ତୁଳନାରେ ଘରଦ୍ୱାର ସବୁ ଅତ୍ୟନ୍ତ ତୁଚ୍ଛ । ସେହି ପରମ ବସ୍ତୁ ତାଙ୍କୁ ଜନ୍ମ-ମୃତ୍ୟୁର ବନ୍ଧନରୁ ମୁକ୍ତ କରି ଅମୃତତ୍ୱ ପ୍ରଦାନ କରିବ ।"

ଏହା ଚିନ୍ତା କରି ମୈତ୍ରେୟୀ କହିଲେ—"ଭଗବନ୍ ! ମୋତେ ଯଦି ଧନ-ଧାନ୍ୟ ପରିପୂର୍ଣ୍ଣ ସମଗ୍ର ପୃଥିବୀ ପ୍ରାପ୍ତ ହେବ, ତେବେ କ'ଣ ମୁଁ ଅମୃତତ୍ୱ ପାଇ ପାରିବି ?"

ଯାଜ୍ଞବଲ୍‌କ୍ୟ କହିଲେ—"ନା, ଧନଧାନ୍ୟ ପରିପୂର୍ଣ୍ଣ ପୃଥିବୀ ପ୍ରାପ୍ତ ହେଲେ ତୁମେ ଜଣେ ଧନିକ ପରି ଜୀବନ ଅତିବାହିତ କରିପାରିବ; କିନ୍ତୁ ତାହା ଦ୍ୱାରା ତୁମେ କେବେ ଅମୃତତ୍ୱ ପାଇ ପାରିବ ନାହିଁ ।"

ମୈତ୍ରେୟୀ କହିଲେ—"ଯାହାଦ୍ୱାରା ମୁଁ ମୃତ୍ୟୁକୁ ଜୟ କରି ପାରିବି ନାହିଁ, ସେହି ବସ୍ତୁକୁ ନେଇ ମୁଁ କ'ଣ କରିବି ? ଭଗବନ୍ ! ଆପଣ ଯେଉଁ ପରମ ଧନ ପାଇବାପାଇଁ

ଘରଦ୍ୱାର ଆଦି ପରିତ୍ୟାଗ କରିବାକୁ ଯାଉଛନ୍ତି, ସେହି ପରମଧନ ମୋତେ ମଧ୍ୟ ପ୍ରଦାନ କରନ୍ତୁ ।"

ଯାଜ୍ଞବଲ୍କ୍ୟ କହିଲେ—"ମୈତ୍ରେୟୀ ! ତୁମେ ପ୍ରଥମରୁ ମୋର ପ୍ରିୟପାତ୍ର ଥିଲ, କିନ୍ତୁ ଏବେ ଏହି ଜିଜ୍ଞାସା ଦ୍ୱାରା ଅଧିକ ପ୍ରିୟପାତ୍ର ହୋଇ ପାରିଛ । ତୁମେ ମୋ ନିକଟରେ ଉପବେଶନ କର; ମୁଁ ତୁମକୁ ଅମୃତତ୍ୱ ସମ୍ପର୍କରେ ଉପଦେଶ ଦେବି ।" ଏହା କହି ମହର୍ଷି ଯାଜ୍ଞବଲ୍କ୍ୟ ଆତ୍ମତତ୍ତ୍ୱ ସମ୍ପର୍କରେ ଉପଦେଶ ଦେଇ କହିଲେ—

"ମୈତ୍ରେୟୀ ! ପତିଙ୍କର ପ୍ରୟୋଜନପାଇଁ ସ୍ତ୍ରୀର ପତି ପ୍ରିୟ ହୋଇ ନ ଥାଏ; ବରଂ ଆତ୍ମାର ପ୍ରୟୋଜନ ପାଇଁ ପତି ପ୍ରିୟ ହୋଇଥାଏ । ଏହି 'ଆତ୍ମା' ଶବ୍ଦର ଅର୍ଥ ବିଭିନ୍ନ ଲୋକ ବିଭିନ୍ନ ପ୍ରକାରେ କରିଥାନ୍ତି । କେହି କେହି କହନ୍ତି ଯେ ଶରୀର ହେଉଛି ଆତ୍ମା, ଆଉ କେହି କେହି କହନ୍ତି ଯେ ଯେ ପର୍ଯ୍ୟନ୍ତ ଶରୀର ମଧ୍ୟରେ ଜୀବ ଅବସ୍ଥାନ କରେ, ସେ ପର୍ଯ୍ୟନ୍ତ ସଂସାର ବିଦ୍ୟମାନ ରହେ; କିନ୍ତୁ ମୃତ୍ୟୁ ପରେ ସବୁ କିଛି ଲୋପ ପାଇଯାଏ । ଏଠାରେ ଜୀବ ହେଉଛି ଆତ୍ମା । ଏହା ସବୁ ପୁନର୍ଜନ୍ମ ମାନୁ ନ ଥିବା ଲୋକମାନଙ୍କର ମତ । କିନ୍ତୁ ଆଉ କେତେକ କହନ୍ତି ଯେ ଯେଉଁ ବସ୍ତୁ ଦ୍ୱାରା ଆତ୍ମାର ଉନ୍ନତି ହୁଏ ତଥା ଆତ୍ମା ନିଜର ସ୍ୱରୂପ ଉପଲବ୍ଧି କରିପାରେ, ତାହା ହିଁ ହେଉଛି ପ୍ରିୟ । ସେଥିପାଇଁ କୁହା ଯାଇଛି—'ଆତ୍ମାର୍ଥେ ପୃଥିବୀଂ ତ୍ୟଜେତ୍ ।' ଏହା ତୀବ୍ର ମୁମୁକ୍ଷୁ ପୁରୁଷଙ୍କର ମତ ।

"କେହି କେହି ତତ୍ତ୍ୱଜ୍ଞ 'ଆତ୍ମାର୍ଥେ' ଶବ୍ଦର ଅର୍ଥ ପ୍ରକାଶ କରିବାକୁ ଯାଇ କହନ୍ତି ଯେ ଏହା ହିଁ ହେଉଛି ଆତ୍ମତତ୍ତ୍ୱ, ଏହା ହିଁ ଆତ୍ମାଙ୍କର ଏକ ମୂର୍ତ୍ତି । ମିତ୍ରଙ୍କର ମୂର୍ତ୍ତି କେହି ମୂର୍ତ୍ତିପାଇଁ ରଖି ନ ଥାନ୍ତି; ମିତ୍ରଙ୍କପାଇଁ ହିଁ ରଖିଥାନ୍ତି । ସଂସାରର ସମସ୍ତ ବସ୍ତୁ ଆମକୁ ପ୍ରିୟବୋଧ ହୋଇଥାଏ, କାରଣ ସେ ସବୁଥିରେ କେବଳ ଏକ ଆତ୍ମା ହିଁ ବ୍ୟାପି କରି ରହିଥାଏ । ସେ ସବୁ ଆତ୍ମାର ସ୍ୱରୂପ । ସ୍ତ୍ରୀ ସ୍ତ୍ରୀପାଇଁ ପ୍ରିୟ ହୁଏ ନାହିଁ, ସେ ଆତ୍ମାପାଇଁ ପ୍ରିୟ ହୋଇଥାଏ । ପୁତ୍ର ପୁତ୍ରପାଇଁ ପ୍ରିୟ ହୁଏ ନାହିଁ । ସେ ଆତ୍ମାପାଇଁ ପ୍ରିୟ ହୋଇଥାଏ । ଧନ ଧନପାଇଁ ପ୍ରିୟ ହୁଏ ନାହିଁ, ତାହା ଆତ୍ମାପାଇଁ ପ୍ରିୟ ହୋଇଥାଏ । ବ୍ରାହ୍ମଣ ବ୍ରାହ୍ମଣପାଇଁ ପ୍ରିୟ ହୁଏ ନାହିଁ, ସେ ଆତ୍ମାପାଇଁ ପ୍ରିୟ ହୋଇଥାଏ । କ୍ଷତ୍ରିୟ କ୍ଷତ୍ରିୟପାଇଁ ପ୍ରିୟ ହୁଏ ନାହିଁ, ସେ ଆତ୍ମାପାଇଁ ପ୍ରିୟ ହୋଇଥାଏ । ଲୋକ ଲୋକପାଇଁ ପ୍ରିୟ ହୁଏ ନାହିଁ, ତାହା ଆତ୍ମାପାଇଁ ପ୍ରିୟ ହୋଇଥାଏ । ଦେବତା ଦେବତାପାଇଁ ପ୍ରିୟ ହୁଅନ୍ତି ନାହିଁ, ସେ ଆତ୍ମାପାଇଁ ପ୍ରିୟ ହୋଇଥାନ୍ତି । ବେଦ ବେଦ-ପାଇଁ ପ୍ରିୟ ହୁଏ ନାହିଁ, ତାହା ଆତ୍ମାପାଇଁ ପ୍ରିୟ ହୋଇଥାଏ । ଭୂତ ଭୂତପାଇଁ ପ୍ରିୟ ହୁଏ ନାହିଁ, ତାହା ଆତ୍ମାପାଇଁ ପ୍ରିୟ ହୋଇଥାଏ । ହେ ମୈତ୍ରେୟୀ ! ପୃଥିବୀର ଯାବତୀୟ

ବସ୍ତୁ ବସ୍ତୁପାଇଁ ପ୍ରିୟ ହୁଏ ନାହିଁ, ତାହାସବୁ ଆତ୍ମାପାଇଁ ପ୍ରିୟ ହୋଇଥାଏ । ଏହି ପରମ ପ୍ରିୟ ଆତ୍ମା ହିଁ ବାସ୍ତବରେ ଦର୍ଶନ କରିବାର ଯୋଗ୍ୟ, ଶ୍ରବଣ କରିବାର ଯୋଗ୍ୟ, ମନନ କରିବାର ଯୋଗ୍ୟ ଏବଂ ନିରନ୍ତର ଧ୍ୟାନ କରିବାର ଯୋଗ୍ୟ । ମୈତ୍ରେୟୀ ! ଏହି ଆତ୍ମାଙ୍କର ଦର୍ଶନ, ଶ୍ରବଣ, ମନନ ଓ ସାକ୍ଷାତ୍କାର ହେଲେ ସବୁ କିଛି ଜାଣି ହୁଏ । ଏହା ହିଁ ଜ୍ଞାନ ।"

ତତ୍ପରେ ମହର୍ଷି ଯାଜ୍ଞବଲ୍କ୍ୟ ବ୍ରହ୍ମଙ୍କର ଅଖଣ୍ଡ ଏକରସ ସତ୍ତା ସମ୍ପର୍କରେ ବର୍ଣ୍ଣନା କରି ଶେଷରେ କହିଲେ—"ଯେ ପର୍ଯ୍ୟନ୍ତ ମନରେ ଦ୍ୱୈତଭାବ ଥାଏ, ସେ ପର୍ଯ୍ୟନ୍ତ ଜଣେ ଜଣକୁ ଦେଖେ, ଜଣେ ଜଣକୁ ଆଘ୍ରାଣ କରେ, ଜଣେ ଜଣକୁ ଶ୍ରବଣ କରେ, ଜଣେ ଜଣକୁ କହେ, ଜଣେ ଜଣକୁ ସ୍ପର୍ଶ କରେ ଏବଂ ଜଣେ ଜଣକୁ ଜାଣେ । କିନ୍ତୁ ଯେତେବେଳେ ସର୍ବାତ୍ମଭାବ ପ୍ରାପ୍ତ ହୁଏ, ଯେତେବେଳେ ସମସ୍ତ ବସ୍ତୁ ହିଁ ଆତ୍ମା—ଏପରି ପ୍ରତୀତ ହୁଏ, ସେତେବେଳେ କିଏ କାହାକୁ ଦେଖିବ ? କିଏ କାହାକୁ ଆଘ୍ରାଣ କରିବ ? କିଏ କାହାକୁ କହିବ ? କିଏ କାହାକୁ ସ୍ପର୍ଶ କରିବ ? କିଏ କାହାକୁ ଜାଣିବ ?"

"ସେହି ଆତ୍ମା ସର୍ବଥା ଅଗ୍ରାହ୍ୟ, ଅଶୀର୍ଯ୍ୟ, ଅସଙ୍ଗ, ବନ୍ଧନ ରହିତ ଓ ଓ ଅବିନାଶୀ । ଏପରି ସର୍ବାତ୍ମ ରୂପ, ସମସ୍ତଙ୍କୁ ଜାଣି ପାରୁଥିବା ଆତ୍ମାଙ୍କୁ କିଏ କିପରି ଜାଣିବ ? ସେଥିପାଇଁ ଶ୍ରୁତି ତାଙ୍କୁ 'ନେତି ନେତି' କହି ଅଛି । ସେହି ଆତ୍ମା ସର୍ବଥା ଅନିର୍ବଚନୀୟ । ମୈତ୍ରେୟୀ ! ତୁମକୁ ମୋର ଏହା ହିଁ ଉପଦେଶ । ଏହା ହିଁ ପ୍ରକୃତରେ ମୋକ୍ଷ ।"

ଏପରି ଉପଦେଶ ଦେଇ ଯାଜ୍ଞବଲ୍କ୍ୟ ସନ୍ନ୍ୟାସ ଗ୍ରହଣ କଲେ ଏବଂ ସର୍ବଶ୍ରେଷ୍ଠ ଜ୍ଞାନର ଅଧିକାରୀ ହେଲେ । ମୈତ୍ରେୟୀ ମଧ୍ୟ ତୀବ୍ର ବୈରାଗ୍ୟ ଓ ଉତ୍କଟ ଜ୍ଞାନ-ପିପାସା ହେତୁ ସ୍ୱାମୀଙ୍କର ଉପଦେଶ ଫଳେ ପରମ କଲ୍ୟାଣ ପ୍ରାପ୍ତ ହେଲେ ।



# ମହର୍ଷି ସାନ୍ଦୀପନ

ମଧ୍ୟ ଭାରତରେ ଉଜ୍ଜୟିନୀ ଗୋଟିଏ ପ୍ରସିଦ୍ଧ ସ୍ଥାନ । ସ୍କନ୍ଦ ପୁରାଣର ବିଶାଳ ଅବନ୍ତୀ ଖଣ୍ଡରେ ମୁଖ୍ୟତଃ ଉଜ୍ଜୟିନୀର ମାହାତ୍ମ୍ୟ ପରିଦୃଷ୍ଟ ହୁଏ । ଏହାକୁ ପୃଥିବୀର ନାଭି ବୋଲି କୁହାଯାଇଛି । ବିଷ୍ଣୁଦେହ ପ୍ରସୂତା ଶିପ୍ରା ଏହି ନଗରର ମଧ୍ୟ ଭାଗରେ ପ୍ରବାହିତ ହେଉଅଛି । ଏଠାର ମହାକାଳ ଜ୍ୟୋତିର୍ଲିଙ୍ଗ, ହରସିଦ୍ଧି ଶକ୍ତିପୀଠ, କୁମ୍ଭମେଳା ଆଦି ବିଶ୍ୱ ପ୍ରସିଦ୍ଧ । ଏହା ଶୈବ୍ୟ, ଶାକ୍ତ ଓ ବୈଷ୍ଣବମାନଙ୍କର ପ୍ରିୟସ୍ଥଳୀ ହେବା ସଙ୍ଗେ ସଙ୍ଗେ ଭଗବାନ ଶ୍ରୀକୃଷ୍ଣଙ୍କର ଶିକ୍ଷାସ୍ଥଳୀ ହେବାର ମର୍ଯ୍ୟାଦା ଲାଭ କରିଅଛି ।

ଭଗବାନ ଶ୍ରୀକୃଷ୍ଣ କଂସବଧ ପରେ ଗୁରୁକୁଳ ଆଶ୍ରମରେ ରହି ଶିକ୍ଷାଲାଭ କରିବାପାଇଁ ମନରେ ଇଚ୍ଛା ପୋଷଣ କଲେ । ସେ ସମୟରେ ଉଜ୍ଜୟିନୀରେ ସାନ୍ଦୀପନ ନାମକ ଜଣେ ସର୍ବଶାସ୍ତ୍ରବିତ୍ ଓ ସର୍ବକଳା ସମ୍ପନ୍ନ ପଣ୍ଡିତ ଅବସ୍ଥାନ କରୁଥିଲେ । ଶ୍ରୀକୃଷ୍ଣ ଶାସ୍ତ୍ରବିଧି ଅନୁସାରେ ହାତରେ ସମିଧା ଧରି ତଥା ଇନ୍ଦ୍ରିୟଗଣଙ୍କୁ ବଶୀଭୂତ କରି ଦ୍ୱିଜବର ସାନ୍ଦୀପନଙ୍କ ନିକଟରେ ଉପସ୍ଥିତ ହେଲେ ଏବଂ ଗୁରୁଙ୍କ ପ୍ରତି କିପରି ଶୁଦ୍ଧ ବ୍ୟବହାର କରିବା ଉଚିତ, ତାହାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ସ୍ୱରୂପ ଭକ୍ତି ପୂର୍ବକ ଗୁରୁଙ୍କୁ ଦେବତା ପରି ସେବା କରିବାକୁ ଲାଗିଲେ । ଗୁରୁ ମଧ୍ୟ ତାଙ୍କୁ ତୀକ୍ଷ୍ଣବୁଦ୍ଧି ସମ୍ପନ୍ନ ଦେଖି ଅତ୍ୟନ୍ତ ଆଦର କରୁଥିଲେ ଏବଂ ତାଙ୍କର ନିଷ୍କପଟ, ସ୍ନେହଯୁକ୍ତ ସେବାରେ ପ୍ରସନ୍ନ ରହୁଥିଲେ । ଯଥାର୍ଥରେ ଏହା ଥିଲା ଶ୍ରୀକୃଷ୍ଣଙ୍କର ଲୋକ ସଂଗ୍ରହପାଇଁ ମାନବଲୀଳା ମାତ୍ର । ଶ୍ରୀମଦ୍‌ଭାଗବତରେ କୁହା ଯାଇଛି ଯେ—

"ପ୍ରଭବୌ ସର୍ବବିଦ୍ୟାନାଂ ସର୍ବଜ୍ଞୌ ଜଗଦୀଶ୍ୱରୌ
ନାନ୍ୟସିଦ୍ଧାମଲଜ୍ଞାନଂ ଗୂହମାନୌ ନରେହିତୈଃ ।"

(ଶ୍ରୀମଦ୍‌ଭାଗବତ, ୧୦।୪୫।୩୦)

"ସମସ୍ତ ବିଦ୍ୟା ତାଙ୍କଠାରୁ ହିଁ ପ୍ରସୃତ ହୋଇଅଛି । ସେ ସର୍ବଜ୍ଞ ଓ ଜଗତର ସ୍ୱାମୀ । ସେ ନିର୍ମଳ ଜ୍ଞାନର ସ୍ୱୟଂ ଅଧିକାରୀ ଥିଲେ ମଧ୍ୟ ତାହାକୁ ଲୁକ୍‌କାୟିତ ଭାବରେ ରଖିଥିଲେ; କାରଣ ସେ ମନୁଷ୍ୟ ପରି ଲୀଳା କରିବାକୁ ଅବତରିତ ହୋଇଥିଲେ ।"

ଗୁରୁକୁଳ ବାସ, ଗୁରୁ ଓ ଗୁରୁ ଶୁଶ୍ରୂଷାର ମହିମା, ଗୁରୁ କୁଳରେ କିପରି କାମ କରିବାକୁ ପଡ଼େ ଓ କିପରି କଷ୍ଟ ସହିବାକୁ ପଡ଼େ, ସେ ସମସ୍ତ ବିଷୟ ପୁରାଣାଚାର୍ଯ୍ୟ ସୁଦାମା କଥା ପ୍ରସଙ୍ଗରେ ବଡ଼ ସୁନ୍ଦର ଢଙ୍ଗରେ ବର୍ଣ୍ଣନା କରିଛନ୍ତି । ପରବର୍ତ୍ତୀ କାଳରେ ଶ୍ରୀକୃଷ୍ଣ ସହପାଠୀ ସୁଦାମାଙ୍କୁ କହିଛନ୍ତି—

"ବ୍ରହ୍ମନ୍ ! ତୁମର କ'ଣ ଗୁରୁ କୁଳରେ ଅବସ୍ଥାନ କାଳୀନ ବ୍ରହ୍ମଚର୍ଯ୍ୟାଶ୍ରମ କଥା ମନେ ପଡ଼ୁନାହିଁ ? ଗୁରୁକୁଳ ଏପରି ଏକ ସ୍ଥାନ, ଯେଉଁଠାରେ କି ଏପରି ବିଦ୍ୟା ପ୍ରାପ୍ତ ହୁଏ, ଯାହା ଦ୍ୱାରା ଅବିଦ୍ୟାମୟ ସଂସାରରୁ ମୁକ୍ତି ମିଳିଥାଏ । ଦ୍ୱିଜାତି ଓ ସେମାନଙ୍କ ସତ୍‌କର୍ମର ଉତ୍ପତ୍ତି ସ୍ଥାନ ପ୍ରକୃତରେ ଗର୍ଭ ନୁହେଁ, ଏହି ଗୁରୁକୁଳବାସ ବା ବ୍ରହ୍ମଚର୍ଯ୍ୟାଶ୍ରମ; କାରଣ ଗର୍ଭରୁ ଶୂଦ୍ର ମଧ୍ୟ ଉତ୍ପନ୍ନ ହୋଇଥାଏ । ତେଣୁ ଭିନ୍ନ ଭିନ୍ନ ଆଶ୍ରମଧାରୀଙ୍କୁ ଭିନ୍ନ ଭିନ୍ନ ଜ୍ଞାନ ପ୍ରଦାନ କରୁଥିବା ଗୁରୁ ମୋ ପରି ପରମ ପୂଜ୍ୟ । ପ୍ରକୃତରେ ବର୍ଣ୍ଣ ଓ ଆଶ୍ରମଧାରୀମାନଙ୍କ ମଧ୍ୟରେ ସେହିମାନେ ହିଁ ପୁରୁଷାର୍ଥକୁଶଳ, ଯେଉଁମାନେ ଗୁରୁରୂପ ମୋ ଉପଦେଶରେ ସୁଖ ପୂର୍ବକ ସଂସାର-ସାଗର ପାରି ହୋଇଯା'ନ୍ତି । ସମସ୍ତ ଭୂତର ଆତ୍ମା ହୋଇ ମଧ୍ୟ ମୁଁ ପଞ୍ଚ ମହାଯଜ୍ଞାଦି ଗୃହସ୍ଥ ଧର୍ମ, ବ୍ରହ୍ମଚାରୀଧର୍ମ, ଅନଶନାଦି ବାନପ୍ରସ୍ଥ ଧର୍ମ ଓ ଇନ୍ଦ୍ରିୟ ନିଗ୍ରହାଦି ଯତିଧର୍ମ ଦ୍ୱାରା ସେପରି ପ୍ରସନ୍ନ ହୁଏ ନାହିଁ, ଯେପରି ଗୁରୁସେବା ଦ୍ୱାରା ହୁଏ । ବ୍ରହ୍ମନ୍ ! ତୁମର କ'ଣ ସେ ଦିନର କଥା ମନେ ନାହିଁ, ଯେଉଁ ଦିନ ଗୁରୁପତ୍ନୀ ଆମ ଦୁହିଁଙ୍କୁ ଇନ୍ଧନ ସଂଗ୍ରହ କରିବାପାଇଁ ବନକୁ ପଠାଇଥିଲେ, ? ଗୁରୁପତ୍ନୀଙ୍କ ନିର୍ଦ୍ଦେଶ ପାଳନ କରି ଆମେ ଦୁହେଁ ଘୋର ଜଙ୍ଗଲରେ ପ୍ରବେଶ କରିଥିଲେ । ଧୀରେ ଧୀରେ ଅନ୍ଧାର ହୋଇଗଲା ଏବଂ ମୂଷଳ ଧାରାରେ ବର୍ଷା ହେବାକୁ ଲାଗିଲା । ତା' ସଙ୍ଗେ ସଙ୍ଗେ ଘୋର ଘର୍ଘର ନାଦରେ ମେଘ ଗର୍ଜନ କଲା । ଅଳ୍ପକ୍ଷଣ ମଧ୍ୟରେ ସନ୍ଧ୍ୟା ହୋଇଯିବାରୁ ଅନ୍ଧକାର ମଧ୍ୟରେ ଜଙ୍ଗଲର ବନ ପ୍ରକୃତି ଭୟଙ୍କର ହୋଇ ଉଠିଲା । ଚତୁର୍ଦ୍ଦିଗରେ ଜଳସ୍ରୋତ ପ୍ରବାହିତ ହେବାରୁ ଉଚ୍ଚା ନୀଚା ଭୂମି ଜାଣି ହେଲା ନାହିଁ । ଆମେ ଦୁହେଁ ପ୍ରଖର ବାୟୁ ଓ ଘୋର ବୃଷ୍ଟି ଜଳ ଦ୍ୱାରା ଦାରୁଣ କଷ୍ଟ ଭୋଗ କରି ବ୍ୟାକୁଳ ଭାବରେ ପରସ୍ପରର ହାତ ଧରାଧରି ହୋଇ ଏଣେତେଣେ ବୁଲିବାକୁ ଲାଗିଲେ । ସନ୍ଧ୍ୟାପରେ ମଧ୍ୟ ଆମ ଦୁହିଁଙ୍କୁ ଫେରିବାର ନ ଦେଖି ଆଚାର୍ଯ୍ୟ ସାନ୍ଦୀପନି ଆମକୁ ଖୋଜିବାପାଇଁ ବାହାରିଲେ ଏବଂ ଘନ ଜଙ୍ଗଲରେ ଆମ ଦୁହିଁଙ୍କୁ କଷ୍ଟ ପାଉଥିବାର ଦେଖି ଦୟାପରବଶ ହୋଇ କହିଲେ—"ପ୍ରିୟ ପୁତ୍ର ! ମୋ'ପାଇଁ ତୁମ ଦୁହିଁଙ୍କୁ ବହୁତ କଷ୍ଟ ଭୋଗ କରିବାକୁ ପଡ଼ିଲା । ପ୍ରାଣୀମାନଙ୍କର ପ୍ରାଣ ହିଁ ସବୁଠାରୁ ପ୍ରିୟ ବସ୍ତୁ । କିନ୍ତୁ ତୁମେ ଦୁହେଁ ମୋ ସେବାପାଇଁ ପ୍ରାଣକୁ ମଧ୍ୟ ଭ୍ରୂକ୍ଷେପ କଲ ନାହିଁ । ଶୁଦ୍ଧ ଭକ୍ତିରେ ନିଜର ସମସ୍ତ ଅର୍ଥ ଓ ଦେହ ଗୁରୁଙ୍କପାଇଁ ଅର୍ପଣ କରିଦେବା ହେଉଛି ଗୁରୁଙ୍କ ପ୍ରତି ସତ୍‌ଶିଷ୍ୟର ପରମ କର୍ତ୍ତବ୍ୟ । ହେ ଦ୍ୱିଜ ଶ୍ରେଷ୍ଠ ! ମୁଁ ତୁମ ଦୁହିଁଙ୍କ

ଉପରେ ଅତ୍ୟନ୍ତ ପ୍ରସନ୍ନ ହୋଇଅଛୁ । ତୁମ ଦୁହିଁଙ୍କ ମନୋରଥ ପୂର୍ଣ୍ଣ ହେଉ । ତୁମେ ଯେଉଁ ବିଦ୍ୟା ଲାଭ କରିଛ ତାହା ତୁମକୁ ଇହଲୋକ ଓ ପରଲୋକରେ ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କରୁ ।' ଗୁରୁକୁଳରେ ଅବସ୍ଥାନ କାଳରେ ଏପରି ଅନେକ ସ୍ମରଣୀୟ ବୃତ୍ତାନ୍ତ ଘଟିଥିଲା । ସେ ସବୁ ତୁମର ମନେ ଅଛି ତ ? ବାସ୍ତବରେ ଗୁରୁ-କୃପାରେ ହିଁ ମନୁଷ୍ୟ ପୂର୍ଣ୍ଣକାମ ହୋଇ ମୁକ୍ତି ପାଇବାକୁ ସମର୍ଥ ହୋଇଥାଏ ”

ଭଗବାନ ଶ୍ରୀକୃଷ୍ଣଙ୍କ ସହିତ ଯେଉଁ କେତେ ଜଣ ପ୍ରଧାନ ଶିଷ୍ୟ ସାନ୍ଦୀପନି ଆଶ୍ରମରେ ରହି ଶିକ୍ଷା ଲାଭ କରିଥିଲେ, ସେମାନେ ହେଉଛନ୍ତି, ଭଗବାନ ବଳରାମ, ସୁଦାମା, ରାଜକୁମାର ବିନ୍ଦ, ଅନୁବିନ୍ଦ, ମିତ୍ରବିନ୍ଦ, ପ୍ରଦ୍ୟୁମ୍ନ, ଅନିରୁଦ୍ଧ ଓ ବଜ୍ରନାଭ । କିନ୍ତୁ ଶ୍ରୀକୃଷ୍ଣ ହିଁ ଥିଲେ ସେମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ । ଗୁରୁ ସାନ୍ଦୀପନି ତାଙ୍କୁ (୧) ଚାରି ବେଦ, (୨) ଶିକ୍ଷା, କଳ୍ପ, ବ୍ୟାକରଣ, ଛନ୍ଦ ଶାସ୍ତ୍ର, ଜ୍ୟୋତିଷ ଓ ନିରୁକ୍ତ—ଏହି ଛଅ ବେଦାଙ୍ଗ, (୩) ଉପନିଷଦ୍, (୪) ସରହସ୍ୟ ଅର୍ଥାତ୍ ମନ୍ତ୍ରଜ୍ଞାନ ସହିତ ଧନୁର୍ବେଦ, (୫) ସନ୍ୱାଦ କଥିତ ଧର୍ମ ଶାସ୍ତ୍ର, (୬) ମୀମାଂସାଦି ନ୍ୟାୟ ମାର୍ଗ (ଦର୍ଶନ), (୭) ତର୍କ ବିଦ୍ୟା ଓ (୮) ସନ୍ଧି, ବିଗ୍ରହ, ଯାନ, ଆସନ, ଦ୍ୱୈଧୀଭାବ ଓ ସମାଶ୍ରୟ—ଏହି ଛଅ ପ୍ରକାର ରାଜନୀତି ସହିତ ୬୪ କଳା ଶିକ୍ଷା ଦେଇଥିଲେ । ବ୍ରହ୍ମ ବୈବର୍ତ୍ତ ପୁରାଣ ଅନୁସାରେ ଶ୍ରୀକୃଷ୍ଣ ଏକମାସ ମଧ୍ୟରେ ଏହି ସମସ୍ତ ବିଦ୍ୟାରେ ପାରଙ୍ଗମ ହୋଇଥିଲେ ( ଶ୍ରୀକୃଷ୍ଣ ଜନ୍ମ, ୧୦୨।୩୦ ) । ଶ୍ରୀମଦ୍ଭାଗବତ ଅନୁସାରେ ସେ ୭୪ ଦିନ ଗୁରୁକୁଳରେ ରହି ୬୪ କଳା ଅନୁଭବ କରିଥିଲେ—

"ଅହୋରାତ୍ରୈଶ୍ଚତୁଃଷଷ୍ଟ୍ୟା ସଂଯତୌ ତାବତୀଃ କଳାଃ" (୧୦।୪୫।୩୬)

କିନ୍ତୁ ମହାଭାରତ ମତରେ ସେ ୧୬୭ ଦିନ ସାନ୍ଦୀପନି ଆଶ୍ରମରେ ଅବସ୍ଥାନ କରିଥିଲେ ।

ଯେଉଁ ୬୪ କଳା ମହାମୁନି ସାନ୍ଦୀପନି ଭଗବାନ ଶ୍ରୀକୃଷ୍ଣଙ୍କୁ ଶିକ୍ଷା ଦେଇଥିଲେ, ସେଗୁଡ଼ିକର ନାମ ହେଉଛି—

ଗୀତ, ବାଦ୍ୟ, ନୃତ୍ୟ, ନାଟ୍ୟ, ଆଲେଖ୍ୟ, ବିଶେଷକ ଛେଦ୍ୟ, ତଣ୍ଡୁଳ କୁସୁମବଳି ବିକାର, ପୁଷ୍ପାସ୍ତରଣ, ଦଶନବସନାଙ୍ଗ ରାଗ, ମଣି ଭୂମିକା-କର୍ମ, ଶୟନରଚନ, ଉଦକ ବାଦ୍ୟ, ଚିତ୍ରଯୋଗ, ମାଲ୍ୟ ଗ୍ରଥନ ବିକଳ୍ପ, ଶେଖର କାପୀଡ଼-ଯୋଜନ, ନେପଥ୍ୟ ପ୍ରୟୋଗ, କର୍ଣ୍ଣପତ୍ର ଭଙ୍ଗ, ଗନ୍ଧ ଯୁକ୍ତି, ଭୂଷଣ ଯୋଜନ, ଐନ୍ଦ୍ରଜାଲ କୌଚୁମାର ଯୋଗ, ହସ୍ତ ଲାଘବ, ପାନକରସ-ରାଗାସବଯୋଜନ, ସୂଚୀ କର୍ମ, ସୂତ୍ରକ୍ରୀଡ଼ା, ପ୍ରହେଳିକା, ପ୍ରହେଳିମାଳା, ଦୁର୍ବାଚକ ଯୋଗ, ପୁସ୍ତକ ବାଚନ, ନାଟିକା-ଖ୍ୟାୟିକା ଦର୍ଶନ, କାବ୍ୟ ସମସ୍ୟା ପୂରଣ, ପଟ୍ଟିକା ବେତ୍ରବାନ ବିକଳ୍ପ, ତର୍କୁ କର୍ମ, ବାସ୍ତୁବିଦ୍ୟା, ରୂପ୍ୟରତ୍ନ ପରୀକ୍ଷା, ଧାତୁବାଦ, ମଣିରାଗ ଜ୍ଞାନ, ଆକାର ଜ୍ଞାନ, ବୃକ୍ଷାୟୁର୍ବେଦ

ଯୋଗ, ମେଷକୁକ୍କୁଟଲାବ ଯୁଦ୍ଧ ବିଦ୍ୟା, ଶୁକ-ସାରିକା-ପ୍ରଲାପନ, ଉତ୍ସାଦନ, ଅକ୍ଷର-ମୁଷ୍ଟିକା କଥନ, ମ୍ଲେଚ୍ଛିତ କବିକଳ୍ପ, ଦେଶଭାଷା ଜ୍ଞାନ, ପୁଷ୍ପଶକଟିକା, ନିମିତ୍ତ ଜ୍ଞାନ, ଯନ୍ତ୍ରମାତୃକା, ଧାରଣ-ସଂବାଚ୍ୟ, ମାନସୀ କାବ୍ୟକ୍ରିୟା, ଅଭିଧାନକୋଷ, ଛଳିତ ଯୋଗ, ବସ୍ତ୍ରଗୋପନ, ଦ୍ୟୁତବିଶେଷ, ବାଲକ୍ରୀଡ଼ା, ଛନ୍ଦୋଜ୍ଞାନ, କ୍ରିୟା ବିକଳ୍ପ, ବୈନାୟିକ, ବୈଜୟିକ, ବ୍ୟାୟାମିକୀ ବିଦ୍ୟା, କେଶମାର୍ଜନ, ଚନ୍ଦ୍ରଶାଳାକୃତି ଉଲ୍ଲବିକାର କ୍ରିୟା, ବୀଣାଡମରୁକ ବାଦ୍ୟ, ତକ୍ଷଣ, ବ୍ୟାୟାମିକୀ ବିଦ୍ୟା ।

ଗୁରୁକୁଳରେ ଅଧ୍ୟୟନ ସମାପ୍ତ ହେବାପରେ ବିଦ୍ୟାର୍ଥୀ ଯେତେବେଳେ ବ୍ରହ୍ମଚର୍ଯ୍ୟ-ଆଶ୍ରମ ପରିତ୍ୟାଗ କରି ଗୃହସ୍ଥ-ଆଶ୍ରମରେ ପ୍ରବେଶ କରିବାକୁ ଇଚ୍ଛା ପୋଷଣ କରେ, ସେତେବେଳେ ସେ ନିଜ ଗୁରୁଙ୍କୁ ସନ୍ତୁଷ୍ଟ କରିବାପାଇଁ ତଥା ଗୁରୁ ପ୍ରଦତ୍ତ ବିଦ୍ୟାର ସଫଳତା ନିମିତ୍ତ ଅନ୍ତିମ ଆଶୀର୍ବାଦ ନେବାପାଇଁ ଗୁରୁଙ୍କ ନିକଟରେ ଉପସ୍ଥିତ ହୁଏ ଏବଂ ଗୁରୁ-ଦକ୍ଷିଣା ସ୍ୱରୂପ ଗୁରୁଙ୍କର ଇଚ୍ଛିତ ପ୍ରିୟ ବସ୍ତୁ ପ୍ରଦାନ କରିବାକୁ ସଂକଳ୍ପବଦ୍ଧ ହୋଇ ତନ୍ନିମିତ୍ତ ଗୁରୁଙ୍କୁ ପ୍ରାର୍ଥନା କରେ ।

ଭଗବାନ ଶ୍ରୀକୃଷ୍ଣ ମଧ୍ୟ ସମସ୍ତ ବିଦ୍ୟା ଲାଭ କରିବା ପରେ ଯେତେବେଳେ ଗୁରୁ ସାନ୍ଦୀପନିଙ୍କ ନିକଟରେ ଏହି ପ୍ରସ୍ତାବ ରଖିଲେ, ସେତେବେଳେ ସାନ୍ଦୀପନି କୃତ-କୃତ୍ୟ ହୋଇ ପଡ଼ିଲେ । କିନ୍ତୁ କୌଣସି ପାର୍ଥିବ ବସ୍ତୁ ପ୍ରତି ତାଙ୍କର କାମନା ନ ଥିଲା । ସେ ତ ଭଗବାନଙ୍କୁ ଶିକ୍ଷା ଦେବାର ଗୌରବ ଲାଭ କରିଥିଲେ । କିନ୍ତୁ ଗୁରୁ ପତ୍ନୀଙ୍କର ପୁତ୍ରୈଷଣା ପ୍ରବଳଥିବାରୁ ସେ ପ୍ରଭାସ ତୀର୍ଥର ଦୁର୍ଘଟଣା*ବିଷୟ ସ୍ମରଣ କରି ମୃତ ପୁତ୍ରକୁ ଫେରାଇ ଆଣିବାପାଇଁ ଶ୍ରୀକୃଷ୍ଣଙ୍କୁ ଅନୁରୋଧ କଲେ ।

'ତଥାସ୍ତୁ' କହି ଶ୍ରୀକୃଷ୍ଣ ରଥ ଆରୋହଣ ପୂର୍ବକ ପ୍ରଭାସ-କ୍ଷେତ୍ରରେ ପହଞ୍ଚିଲେ ଏବଂ ସମୁଦ୍ର କୂଳରେ କିଛି ସମୟ ଅବସ୍ଥାନ କଲେ । ସମୁଦ୍ର ତାଙ୍କୁ ପରମେଶ୍ୱର ବୋଲି ଜାଣିପାରି ତାଙ୍କର ଯଥାଯୋଗ୍ୟ ପୂଜା କରିଥିଲେ । ଶ୍ରୀକୃଷ୍ଣ ତାଙ୍କୁ କହିଲେ—"ତୁମେ ତୁମର ବିଶାଳ ଲହରୀ ଦ୍ୱାରା ଆମ ଗୁରୁ ପୁତ୍ରଙ୍କୁ ହରଣ କରି ନେଇଛ; ଶୀଘ୍ର ତାଙ୍କୁ ଫେରାଇ ଦିଅ ।"

ସମୁଦ୍ର କହିଲେ—"ମୁଁ ଆପଣଙ୍କ ଗୁରୁ ପୁତ୍ରଙ୍କୁ ନେଇ ନାହିଁ । ମୋ ଭିତରେ ସଂହ୍ଲାଦର ପୁତ୍ର ପଞ୍ଚଜନ ଦୈତ୍ୟ ଶଙ୍ଖ ରୂପ ଧାରଣ କରି ଅବସ୍ଥାନ କରୁଛି, ସମ୍ଭବତଃ ସେ ଆପଣଙ୍କ ଗୁରୁପୁତ୍ରଙ୍କୁ ହରଣ କରି ନେଇଛି । ଆପଣ ତାକୁ ହତ୍ୟା କରି ଗୁରୁପୁତ୍ରଙ୍କୁ ଉଦ୍ଧାର କରନ୍ତୁ ।"

---

* ଥରେ ସାନ୍ଦୀପନିଙ୍କ ପୁତ୍ର ପ୍ରଭାସ କ୍ଷେତ୍ରର ସମୁଦ୍ରରେ ଜଳକ୍ରୀଡ଼ା କରୁଥିବା ସମୟରେ ସମୁଦ୍ରରେ ବୁଡ଼ି ପ୍ରାଣତ୍ୟାଗ କରିଥିଲେ ।

"ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣ ଜଳ ମଧ୍ୟରେ ପ୍ରବେଶ କରି ସେହି ଦୈତ୍ୟକୁ ହତ୍ୟା କଲେ; କିନ୍ତୁ ତାହା ନିକଟରେ ଗୁରୁପୁତ୍ରଙ୍କୁ ପାଇଲେ ନାହିଁ । ପରମ ଭକ୍ତ ପ୍ରହ୍ଲାଦଙ୍କର ଭ୍ରାତୃଷ୍ପୁତ୍ର ପଞ୍ଚଜନର ସ୍ମୃତି ରକ୍ଷାପାଇଁ ସେ ସ୍ୱୟଂ ସେହି ଶଙ୍ଖ ଧାରଣ କଲେ ଏବଂ ତାହାର ନାମକରଣ କଲେ 'ପାଞ୍ଚଜନ୍ୟ ଶଙ୍ଖ' । ସେହିଦିନଠାରୁ ତାହା ସର୍ବପ୍ରଥମ ଆୟୁଧ ଭାବରେ ଭଗବାନ୍ଙ୍କ ପ୍ରିୟ ହୋଇଥିଲା ।

ତଦନନ୍ତର ଶ୍ରୀକୃଷ୍ଣ ଯମରାଜାଙ୍କ ନଗରୀ ସଂଯମନୀ ପୁରକୁ ଗମନ କଲେ ଏବଂ ସେଠାରେ ଶଙ୍ଖ ବାଦନ କଲେ । ସେହି ଶଙ୍ଖଧ୍ୱନି ଶୁଣି ସମସ୍ତ ନାରକୀୟ ଜୀବ ମୁକ୍ତ ହୋଇ ବୈକୁଣ୍ଠ ଧାମକୁ ଗମନ କରିବାକୁ ଲାଗିଲେ । ଏହା ଦେଖି ଯମରାଜା ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ ଏବଂ ଭକ୍ତିର ସହିତ ଶ୍ରୀକୃଷ୍ଣଙ୍କୁ ପୂଜା କରି ନମ୍ରତାର ସହିତ କହିଲେ—"ହେ ଲୀଳା-ମାନବ ! ମୁଁ ଆପଣଙ୍କର କି ସେବା କରି ପାରିବି ?"

ଶ୍ରୀକୃଷ୍ଣ କହିଲେ—"ତୁମର ଦୂତଗଣ ଅକାଳରେ ମୋ ଗୁରୁ-ପୁତ୍ରଙ୍କୁ ଏଠାକୁ ଧରି ଆଣିଛନ୍ତି । ଅତିଶୀଘ୍ର ତାଙ୍କୁ ଫେରାଇ ଦିଅ ।"

ଯମରାଜା 'ତଥାସ୍ତୁ' କହି ସଙ୍ଗେ ସଙ୍ଗେ ଗୁରୁ-ପୁତ୍ରଙ୍କୁ ଫେରାଇ ଦେଲେ ।

ଶ୍ରୀକୃଷ୍ଣ ସମ୍ମାନର ସହିତ ଗୁରୁ-ପୁତ୍ରଙ୍କୁ ଆଣି ସାନ୍ଦୀପନିଙ୍କ ନିକଟରେ ଉପସ୍ଥିତ କରାଇଲେ ଏବଂ ଦଣ୍ଡ ପ୍ରଣାମ କରି କହିଲେ—"ଗୁରୁଦେବ ! ଆପଣଙ୍କର ଯଦି ଆଉ କିଛି କାମନା ଥାଏ, ତେବେ ତାହା ପ୍ରକାଶ କରନ୍ତୁ ।"

ସାନ୍ଦୀପନି ଉତ୍ତର ଦେଲେ—'ବତ୍ସ ! ତୁମେ ଯେଉଁ ଗୁରୁ-ଦକ୍ଷିଣା ପ୍ରଦାନ କଲ ତାହା ଅଲୌକିକ । ତୁମ ପରି ଶିଷ୍ୟ ଲାଭ କରିବା ପରେ ଗୁରୁର କୌଣସି କାମନା ଅପୂରଣୀୟ ରହେ ନାହିଁ । ହେ ବୀର ! ତୁମେ ଗୃହକୁ ପ୍ରତ୍ୟାବର୍ତ୍ତନ କର । ତୁମର କୀର୍ତ୍ତି ଶ୍ରୋତାମାନଙ୍କୁ ପବିତ୍ର କରୁ । ତୁମେ ଯେଉଁ ବିଦ୍ୟା ଅଧ୍ୟୟନ କରିଛ, ତାହା ତୁମର ଇହ ଓ ପରକାଳରେ ସମସ୍ତ ଅଭୀଷ୍ଟ ଫଳ ପ୍ରଦାନ କରିବାରେ ସମର୍ଥ ହେଉ ।"

ଗୁରୁଙ୍କ ଅନୁଜ୍ଞା ପ୍ରାପ୍ତ ହୋଇ ଶ୍ରୀକୃଷ୍ଣ ରଥ ଆରୋହଣ ପୂର୍ବକ ସ୍ୱନଗରୀକୁ ପ୍ରତ୍ୟାବର୍ତ୍ତନ କଲେ ।

ଭଗବାନ ଶ୍ରୀକୃଷ୍ଣଙ୍କୁ ଶିଷ୍ୟ ଭାବରେ ପାଇ ମହର୍ଷି ସାନ୍ଦୀପନିଙ୍କ ଜୀବନ ଧନ୍ୟ ହୋଇଥିଲା । ସେ ଆଜୀବନ ଶିଷ୍ୟମାନଙ୍କୁ ବିଦ୍ୟା ପ୍ରଦାନ କରି ଶେଷରେ ଶ୍ରୀକୃଷ୍ଣଙ୍କ ନାମ ଗ୍ରହଣ ପୂର୍ବକ ଶରୀର ତ୍ୟାଗ କରିଥିଲେ ଓ ପରମ ଧାମର ଅଧିକାରୀ ହୋଇଥିଲେ ।

●

# ରାଜର୍ଷି ଜନକ

ବିଦେହ ରାଜ୍ୟରେ ଜନକ ନାମରେ ପ୍ରସିଦ୍ଧ ଜଣେ ପରାକ୍ରମୀ ରାଜା ରାଜତ୍ୱ କରୁଥିଲେ । ତାଙ୍କର ସମସ୍ତ ବିପତ୍ତି ଦୂର ହୋଇ ଯାଇଥିଲା ଏବଂ ସମ୍ପତ୍ତି ଧନକୁ ଧନ ବୃଦ୍ଧି ପାଉଥିଲା । ସେ ସର୍ବଦା ସତ୍‌କର୍ମ ଓ ନ୍ୟାୟଯୁକ୍ତ ହୋଇ ପ୍ରଜା ପାଳନ କରୁଥିଲେ । ଥରେ ବସନ୍ତ ଋତୁରେ ସେ କୌଣସି ଏକ ପର୍ବତ ଶିଖରକୁ ଭ୍ରମଣ କରିବାକୁ ଯାଇଥିଲେ । ସେଠାରେ ତମାଳ କୁଞ୍ଜ ମଧ୍ୟରେ ସେ ସିଦ୍ଧମାନଙ୍କର ଗୀତା ଶ୍ରବଣ କରିବାର ସୁଯୋଗ ପାଇଲେ । ସିଦ୍ଧଗଣ ପରସ୍ପର ମଧ୍ୟରେ ପରମ ତତ୍ତ୍ୱ (ବ୍ରହ୍ମ) ସମ୍ବନ୍ଧରେ ବିଚାର ଓ ନିର୍ଣ୍ଣୟ କରୁଥିଲେ । ପ୍ରଥମ ସିଦ୍ଧ କହୁଥିଲେ—'ଏହି ସଂସାର ଅନିତ୍ୟ । ଭୋଗବିଳାସ ଆଧି କ୍ଷଣ ଭଙ୍ଗୁର । ତେଣୁ ମୁଁ ସେହି ସନାତନ ଅକ୍ଷର ପୁରୁଷ ପରମାତ୍ମାଙ୍କୁ ସମାଧି ଦ୍ୱାରା ଉପାସନା କରୁଅଛି ।" ଦ୍ୱିତୀୟ ସିଦ୍ଧ କହୁଥିଲେ—"ଦୃଶ୍ୟ, ଦର୍ଶନ ଓ ଦ୍ରଷ୍ଟାର ତ୍ରିପୁଟୀ ପରିତ୍ୟାଗ କଲେ ଯେଉଁ ବସ୍ତୁର ଦର୍ଶନ ବା ଜ୍ଞାନରୂପ ପ୍ରକାଶିତ ହୁଏ, ସେହି ବସ୍ତୁର ଆତ୍ମାଙ୍କୁ ମୁଁ ଉପାସନା କରୁଅଛି ।" ତୃତୀୟ ସିଦ୍ଧ କହୁଥିଲେ—"ଅସ୍ତି ଓ ନାସ୍ତି, ଏହି ଦ୍ୱୟ ମଧ୍ୟରେ ଯିଏ ତାଙ୍କର ସାକ୍ଷୀରୂପ ସହିତ ସର୍ବଦା ବିଦ୍ୟମାନ ରହେ ତଥା ପ୍ରକାଶମୟ ପଦାର୍ଥ ସବୁକୁ ପ୍ରକାଶ ପ୍ରଦାନ କରେ, ମୁଁ ସେହି ପରମାତ୍ମାଙ୍କୁ ଉପାସନା କରୁଅଛି ।" ଚତୁର୍ଥ ସିଦ୍ଧ କହୁଥିଲେ—"ଯାହାଙ୍କ ମଧ୍ୟରେ ସମସ୍ତେ ବିଦ୍ୟମାନ ଏବଂ ଯିଏ ସମସ୍ତଙ୍କ ମଧ୍ୟରେ ବିଦ୍ୟମାନ, ଯାହାଙ୍କ ଦ୍ୱାରା ସମସ୍ତେ ସୃଷ୍ଟ ତଥା ଯାହାଙ୍କପାଇଁ ସମସ୍ତେ ବିଦ୍ୟମାନ, ଯିଏ ସ୍ୱୟଂ ହିଁ ଏହି ସମସ୍ତ; ମୁଁ ସେହି ପରମାତ୍ମାଙ୍କୁ ଉପାସନା କରୁଅଛି ।" ପଞ୍ଚମ ସିଦ୍ଧ କହୁଥିଲେ—"ଯିଏ ଅକାରଠାରୁ ଆରମ୍ଭ କରି ହକାର ପର୍ଯ୍ୟନ୍ତ ସମସ୍ତ ବର୍ଣ୍ଣରେ ସ୍ଥିତ ହୋଇ ଉଚ୍ଚାରିତ ହୁଏ, ମୁଁ ସେହି ପରମାତ୍ମାଙ୍କୁ ଉପାସନା କରୁଅଛି ।" ଷଷ୍ଠ ସିଦ୍ଧ କହୁଥିଲେ—"ଯିଏ ହୃଦୟସ୍ଥ ଗୁହାରେ ବିରାଜିତ ଦୀପ୍ତିମାନ ପରମେଶ୍ୱରଙ୍କୁ ପରିତ୍ୟାଗ କରି ବିଷୟଭୋଗ ଗ୍ରହଣ କରେ, ସିଏ କୌସ୍ତୁଭମଣି ପରିତ୍ୟାଗ କରି ସତେ ଯେପରି କାଚଖଣ୍ଡ ଗ୍ରହଣ କରିଥାଏ ।" ସପ୍ତମ ସିଦ୍ଧ କହୁଥିଲେ—'ଆଶା ସମୂହକୁ ପରିତ୍ୟାଗ କରି ପାରିଲେ ହିଁ ହୃଦୟରେ ଅବସ୍ଥିତ ଜ୍ଞାନରୂପ ପରଂବ୍ରହ୍ମଙ୍କର ଦର୍ଶନ ମିଳିଥାଏ ।" ଅଷ୍ଟମ ସିଦ୍ଧ କହୁଥିଲେ—"ଯେଉଁ ଦୁର୍ବୁଦ୍ଧି ପୁରୁଷ ଭୋଗ

ପଦାର୍ଥର ଅତ୍ୟେନ୍ତ ନିଂସ୍ୱତା ଜାଣି ମଧ୍ୟ ବାରମ୍ବାର ନିଜର ମନକୁ ସେଥିରେ ଜଡ଼ିତ କରିଦିଏ, ସେ ହିଁ ପ୍ରକୃତରେ ପଶୁ ପଦବାଚ୍ୟ ।'' ନବମ ସିଦ୍ଧ କହୁଥିଲେ—''ଇନ୍ଦ୍ରିୟ-ରୂପୀ ସର୍ପକୁ ବିବେକ-ବୈରାଗ୍ୟ ରୂପୀ ଯଷ୍ଟି ଦ୍ୱାରା ହତ୍ୟା କରି ପରମାନନ୍ଦ ପରମେଶ୍ୱର ଅର୍ଥାତ୍ ଅକ୍ଷୟ ସୁଖ ଲାଭ କରିବା ଉଚିତ ।''

ସିଦ୍ଧମାନଙ୍କର ଗୀତା ଶ୍ରବଣ କରି ରାଜା ଜନକ ନିଜ ଭବନକୁ ଫେରି ଆସିଲେ ଏବଂ ଏକାନ୍ତରେ ବସି ବିଚାର କଲେ—''ଅହୋ ! ବଡ଼ ଦୁଃଖର କଥା ଯେ ଜନ୍ମ-ଜରା-ବ୍ୟାଧି-ମୃତ୍ୟୁ ଆଦି କାରଣରୁ ଲୋକ ସମୂହ ଯେଉଁ କଷ୍ଟପ୍ରଦ ଚଞ୍ଚଳ ଦଶା ପ୍ରାପ୍ତ ହୁଅନ୍ତି, ମୁଁ ବଳ ପୂର୍ବକ ସେଥିରେ ଜଡ଼ିତ ହୋଇ ପଡ଼ିଛି ଏବଂ ଜନ୍ମ-ମୃତ୍ୟୁର ଚକ୍ରରେ ସର୍ବଦା ଘୂରୁଅଛି । ଯେଉଁ କାଳର କୌଣସି ଅନ୍ତ ନାହିଁ, ମୋର ଜୀବନ ସେହି କାଳର ଏକ କ୍ଷୁଦ୍ରତମ ଅଂଶ ମାତ୍ର । ତଥାପି ମୁଁ ସେଥିରେ ଆସକ୍ତ ହୋଇ ପଡ଼ିଛି । ଯେଉଁ ରାଜ୍ୟ କେବଳ ଜୀବନ ଥିବା ପର୍ଯ୍ୟନ୍ତ ଭୋଗ୍ୟ, ବାସ୍ତବିକ୍ ତାହା କେତେ ନଗଣ୍ୟ । କିନ୍ତୁ ମୁଁ ସେଥିରେ ସନ୍ତୁଷ୍ଟ ହୋଇ ମୂର୍ଖ ପରି ନିଶ୍ଚିନ୍ତ ହୋଇ ବସିଅଛି । ମୋ ମୂଢତା ପାଇଁ ମୁଁ ଦୁଃଖିତ ହେଉନାହିଁ କାହିଁକି ? ଏହି ଜଗତର କୌଣସି ବସ୍ତୁ ସତ୍ୟ କିମ୍ବା ସ୍ମରଣୀୟ ନୁହେଁ; ସବୁ କ୍ଷଣିକ । ଆଜି ଯେଉଁ ଦେହ ଏତେ ପ୍ରିୟ, କିଛି ଦିନ ପରେ ତାହା ମାଟିରେ ମିଶିଯିବ । ତେଣୁ ରେ ମୂର୍ଖ ମନ ! ଏହି କ୍ଷଣିକ ଜଗତ ପ୍ରତି ତୋର ଏତେ ଦୃଢ଼ ଆସ୍ଥା କାହିଁକି ? ଏ ରାଜ୍ୟ, ଏ ବନ୍ଧୁ ବାନ୍ଧବ, ଏ ଗଜ ବାହନ ତଥା ଅନ୍ୟ ଭୋଗ୍ୟ-ପଦାର୍ଥ ସବୁ ମୋ ମୃତ୍ୟୁ ପରେ ମୋ'ଠାରୁ ଦୂରେଇ ଯିବେ । ତେଣୁ ଏ ସବୁ ମୁଁ କାହିଁକି ବର୍ତ୍ତମାନ ପରିତ୍ୟାଗ ନ କରିବି ? ରେ ମନ ! ଏ ସମସ୍ତ ଅନିତ୍ୟ । ସେଥିପାଇଁ ତୁ ସତ୍ ପଦାର୍ଥ ପରମାନନ୍ଦ ପରମାତ୍ମାଙ୍କ ଅନ୍ୱେଷଣ କରି ଅକ୍ଷୟ ସୁଖ ଲାଭ କରିବା ନିମିତ୍ତ ପ୍ରୟାସ କରିବା ଉଚିତ । ପ୍ରାଚୀନ କାଳୀନ ରାଜାମାନଙ୍କର ବୈଭବ କେଉଁଆଡ଼େ ଗଲା ? ଯେଉଁ ଯେଉଁ ସୁନ୍ଦର ବସ୍ତୁ ପ୍ରତି ମୋର ସ୍ନେହ ଜଡ଼ିତ, ତାହା ସବୁ ଅସତ୍ ହେଲେ ମଧ୍ୟ ମୃଗମରୀଚିକା ସଦୃଶ ସତ୍ୟ ପରି ପ୍ରତିଭାତ ହୋଇଥାଏ । ସେ ସବୁ ପ୍ରତି ମୋହ ପ୍ରଦର୍ଶନ କରିବା ମୂର୍ଖତା ନୁହେଁ ତ ଆଉ କ'ଣ ? ଯେପରି ପତଙ୍ଗ ଅଗ୍ନିଶିଖା ପ୍ରତି ଆସକ୍ତ ହୋଇ ନିଜର ଜୀବନ ନଷ୍ଟ କରିଦିଏ, ସେହିପରି ପାର୍ଥିବ ପଦାର୍ଥ ପ୍ରତି ଆସ୍ଥା ସ୍ଥାପନ କଲେ ନିଜର ବିନାଶ ହିଁ ହୋଇଥାଏ । ଏହି ଅସତ୍ ସଂସାରର ରମଣୀୟତାରେ ମୁଁ ଆଉ ରମଣ କରିବି ନାହିଁ । ଅଜ୍ଞାନ-ମୋହିତ କ୍ଷୁଦ୍ର ପ୍ରାଣୀ ବାରମ୍ବାର ପୃଥିବୀରେ ଜନ୍ମ ଗ୍ରହଣ କରିଥାଏ । ମୁଁ କିନ୍ତୁ ବର୍ତ୍ତମାନ ଜ୍ଞାନ ଦ୍ୱାରା ପ୍ରବୁଦ୍ଧ ହୋଇ ଯାଇଛି । ମୁଁ ମୋର ପରମାର୍ଥିକ ଧନ ଅପହରଣ କରୁଥିବା ଚୋର (ମନ)କୁ ଚିହ୍ନି ପାରିଛି । ତାହା ମୋତେ ପତନୋନ୍ମୁଖୀ କରିବାକୁ ଚେଷ୍ଟା କରୁଛି । ମୁଁ ତାକୁ ହତ୍ୟା କରିବି । ପରମାତ୍ମା ତତ୍ତ୍ୱରୂପୀ ଯଥାର୍ଥ ଜ୍ଞାନ ଦ୍ୱାରା ମୁଁ ମୋର ଅଜ୍ଞାନ ଛେଦନ କରିବି ।''

ଏପରି ବିଚାର କରି ରାଜା ଜନକ ଧୀର ଓ ସ୍ଥିର ବୁଦ୍ଧି ହୋଇଗଲେ । ସେ ରାଜକାର୍ଯ୍ୟ ପରିଚାଳନା କଲେ ମଧ୍ୟ ତାଙ୍କର ଦୃଷ୍ଟି ବଦଳି ଗଲା । ତାଙ୍କ ମନରୁ ମମତା ଓ ଆସକ୍ତି ଦୂର ହୋଇଗଲା । ତାଙ୍କ ପାଇଁ ହର୍ଷ-ବିଷାଦ, ଇଷ୍ଟ-ଅନିଷ୍ଟ, ସୁଖ-ଦୁଃଖ ସବୁ ସମାନ ହୋଇଗଲା । ଦୃଶ୍ୟ ଜଗତକୁ ସେ ମନରେ ଗ୍ରହଣ କଲେ ନାହିଁ, ପରିତ୍ୟାଗ ମଧ୍ୟ କଲେ ନାହିଁ । ଏହିପରି ଆତ୍ମବିବେକ ଅନୁସନ୍ଧାନ କରି ରାଜା ଜନକଙ୍କର ପରମାତ୍ମା ବିଷୟକ ପଦାର୍ଥ ଜ୍ଞାନ ଅନନ୍ତ ଓ ଅତ୍ୟନ୍ତ ବିଶୁଦ୍ଧ ହୋଇଗଲା ଏବଂ ସେ ଜୀବନ୍ମୁକ୍ତ ହୋଇଗଲେ ।

ତଦନନ୍ତର ସେ ରାଜକାର୍ଯ୍ୟ ଓ ସତ୍ସଙ୍ଗ ଉଭୟ ଚାଲୁ ରଖିଲେ । ଅନେକ ସାଧୁ ସନ୍ନ୍ୟାସୀ ତାଙ୍କ ନିକଟକୁ ଯିବା ଆସିବା କଲେ ତଥା ତାଙ୍କ ନିକଟରେ ଅବସ୍ଥାନ କଲେ । ମହର୍ଷି ଶୁକଦେବଙ୍କ ପରି ଅନେକ ତତ୍ତ୍ୱଦର୍ଶୀ ଋଷି ମହାତ୍ମା ଜ୍ଞାନଚର୍ଚ୍ଚା ପାଇଁ ତାଙ୍କ ନିକଟକୁ ଯିବା ଆସିବା କରୁଥିଲେ । ଥରେ ତାଙ୍କ ଦରବାରକୁ ମହର୍ଷି ବେଦବ୍ୟାସ ଆଗମନ କରିଥିଲେ । ଆଦର ସତ୍କାର ସହିତ ତାଙ୍କୁ ନିବାସ ପ୍ରଦାନ କରାଗଲା । ସତ୍ସଙ୍ଗର ତିଥି-ମୂହୂର୍ତ୍ତ ନିର୍ଣ୍ଣିତ ହେଲା । ସମସ୍ତ ସାଧୁ-ସମାଜ ସହିତ ବ୍ୟାସଦେବ ସତ୍ସଙ୍ଗ ଭବନରେ ଉପସ୍ଥିତ ହେଲେ; କିନ୍ତୁ ରାଜା ଜନକଙ୍କର ଆସିବାରେ କିଞ୍ଚିତ୍ ବିଳମ୍ବ ହେଲା । ସାଧୁଗଣ ବ୍ୟାସଦେବଙ୍କୁ କହିଲେ—"ମହାରାଜ ! ଆପଣ ପ୍ରବଚନ ଆରମ୍ଭ କରନ୍ତୁ । ସେ ତ ରାଜା; ବୋଧହୁଏ ରାଜକାର୍ଯ୍ୟରେ ଜଡ଼ିତ ହୋଇ ପଡ଼ିଛନ୍ତି ।"

ଯାହା ହେଉ, କିଛି ସମୟ ପରେ ରାଜା ଜନକ ଆସି ପହଞ୍ଚିଲେ । ସତ୍ସଙ୍ଗ ଆରମ୍ଭ ହେଲା । କଥା ମଝିରେ ମହର୍ଷି ବ୍ୟାସଦେବ ନିଜର ଯୋଗବଳ ଦ୍ୱାରା ଜନକ ପୁରୀରେ ନିଆଁ ଲଗାଇ ଦେଲେ ଏବଂ ଚିତ୍କାର କରି କହିଲେ—"ଭାଇଗଣ ! ଜନକ-ପୁରୀରେ ନିଆଁ ଲାଗିଛି; ଅତି ଶୀଘ୍ର ଧାଇଁ ଯାଇ ନିଆଁ ଲିଭାଇ ଦିଅ, ନଚେତ୍ ରାଜଭବନ ପର୍ଯ୍ୟନ୍ତ ନିଆଁ ମାଡ଼ି ଆସିବ ।" ସାଧୁଗଣ ସଙ୍ଗେ ସଙ୍ଗେ ସତ୍ସଙ୍ଗ ସ୍ଥଳରୁ ଉଠି ନିଜ ନିଜର ଲୁଗାପଟା ରକ୍ଷା କରିବାଲାଗି ଧାଇଁବାକୁ ଲାଗିଲେ । କିନ୍ତୁ ରାଜା ଜନକ ଶାନ୍ତ ଓ ସ୍ଥିରଚିତ୍ତ ହୋଇ ପୂର୍ବପରି ବସି ରହିଲେ । ବ୍ୟାସ ପଚାରିଲେ—"ରାଜନ୍ ! ନିଆଁ ରାଜଭବନ ପର୍ଯ୍ୟନ୍ତ ମାଡ଼ି ଆସିଲାଣି । ଆପଣ ଯାଇ ତାହାକୁ ରକ୍ଷା କରନ୍ତୁ ।"

ରାଜା ଜନକ ଉତ୍ତର ଦେଲେ—"ଭଗବନ୍ ! ଜନକପୁରୀରେ ମୋର କିଛି ହେଲେ ନାହିଁ । 'ମିଥିଳାୟାଂ ପ୍ରଦଗ୍ଧାୟାଂ ନ ମେ ଦହ୍ୟତି କିଂଚନ' । ଯାହାଙ୍କର ଏହି ଜନକପୁରୀ ସେହି ବିଶ୍ୱାତ୍ମା ହିଁ କେବଳ ଅଗ୍ନି ନିର୍ବାପନପାଇଁ ସମର୍ଥ । ତେଣୁ ମୁଁ ଭୟ କରିବି କାହିଁକି ?"

ବ୍ୟାସଦେବ ଅଗ୍ନି ଶାନ୍ତ କରିଦେଲେ ଏବଂ ଜନକଙ୍କୁ କହିଲେ—"ରାଜନ୍ ! ବାସ୍ତବରେ ତୁମେ ଅଭୟପଦ ପ୍ରାପ୍ତ ହୋଇଛ; ଉତ୍ତମ ଜ୍ଞାନ ଦ୍ୱାରା ସମ୍ପନ୍ନ ହୋଇଛ ଏବଂ କେବଳ ଲୋକ ସଂଗ୍ରହ ପାଇଁ ହିଁ ଏହି ସତ୍ସଙ୍ଗ ଅନୁଷ୍ଠାନ କରୁଅଛ ।"

ଏହି ରାଜର୍ଷି ଜନକଙ୍କ କଥା ଗୀତାବକ୍ତା ଭଗବାନ ଶ୍ରୀକୃଷ୍ଣ ମଧ୍ୟ ଅର୍ଜ୍ଜୁନଙ୍କୁ ଶୁଣାଇଛନ୍ତି—

"କର୍ମଣୈବ ହି ସଂସିଦ୍ଧି ମାସ୍ଥିତା ଜନକାଦୟଃ
ଲୋକ ସଂଗ୍ରହମେବାପି ସଂପଶ୍ୟନ୍ କର୍ତ୍ତୁମର୍ହସି ।"

(ଶ୍ରୀମଦ୍‌ଭଗବଦ୍‌ଗୀତା, ୩।୨୦)

ଜନକାଦି ଜ୍ଞାନୀ ପୁରୁଷ ହିଁ ଆସକ୍ତି ରହିତ କର୍ମ ଦ୍ୱାରା ପରମସିଦ୍ଧି ପ୍ରାପ୍ତ ହୋଇଛନ୍ତି । ସେଥିପାଇଁ ତଥା ଲୋକ ସଂଗ୍ରହପାଇଁ ତୁମେ କର୍ମ କରିବା ଉଚିତ ।"

ଆସକ୍ତି ରହିତ ତଥା ଫଳେଚ୍ଛାରହିତ ହୋଇ ଜ୍ଞାନ ପୂର୍ବକ କର୍ମ କରିବା ଥିଲା ରାଜର୍ଷି ଜନକଙ୍କର ଆଦର୍ଶ । ସେଥିପାଇଁ ତାଙ୍କୁ 'ବିଦେହ' ନାମରେ ଅଭିହିତ କରାଯାଏ । ଜନକ ଓ ଶ୍ରୀକୃଷ୍ଣ ଉଭୟେ କର୍ମଯୋଗର ମହାନ୍ ନିଦର୍ଶନ । ଲୋକସଂଗ୍ରହ ବୁଦ୍ଧିରେ ବିଶ୍ୱକଲ୍ୟାଣକାରୀ କର୍ତ୍ତବ୍ୟ କରୁଥିବା ପୁରୁଷ ହିଁ ବାସ୍ତବିକ୍ 'କର୍ମଯୋଗୀ' ପଦବାଚ୍ୟ ।

# ମହର୍ଷି ଅଷ୍ଟାବକ୍ର

ଅଙ୍ଗ ଦେଶର ରାଜଧାନୀ ଚମ୍ପାନଗରଠାରୁ ୨୦ ମାଇଲ ଦୂରରେ ତଥା ବର୍ତ୍ତମାନର ଭାଗଲପୁରଠାରୁ ୧୬ ମାଇଲ ପୂର୍ବରେ ଉତ୍ତର ବାହିନୀ ଗଙ୍ଗାର ପୂର୍ବ ତଟବର୍ତ୍ତୀ ଅଞ୍ଚଳରେ 'କହଲ ଗ୍ରାମ' ନାମରେ ଗୋଟିଏ କ୍ଷୁଦ୍ର ସହର ପରିଦୃଷ୍ଟ ହୁଏ । ପ୍ରାଚୀନ କାଳରେ ସେଠାରେ ମହର୍ଷି କହୋଡ଼ଙ୍କର ଆଶ୍ରମ ଥିଲା । ମହର୍ଷି କହୋଡ଼ ଉଦ୍ଦାଳଙ୍କ ଆଶ୍ରମରେ ଅବସ୍ଥାନ କରି ବିଦ୍ୟାଧ୍ୟୟନ କରିଥିଲେ । ସେ ଅତ୍ୟନ୍ତ ତୀକ୍ଷ୍ଣ-ବୁଦ୍ଧି ଥିଲେ ଏବଂ ଗୁରୁକୁଳର ସମସ୍ତ ନିୟମ ପାଳନ କରୁଥିଲେ । ତାଙ୍କର ଶିକ୍ଷା ସମାପ୍ତ ହେବା ପରେ ଗୁରୁ ଉଦ୍ଦାଳକ ତାଙ୍କୁ ସୁଶୀଳ ଓ ଗୁଣବାନ୍ ମନେକରି ତାଙ୍କ ସହିତ ନିଜ ପୁତ୍ରୀ ସୁଜାତାଙ୍କର ବିବାହ କରାଇ ଦେଇଥିଲେ । ଏହି ସୁଜାତାଙ୍କ ଗର୍ଭରୁ ମହର୍ଷି କହୋଡ଼ଙ୍କ ଔରସରେ ଜନ୍ମ ଲାଭ କରିଥିଲେ ମହର୍ଷି ଅଷ୍ଟାବକ୍ର ।

ମହାଭାରତରେ ବର୍ଣ୍ଣିତ ଅଛି ଯେ ଅଷ୍ଟାବକ୍ର ଗର୍ଭରେ ଥିବା ସମୟରେ ମଧ୍ୟ ବେଦର ସମସ୍ତ ଜ୍ଞାନ ଲାଭ କରିଥିଲେ । ଥରେ ତାଙ୍କର ପିତା ବେଦର ଅଶୁଦ୍ଧ ପାଠ କରିବାରୁ ସେ ଗର୍ଭରେ ଥାଇ କହି ପକାଇଲେ—"ପିତା ! ଆପଣ ବେଦକୁ କାହିଁକି ଅଶୁଦ୍ଧ ଭାବେ ପାଠ କରୁଛନ୍ତି ?"

ଏହା ମହର୍ଷି କହୋଡ଼ଙ୍କୁ ଖୁବ୍ ବାଧିଲା । ତେଣୁ ସେ ପୁତ୍ରକୁ ଅଭିଶାପ ଦେଇ କହିଲେ—"ତୋର ବୁଦ୍ଧି ଏତେ ବକ୍ର ! ଆଜିଠାରୁ ତୋ ଦେହର ଆଠଟି ଅଙ୍ଗ ବକ୍ର ହୋଇଯାଉ ।"

ମହର୍ଷିଙ୍କ ବାକ୍ୟ ଅନ୍ୟଥା ହେବାର ନୁହେଁ । ତେଣୁ ଜନ୍ମ ସମୟରେ ଅଷ୍ଟାବକ୍ରଙ୍କ ଦେହର ଆଠଟି ଅଙ୍ଗ ବକ୍ର ହୋଇଥିଲା । ସେଥିପାଇଁ ସେ 'ଅଷ୍ଟାବକ୍ର' ନାମରେ ପ୍ରସିଦ୍ଧ ହୋଇଥିଲେ । କିନ୍ତୁ ତାଙ୍କର ଜନ୍ମ ପୂର୍ବରୁ ମହର୍ଷି କହୋଡ଼ ବିଦେହରାଜଙ୍କ ଯଜ୍ଞ ସ୍ଥଳକୁ ଗମନ କରିଥିଲେ । 'ବନ୍ଦୀ' ଥିଲେ ରାଜା ଜନକଙ୍କ ସଭାର ପ୍ରଧାନ ଆଧ୍ୟକ୍ଷ । ଯେଉଁ ବିଦ୍ୱାନ୍‌ଗଣ ରାଜସଭାରେ ଉପସ୍ଥିତ ହେଉଥିଲେ ବନ୍ଦୀ ସେମାନଙ୍କୁ ତର୍କରେ ପରାସ୍ତ କରି ସମୁଦ୍ର ଜଳରେ ବୁଡ଼ାଇ ବରୁଣ ଲୋକକୁ ପଠାଇ

ଦେଉଥିଲେ । ସେ ସମୟରେ ବରୁଣ ଯେଉଁ ଯଜ୍ଞ ଅନୁଷ୍ଠାନ କରୁଥିଲେ, ସେଥିରେ ପଣ୍ଡିତମାନଙ୍କର ଅଭାବ ଥିବାରୁ ବରୁଣଙ୍କର ଅନୁରୋଧ ରକ୍ଷା କରି ବନ୍ଦୀ ସେପରି କାର୍ଯ୍ୟ କରୁଥିଲେ ବୋଲି କୁହାଯାଏ । ମହର୍ଷି କହୋଡ଼ଙ୍କର ମଧ୍ୟ ସେହି ଦଶା ହୋଇଥିଲା । ତେଣୁ ଅଷ୍ଟାବକ୍ରଙ୍କର ଜନ୍ମ ସମୟକୁ ମହର୍ଷି କହୋଡ଼ ବରୁଣ ଲୋକକୁ ଗମନ କରିଥିଲେ । ଅଷ୍ଟାବକ୍ର ଥିଲେ ଅତ୍ୟନ୍ତ ତୀକ୍ଷ୍ଣ ବୁଦ୍ଧି ସମ୍ପନ୍ନ । ସେ ନିଜର ମାମୁଁ ଶ୍ୱେତକେତୁ (ଉଦ୍ଦାଳକଙ୍କ ପୁତ୍ର)ଙ୍କ ସହିତ ଲେଖାପଢ଼ା କରୁଥିଲେ । ସେ ନିଜ ପିତାଙ୍କୁ ତ ଦେଖି ନ ଥିଲେ, ତେଣୁ ଉଦ୍ଦାଳକଙ୍କୁ ପିତା ବୋଲି ସମ୍ବୋଧନ କରୁଥିଲେ । ଦିନେ ସେ ପ୍ରସଙ୍ଗକ୍ରମେ ଜାଣି ପାରିଲେ ଯେ ପ୍ରକୃତରେ ଉଦ୍ଦାଳକ ତାଙ୍କର ପିତା ନୁହଁନ୍ତି ଏବଂ ତାଙ୍କ ପିତାଙ୍କର ଲୋକୋତ୍ତର-ଗମନ ବାର୍ତ୍ତା ତାଙ୍କଠାରୁ ଗୁପ୍ତ ରଖାଯାଇଛି । ସେ ସଙ୍ଗେ ସଙ୍ଗେ ମାତାଙ୍କ ନିକଟକୁ ଯାଇ ସବୁ କଥା ବୁଝିଲେ ଏବଂ ବନ୍ଦୀଙ୍କ ସହିତ ଶାସ୍ତ୍ରାର୍ଥ କରିବାପାଇଁ ବାହାରିଲେ । ମାତା ତାଙ୍କୁ ଯେତେ ବାରଣ କଲେ ମଧ୍ୟ ସେ ମାନିଲେ ନାହିଁ; ସିଧା ଯାଇ ରାଜା ଜନକଙ୍କ ରାଜ ସଭାରେ ଉପସ୍ଥିତ ହେଲେ । ତାଙ୍କର ଅଷ୍ଟବକ୍ର ଶରୀର ଦେଖି ସଭାସଦ୍‌ଗଣ ହସିବାକୁ ଲାଗିଲେ । ଯେତେବେଳେ ସେମାନେ ଜାଣିଲେ ଯେ ବନ୍ଦୀଙ୍କ ସହିତ ଶାସ୍ତ୍ରାର୍ଥ କରିବାକୁ ଆସିଛନ୍ତି, ସେତେବେଳେ ସେମାନେ ଖୁବ୍ ଜୋର୍‌ରେ ହସି ଉଠିଲେ ।

ଅଷ୍ଟାବକ୍ର କହିଲେ—"ବିଦେହ ରାଜଙ୍କ ରାଜସଭାରେ କେହି କେହି ପଣ୍ଡିତ ଥିବାର ମୁଁ ଶୁଣିଥିଲି । କିନ୍ତୁ ଦେଖୁଛି, ଏଠାରେ ସମସ୍ତେ ଜଣେ ଜଣେ ମୋଚି ।"

ଏହା ଶୁଣି ପଣ୍ଡିତମାନେ ପରସ୍ପରର ମୁହଁକୁ ଚାହିଁବାକୁ ଲାଗିଲେ । ଜନକ ପଚାରିଲେ—"ବ୍ରହ୍ମନ୍ ! ଆପଣ ସମସ୍ତଙ୍କୁ ମୋଚି ବୋଲି କିପରି କହିଲେ ? ଏଠାରେ ତ ବଡ଼ ବଡ଼ ଶ୍ରୋତ୍ରିୟ ବ୍ରହ୍ମନିଷ୍ଠ ବ୍ରାହ୍ମଣ ପଣ୍ଡିତ ଉପସ୍ଥିତ ଅଛନ୍ତି ।"

ଅଷ୍ଟାବକ୍ର କହିଲେ—"ଦେଖନ୍ତୁ, ଆତ୍ମା ନିତ୍ୟ ଶୁଦ୍ଧ, ନିର୍ଲେପ ଓ ନିର୍ବିକାର । ଯେଉଁ ଆତ୍ମାର କୌଣସି ବିକାର ନାହିଁ, ଦୋଷ ନାହିଁ, ତାହା ହିଁ ମୋ ମଧ୍ୟରେ ଅବସ୍ଥିତ । ଯିଏ ଆତ୍ମାକୁ ଚିହ୍ନିପାରେ, ସେ ହିଁ ପ୍ରକୃତରେ ଜ୍ଞାନୀ ଓ ପଣ୍ଡିତ । ତାହା ନ କରି ଯିଏ ଚର୍ମଦ୍ୱାରା ଢଙ୍କା ହୋଇଥିବା ଅସ୍ଥି-ମାଂସଯୁକ୍ତ ଶରୀରକୁ ଦେଖି ହସି ଉଠେ, ତାହାର ଦୃଷ୍ଟି ତ ଆତ୍ମା ଉପରେ ନ ଥାଏ, ତାହାର ଦୃଷ୍ଟି ଥାଏ ଚର୍ମ ଉପରେ । ଚର୍ମ ଉପରେ ଦୃଷ୍ଟି ରଖୁଥିବା ମନୁଷ୍ୟ ମୋଚି ନୁହେଁ ତ ଅଉ କ'ଣ ।"

ଅଷ୍ଟାବକ୍ରଙ୍କର ଏପରି ଯୁକ୍ତିଯୁକ୍ତ କଥା ଶୁଣି ମହାରାଜା ଜନକ ତଥା ସମସ୍ତ ସଭାସଦ୍ ସନ୍ତୋଷ ଲାଭ କଲେ । ସେମାନେ ତାଙ୍କୁ ଅଭିନନ୍ଦନ କଲେ, ପୂଜା କଲେ ଓ ଆସିବାର କାରଣ ପଚାରିଲେ । ଅଷ୍ଟାବକ୍ର କହିଲେ—"ମୁଁ ଆପଣଙ୍କର ସେହି ପଣ୍ଡିତଙ୍କ ସହିତ ଶାସ୍ତ୍ରାର୍ଥ କରିବି, ଯିଏ ସମସ୍ତଙ୍କୁ ଜଳରେ ବୁଡ଼ାଇ ଦେଉଛନ୍ତି ।"

ଜନକ ତାଙ୍କୁ ସେପରି କରିବାକୁ ବହୁତ ବାରଣ କଲେ; କିନ୍ତୁ ସେ କୌଣସି କଥା ଶୁଣିଲେ ନାହିଁ । ଶେଷରେ ବିବଶ ହୋଇ ରାଜା ଜନକ ବନ୍ଦୀଙ୍କୁ ରାଜାସଭାକୁ ଡକାଇଲେ । ବନ୍ଦୀ ଓ ଅଷ୍ଟାବକ୍ରଙ୍କର ଯୁକ୍ତିତର୍କ ଆରମ୍ଭ ହେଲା ଏବଂ ତର୍କରେ ବନ୍ଦୀ ପରାସ୍ତ ହେଲେ । ତର୍କରେ ପରାସ୍ତ ହୋଇ ବନ୍ଦୀ ବିଚଳିତ ହୋଇ ପଡ଼ିଲେ; କିନ୍ତୁ ଅଷ୍ଟାବକ୍ର ତାଙ୍କୁ ଧରି ପକାଇ କହିଲେ—"ତୁମେ ଯେପରି ସମସ୍ତଙ୍କୁ ଜଳରେ ବୁଡ଼ାଇ ଦେଇଛ, ମୁଁ ସେପରି ତୁମକୁ ଜଳରେ ବୁଡ଼ାଇ ଦେବି ।" ଏହା କହି ସେ ବନ୍ଦୀଙ୍କୁ ସମୁଦ୍ର ନିକଟକୁ ଟାଣି ନେଲେ ।

ବନ୍ଦୀ ସନ୍ତୁଷ୍ଟ ହୋଇ କହିଲେ—"ବ୍ରହ୍ମନ୍ ! ମୁଁ ଆପଣଙ୍କର ବିଦ୍ୱତ୍ତା ଓ ପାଣ୍ଡିତ୍ୟ ଦେଖି ବହୁତ ପ୍ରସନ୍ନ ହୋଇଛି । ଆପଣ ମୋତେ ଜଳରେ ବୁଡ଼ାଇ ପାରିବେ ନାହିଁ । ମୁଁ ହେଉଛି ବରୁଣଙ୍କର ଦୂତ । ମହାରାଜା ବରୁଣ ଗୋଟିଏ ଯଜ୍ଞ ଅନୁଷ୍ଠାନ କରୁଛନ୍ତି । ସେହି ଯଜ୍ଞରେ ଶ୍ରେଷ୍ଠ ପଣ୍ଡିତଙ୍କର ଆବଶ୍ୟକତା ଥିବାରୁ ମୁଁ ଏପରି ଉପାୟ କରି ପଣ୍ଡିତମାନଙ୍କୁ ସେଠାକୁ ପଠାଇ ଦେଇଛି । ଯେଉଁ ପଣ୍ଡିତମାନଙ୍କୁ ମୁଁ ଜଳରେ ବୁଡ଼ାଇ ଦେଇଛି, ପ୍ରକୃତରେ ସେମାନେ ଜୀବିତ ଅଛନ୍ତି ଏବଂ ଯଜ୍ଞ ସମ୍ପନ୍ନ କରି ବର୍ତ୍ତମାନ ଏଠାକୁ ଫେରି ଆସୁଛନ୍ତି । ଅବିଳମ୍ବେ ସେମାନେ ଆସି ତୁମ ନିକଟରେ ଉପସ୍ଥିତ ହେବେ ।"

ବନ୍ଦୀଙ୍କର କଥା ସମାପ୍ତ ହେବାମାତ୍ରେ ପଣ୍ଡିତଗଣ ଉପଯୁକ୍ତ ଦକ୍ଷିଣା ସହିତ ସେଠାରେ ଆସି ଉପସ୍ଥିତ ହେଲେ । ମହର୍ଷି କହୋଡ଼ ନିଜ ପୁତ୍ରର ବିଦ୍ୱତ୍ତା ସମ୍ପର୍କରେ ଅବଗତ ହୋଇ କହିଲେ—

"ଇତ୍ୟର୍ଥମିଚ୍ଛନ୍ତି ସୁତାନ୍ ଜନୋ ଜନକ କର୍ମଣା
ଯଦହଂ ନାଶକଂ କର୍ତ୍ତୁଂ ତତ୍ପୁତ୍ରଃ କୃତବାନ୍ ମମ ।"

"ମନୁଷ୍ୟଗଣ ଏଇଥିପାଇଁ ପୁତ୍ର କାମନା କରିଥାନ୍ତି ଯେ, ଯେଉଁ କାର୍ଯ୍ୟ ପିତା କରି ନ ପାରିବ, ତାହା ପୁତ୍ର ହିଁ ସମ୍ପନ୍ନ କରିବ; ଯେପରିକି ମୋର ପୁତ୍ର ଅଷ୍ଟାବକ୍ର କରିଅଛି ।"

ଏହାପରେ ପିତା ପୁତ୍ର ଦୁହେଁ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ । ପଥ ମଧ୍ୟରେ ଗଙ୍ଗା-ସମଙ୍ଗାର ସଙ୍ଗମ ସ୍ଥଳରେ ସ୍ନାନ କରିବା ମାତ୍ରେ ଅଷ୍ଟାବକ୍ରଙ୍କର ଦେହର ବକ୍ରତା ଦୂର ହୋଇଗଲା, କିନ୍ତୁ ସେ 'ଅଷ୍ଟାବକ୍ର' ନାମରେ ହିଁ ସୁପ୍ରସିଦ୍ଧ ହେଲେ ।

ସମାବର୍ତ୍ତନ ପରେ ମହର୍ଷି ଅଷ୍ଟାବକ୍ର ଗୃହସ୍ଥାଶ୍ରମରେ ପ୍ରବେଶ କରିବାକୁ ଇଚ୍ଛା ପୋଷଣ କରି ମହର୍ଷି ବଦାନ୍ୟଙ୍କ ନିକଟକୁ ଗମନ କଲେ ଏବଂ ବଦାନ୍ୟଙ୍କର ସୁନ୍ଦରୀ କନ୍ୟାକୁ ପତ୍ନୀରୂପେ ଲାଭ କରିବାପାଇଁ ନିଜର ଅଭିଳାଷ ବ୍ୟକ୍ତ କଲେ । ବଦାନ୍ୟ

କହିଲେ—"ତୁମ ସହିତ ମୋ କନ୍ୟାକୁ ବିବାହ ଦେବାରେ ମୋର କୌଣସି ଆପତ୍ତି ନାହିଁ । କିନ୍ତୁ ସେଥିପାଇଁ ତୁମକୁ ଗୋଟିଏ ସର୍ତ୍ତ ପାଳନ କରିବାକୁ ହେବ । ତୁମେ ଏହି ମୁହୂର୍ତ୍ତରେ ଉତ୍ତର ଦିଗକୁ ଗମନ କର ଏବଂ କୁବେର-ପୁରୀରେ ଅପ୍‌ସରାମାନଙ୍କର ନୃତ୍ୟ-ଗୀତ ଦର୍ଶନ କର । ତଦନନ୍ତର ପୁନଶ୍ଚ ଉତ୍ତର ଦିଗକୁ ଗମନ କରି ଜଣେ ବୃଦ୍ଧା ସ୍ତ୍ରୀ ଲୋକଙ୍କୁ ସାକ୍ଷାତ କର । ଏପରି କରି ପାରିଲେ ତୁମେ ମୋର କନ୍ୟାକୁ ବିବାହ କରିବ, ଅନ୍ୟଥା ନୁହେଁ ।"

ଅଷ୍ଟାବକ୍ର ଏହି ସର୍ତ୍ତ ସ୍ୱୀକାର କରି ସଙ୍ଗେ ସଙ୍ଗେ ଉତ୍ତର ଦିଗକୁ ଗମନ କଲେ । ସେ ହିମାଳୟ ଅତିକ୍ରମ କରି କୈଳାସରେ ଶିବଙ୍କୁ ପୂଜାର୍ଚ୍ଚନା କଲେ ଏବଂ ଅଳକା ପୁରୀରେ ଯାଇ ପହଞ୍ଚିଲେ । ପୁଣ୍ୟଜନ କୁବେର ତାଙ୍କୁ ଅଭ୍ୟର୍ଥନା କରି ରାଜ-ମହଲକୁ ନେଇଗଲେ । ସେଠାରେ ଆତିଥ୍ୟ ସତ୍କାର ପରେ ନୃତ୍ୟ-ଗୀତର ଆୟୋଜନ ହେଲା । ଅଷ୍ଟାବକ୍ର ନୃତ୍ୟ ଗୀତ ଦର୍ଶନ କରି ସେଠାରେ କିଛିଦିନ ଅବସ୍ଥାନ କରିଥିଲେ; କିନ୍ତୁ ତାଙ୍କ ମନରେ ନୃତ୍ୟ-ଗୀତାଦି ଦ୍ୱାରା କୌଣସି ବିକାର ଉତ୍ପନ୍ନ ହୋଇ ନ ଥିଲା ।

ଅନନ୍ତର ଯକ୍ଷରାଜଙ୍କଠାରୁ ବିଦାୟ ନେଇ ଅଷ୍ଟାବକ୍ର ହେମକୂଟ ପର୍ବତ ଅତିକ୍ରମ ପୂର୍ବକ ଏକ ଶୁଷ୍କ ଭୂମିରେ ଯାଇ ପହଞ୍ଚିଲେ ଏବଂ ସେଠାରେ ଥିବା ଗୋଟିଏ ଆଶ୍ରମ ନିକଟରେ ଉପସ୍ଥିତ ହେଲେ । ସେହି ଆଶ୍ରମଟି ଥିଲା ଖୁବ୍ ରମଣୀୟ । ଆଶ୍ରମର ବୃକ୍ଷଗୁଡ଼ିକ ସୁନ୍ଦର ସୁନ୍ଦର ଫଳ ପୁଷ୍ପରେ ସୁଶୋଭିତ ହୋଇଥିଲା । ଅଷ୍ଟାବକ୍ର ଆଶ୍ରମର ଦ୍ୱାର ଦେଶରେ ପହଞ୍ଚି କହିଲେ—"ମୁଁ ଜଣେ ଅତିଥି । ଯଦି ଆଶ୍ରମ ଭିତରେ କେହି ଥାଅ, ତେବେ ଅବିଳମ୍ବେ ବାହାରକୁ ଆସ ଓ ମୋତେ ଆଶ୍ରୟ ପ୍ରଦାନ କର ।"

ଏହାଶୁଣି ଆଶ୍ରମ ଭିତରୁ ସାତଜଣ ସୁନ୍ଦରୀ କନ୍ୟା ବାହାରି ଆସିଲେ । ସେମାନେ ଅତ୍ୟନ୍ତ ପ୍ରେମର ସହିତ ଅଷ୍ଟାବକ୍ରଙ୍କୁ ସ୍ୱାଗତ ଜଣାଇ ଭିତରକୁ ନେଇଗଲେ ଏବଂ ସୁବର୍ଣ୍ଣ ପୀଢ଼ାରେ ବସାଇ ପରମାନନ୍ଦ ପୂର୍ବକ ପାଦ୍ୟ-ଅର୍ଘ୍ୟ-ମଧୁପର୍କ ଆଦି ଦ୍ୱାରା ସତ୍କୃତ କରି ସୁସ୍ୱାଦୁ ତଥା ମଧୁର ଦ୍ରବ୍ୟ ଫଳ ଓ ପାନୀୟ ପ୍ରଦାନ କଲେ । ଖାଦ୍ୟ ଓ ପାନୀୟରେ ସନ୍ତୁଷ୍ଟ କରାଇ ସେମାନେ ସନ୍ଧ୍ୟା ସମୟରେ ସ୍ନାନ ନିମିତ୍ତ ସୁବର୍ଣ୍ଣ କଳସୀରେ ଗଙ୍ଗାଜଳ ଆଣି ରଖିଲେ ଏବଂ ମହର୍ଷିଙ୍କ ଅଙ୍ଗପ୍ରତ୍ୟଙ୍ଗକୁ ଦିବ୍ୟ ତୈଳରେ ମର୍ଦ୍ଦନ କରି କମନୀୟ କରକମଳ ଦ୍ୱାରା ସ୍ନାନ କରାଇ ଦେଲେ । ସନ୍ଧ୍ୟା ବନ୍ଦନା ପରେ ରାତ୍ରିରେ ସେମାନେ ପୁନଶ୍ଚ ମହର୍ଷିଙ୍କୁ ଉତ୍ତମୋତ୍ତମ ଖାଦ୍ୟ ପାନୀୟରେ ସନ୍ତୁଷ୍ଟ କରାଇ ଶୟନ ନିମିତ୍ତ ଉତ୍ତମ ଓ ସୁକୋମଳ ଶଯ୍ୟା ପ୍ରସ୍ତୁତ କରିଦେଲେ । ମହର୍ଷି ଅଷ୍ଟାବକ୍ର ଶୟନ କରିବା ପରେ ସେମାନେ ମହର୍ଷିଙ୍କ ଚରଣ ଦ୍ୱୟକୁ ନିଜର ସୁକୋମଳ କର-କମଳରେ ମର୍ଦ୍ଦନ କରି କହିଲେ—"ମହାରାଜ ! ଆମେ ଆପଣଙ୍କର ଆଉ କି ସେବା କରି ପାରୁ ?"

ଅଷ୍ଟାବକ୍ର କହିଲେ—"ଭଉଣି ! ମୁଁ ତୁମ୍ଭମାନଙ୍କର ସେବାରେ ଅତ୍ୟନ୍ତ ପ୍ରସନ୍ନ ହୋଇଛି ? ତୁମେ ବର୍ତ୍ତମାନ ନିଜ ନିଜ କୋଠରୀକୁ ଯାଇ ସୁଖପୂର୍ବକ ଶୟନ କର । କେବଳ ବୃଦ୍ଧା ମାତା ମୋ କୋଠରୀରେ ଶୟନ କରିବେ ।"

ଏହା ଶୁଣି ସେହି ରମଣୀଗଣ ନିଜ ନିଜ କୋଠରୀକୁ ଗମନ କଲେ ଏବଂ ବୃଦ୍ଧା ମାତା ମହର୍ଷିଙ୍କ କୋଠରୀକୁ ଆସି ଅନ୍ୟ ଏକ ଶଯ୍ୟାରେ ଶୟନ କରିବାକୁ ଲାଗିଲେ । ନିଶୀଥ ସମୟରେ ଅତ୍ୟଧିକ ଶୀତ ହେତୁ ବୃଦ୍ଧା ରମଣୀ ଉଠି ଥରିଲେ ଏବଂ ମହର୍ଷିଙ୍କ ଶଯ୍ୟା ନିକଟକୁ ଯାଇ ତାଙ୍କୁ ଦୁଇ ହସ୍ତରେ କୁଣ୍ଢାଇ ପକାଇଲେ ତଥା ଛାତିରେ ଲଗାଇଦେଲେ । ମହର୍ଷି କିନ୍ତୁ ନିସ୍ତେଜ ହୋଇ ପଡ଼ି ରହିଲ । ଏହା ଦେଖି ବୃଦ୍ଧା ରମଣୀ ତାଙ୍କୁ ଉଦ୍ଦୀପ୍ତ କରିବାକୁ ବାରମ୍ବାର ଚେଷ୍ଟା କଲେ । ବୃଦ୍ଧାଙ୍କର ଏପରି ଚେଷ୍ଟା ଦେଖି ଅଷ୍ଟାବକ୍ର କହିଲେ—"ଭଦ୍ରେ ! ଏହା କ'ଣ ? ଆପଣ ମୋ ଶଯ୍ୟା ନିକଟକୁ କାହିଁକି ଆସିଛନ୍ତି ? ଆପଣଙ୍କର ଏପରି ଚେଷ୍ଟା ଉଚିତ ହେଉଛି କି ?"

ବୃଦ୍ଧା ରମଣୀ କହିଲେ—"ହେ ସୌମ୍ୟ ! ଆପଣଙ୍କୁ ଦର୍ଶନ କରି ମୋ ମନରେ କାମବାସନା ବଳବତୀ ହେଉଅଛି, ତେଣୁ ଆପଣଙ୍କ ସହିତ ରମଣ କରିବା-ପାଇଁ ମୁଁ ଆପଣଙ୍କ ଶଯ୍ୟା ନିକଟକୁ ଆସିଅଛି । ମୁଁ ଆଶା କରୁଛି, ଆପଣ ମୋ ଅଭିଳାଷକୁ ବ୍ୟର୍ଥ କରିବେ ନାହିଁ ।"

ଅଷ୍ଟାବକ୍ର କହିଲେ—"ମୁଁ ଆପଣଙ୍କୁ ଜନନୀ ସଦୃଶ ମନେ କରୁଛି । ଆପଣଙ୍କର ସାତ ଜଣ କନ୍ୟା ମୋର ଭଗିନୀ ସଦୃଶ । ମୋତେ କ୍ଷମା କରିବେ । ପରଦାର-ରମଣ ପରି ସଂସାରରେ ଆଉ କୌଣସି ପାପ ନାହିଁ । ମୋର ଭାବୀ ଶ୍ୱଶୁର ମୋତେ ଏଠାକୁ ପଠାଇଛନ୍ତି । ଯଦି ମୁଁ ଆପଣଙ୍କ ନିକଟରେ ଉତ୍ତୀର୍ଣ୍ଣ ହୋଇ ପାରିବି, ତେବେ ମୋର ବିବାହ ତାଙ୍କ କନ୍ୟା ସହିତ ହୋଇ ପାରିବ ।"

ମୁନିଙ୍କର କଥା ଶୁଣି ବୃଦ୍ଧା ମାତା କହିଲେ—"ସାବାସ୍ ପୁତ୍ର ! ତୁ ଏହି କଠିନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଛୁ । ତୁ ଧନ୍ୟ ! ମୁଁ ଆଶୀର୍ବାଦ କରୁଛି, ତୁ ଏଠାରୁ ଯାଇ ଧର୍ମାନୁକୂଳ ସୁଖ ଭୋଗ କର । ମୁଁ ହେଉଛି ଉତ୍ତର ଦିଗର ଅଧି ଦେବତା ।"

ଅଷ୍ଟାବକ୍ର ମୁନି ବୃଦ୍ଧା ମାତାଙ୍କଠାରୁ ବିଦାୟ ନେଇ ଗୃହକୁ ଫେରି ଆସିଲେ ଏବଂ ନିୟମାନୁକୂଳ ବିବାହ କରି ଆଦର୍ଶ ଗୃହସ୍ଥାଶ୍ରମ ଗ୍ରହଣ କଲେ ।

ଅଷ୍ଟାବକ୍ର ମୁନିଙ୍କ ପ୍ରଣୀତ 'ଅଷ୍ଟାବକ୍ର ଗୀତା' ଭଗବତ୍ ତତ୍ତ୍ୱ ପ୍ରତିପାଦକ ଏକ ମହାନ୍ ଗ୍ରନ୍ଥ ।

ମହର୍ଷି ଅଷ୍ଟାବକ୍ର ସର୍ବଶ୍ରେଷ୍ଠ ଇନ୍ଦ୍ରିୟ ବିଜୟୀ ହୋଇଥିବାରୁ ଅଷ୍ଟାବକ୍ର-ତୀର୍ଥରେ ତର୍ପଣାଦି କଲେ ନରମେଧ ଯଜ୍ଞର ପୁଣ୍ୟ ପ୍ରାପ୍ତ ହୋଇଥାଏ ।

(ମହାଭାରତ, ୧୩।୨୫।୪୨)

# ମହର୍ଷି ଚ୍ୟବନ

ମହର୍ଷି ଚ୍ୟବନ ଥିଲେ ଜଣେ ମହାନ୍ ତପସ୍ୱୀ । ସେ ଦୀର୍ଘଦିନ ଧରି କଠୋର ତପସ୍ୟା ଆଚରଣ କରିଥିଲେ । ତାଙ୍କର ତପସ୍ୟା ଏତେ ଗଭୀର ଥିଲା ଯେ ସେ ଏକ ଆସନରେ ବର୍ଷ ବର୍ଷ ଧରି ବସି ରହିଥିଲେ ଏବଂ ତାଙ୍କ ଶରୀର ଉପରେ ଉଇ ହୁଙ୍କାର ସ୍ତୂପ ଗଢ଼ି ଉଠିଥିଲା । କାଳକ୍ରମେ ସେହି ଉଇ ହୁଙ୍କାର ସ୍ତୂପ ଉପରେ କେତେକ ବୃକ୍ଷ ବୃଦ୍ଧି ଲାଭ କରିଥିଲା ।

ମହର୍ଷିଙ୍କର ସାଧନା ସ୍ଥଳୀ ରେବା (ନର୍ମଦା) ତଟର ଏକ ନିର୍ଜନ ଉପବନରେ ଅବସ୍ଥିତ ଥିଲା ।

ଥରେ ମହାରାଜା ଶର୍ଯ୍ୟାତି ତୀର୍ଥ ଭ୍ରମଣରେ ବହିର୍ଗତ ହୋଇ ନର୍ମଦା କୂଳରେ ଉପସ୍ଥିତ ହେଲେ । ତାଙ୍କ ସହିତ ବନ୍ଧୁ ପାତ୍ର, ମିତ୍ର, ଅମାତ୍ୟ ଓ ସୈନ୍ୟ ତଥା ସତୀ ପତିବ୍ରତା ଆଦରଣୀୟା ଦୁହିତା ସୁକନ୍ୟା ମଧ୍ୟ ଆସିଥିଲେ । ରାଜା ଶର୍ଯ୍ୟାତି ନର୍ମଦାରେ ସ୍ନାନ ଓ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ତର୍ପଣ ତଥା ଦେବପୂଜା କରି ବ୍ରାହ୍ମଣଗଣଙ୍କୁ ଭୋଜନ ଦାନ କରୁଥିବା ସମୟରେ ରାଜକୁମାରୀ ସୁକନ୍ୟା ଅନ୍ତରଙ୍ଗ ସଖୀମାନଙ୍କୁ ଧରି ବନ ଭ୍ରମଣରେ ବହିର୍ଗତ ହେଲେ । ବନ ପ୍ରକୃତିର ଅପରୂପ ଶୋଭା ଦର୍ଶନ କରି କରି ସେ ମହର୍ଷି ଚ୍ୟବନଙ୍କର ସାଧନା ସ୍ଥଳୀ ସେହି ନିର୍ଜନ ଉପବନରେ ପହଞ୍ଚିଲେ ଏବଂ ମହର୍ଷିଙ୍କ ଶରୀର ଉପରେ ଗଢ଼ି ଉଠିଥିବା ବଲ୍ମୀକ ସ୍ତୂପ ଦର୍ଶନ କଲେ । ସେ ଦେଖିଲେ ଯେ ବଲ୍ମୀକର ଉର୍ଦ୍ଧ୍ୱ ଭାଗରେ ଥିବା ଦୁଇଟି ଛିଦ୍ର ମଧ୍ୟ ଦେଇ ଏକ ଉଜ୍ଜ୍ୱଳ ଆଲୋକ ରଶ୍ମି ନିର୍ଗତ ହେଉଛି । ଅତ୍ୟନ୍ତ କୌତୂହଳୀ ହୋଇ ପଡ଼ିଲେ ରାଜକୁମାରୀ ସୁକନ୍ୟା । ସଙ୍ଗେ ସଙ୍ଗେ ସେ ଜଣେ ସଖୀ ହସ୍ତରୁ ଏକ ଲୌହ ଶଳାକା ଆଣି ରନ୍ଧ୍ର ଦୁଇଟିରେ ଖୁବ୍ ଜୋର୍‌ରେ ବିଦ୍ଧ କରିବାକୁ ଲାଗିଲେ । ମନୁଷ୍ୟ କଣ୍ଠର ଏକ ଅସ୍ପଷ୍ଟ ଯନ୍ତ୍ରଣାର ଶବ୍ଦ ତାଙ୍କର କର୍ଣ୍ଣଗୋଚର ହେଲା । ତା'ସହିତ ଛିଦ୍ର ପଥଦେଇ ଝରି ଆସିଲା ଦୁଇଟି ରକ୍ତର ଧାରା । ଦାରୁଣ ଭୟରେ ଶିହରି ଉଠିଲେ ରାଜକନ୍ୟା ସୁକନ୍ୟା ଓ ସଖୀ ସମୂହ । କ୍ଷଣେମାତ୍ର ସେଠାରେ ଛିଡ଼ା ହୋଇ ରହିବାକୁ ସେମାନଙ୍କର ସାହସ ହେଲାନାହିଁ । ଏକ ମହାବିପଦ ଆଶଙ୍କା କରି ସେମାନେ ଦ୍ରୁତ ପଦରେ ଶିବିରକୁ ଫେରିଆସିଲେ ।

ଯଥା ସମୟରେ ତୀର୍ଥ ଯାତ୍ରା ସମାପ୍ତ କରି ରାଜା ଶର୍ଯ୍ୟାତି ନିଜ ରାଜଧାନୀକୁ ଫେରିଗଲେ । କିନ୍ତୁ ରାଜଧାନୀରେ ପହଞ୍ଚି ସେ ଦେଖିଲେ, ରାଜ୍ୟରେ ଘୋର ବିପର୍ଯ୍ୟୟ ଘଟିଅଛି । ପ୍ରାସାଦ, ଉଦ୍ୟାନ, ସୌଧଶ୍ରେଣୀ, ପଥଘାଟ ସବୁ ଯେପରି ଶ୍ରୀହୀନ, ଜଳାଶୟଗୁଡ଼ିକ ଶୁଷ୍କ, ଲୋକମାନଙ୍କର ପ୍ରାଣରେ ଯେପରି ଆନନ୍ଦ ନାହିଁ, ଉତ୍ସାହ ନାହିଁ, ମୁହଁରେ ହସ ନାହିଁ, ଲାବଣ୍ୟ ନାହିଁ । ମଝିରେ ମଝିରେ ଭୂମିକମ୍ପ ଓ ଉଲ୍କାପାତ ହେଉଅଛି । ହସ୍ତୀଶାଳା ଓ ଅଶ୍ୱଶାଳାରେ ହସ୍ତୀ ଓ ଅଶ୍ୱଗଣ ଅପ୍ରତ୍ୟାଶିତ ଭାବରେ ମୃତ୍ୟୁବରଣ କରୁଛନ୍ତି । ରାଜଭଣ୍ଡାର ଶୂନ୍ୟ ହୋଇଯାଇଛି । ଅଯଥାରେ ପ୍ରଜାଗଣ ନିଜ ନିଜ ଭିତରେ କଳହ କରୁଛନ୍ତି । ଏପରି ଦାରୁଣ ଦୁର୍ଗତି ଦେଖି ଶର୍ଯ୍ୟାତି ଅତ୍ୟନ୍ତ ଚିନ୍ତିତ ଓ ଶଙ୍କିତ ହୋଇ ପଡ଼ିଲେ ।

ଏହା କୌଣସି ତପସ୍ୱୀଙ୍କର ତପୋବିଘ୍ନ ଘଟାଇବାର ଫଳ ନୁହେଁ ତ ?

ରାଜକୁମାରୀ ସୁକନ୍ୟା ଜାଣନ୍ତି, ସେ ନିଜେ ହିଁ ଅପରାଧୀ । ବିବେକର ଦଂଶନରେ ତଥା ଅନୁତାପର ନିଆଁରେ ପୋଡ଼ି ପୋଡ଼ି ସେ ଦିନକୁ ଦିନ ଶୀର୍ଣ୍ଣ ହୋଇ ପଡ଼ିଲେ । ଶେଷରେ ସାହସ ସଞ୍ଚୟ କରି ପିତାଙ୍କ ଆଗରେ ସେ ସମସ୍ତ କଥା ବର୍ଣ୍ଣନା କଲେ ।

ଶର୍ଯ୍ୟାତି ରାଜକନ୍ୟାଙ୍କର କଥା ଶୁଣି ମ୍ରିୟମାଣ ହୋଇଗଲେ । ଅବିଳମ୍ବେ ସେ ସୁକନ୍ୟାଙ୍କୁ ସାଥିରେ ନେଇ ମହର୍ଷି ଚ୍ୟବନଙ୍କର ସାଧନା ସ୍ଥଳୀରେ ପହଞ୍ଚିଲେ ଏବଂ ବଲ୍ମୀକର ମାଟି ଖୋଳି ଚ୍ୟବନଙ୍କ ମହର୍ଷିଙ୍କୁ ଉଦ୍ଧାର କଲେ । ସେ ଦେଖିଲେ ମହର୍ଷି ବୃଦ୍ଧ ହୋଇ ଯାଇଛନ୍ତି, ମସ୍ତକର କେଶ ଓ ମୁହଁର ଦାଢ଼ି ପାଚି ଯାଇଛି, ସୁଦୀର୍ଘକାଳ ଅନାହାରରେ ଯୋଗମଗ୍ନ ରହିଥିବାରୁ କଙ୍କାଳସାର ଶରୀରର ମାଂସ ଓ ଚମଡ଼ା ଝୁଲି ପଡ଼ିଛି ଏବଂ ସୁକନ୍ୟାର ଆଘାତ ଫଳରେ ଚକ୍ଷୁଦ୍ୱୟର ଦୃଷ୍ଟିଶକ୍ତି ପୂରାପୂରି ନଷ୍ଟ ହୋଇଯାଇଛି । ତଥାପି ମହର୍ଷିଙ୍କର ମୁଖମଣ୍ଡଳରୁ ଏକ ପ୍ରକାର ଦିବ୍ୟ ଜ୍ୟୋତି ବିଚ୍ଛୁରିତ ହେଉଛି ।

ରାଜା ଶର୍ଯ୍ୟାତି ଓ ରାଜକୁମାରୀ ସୁକନ୍ୟା ପ୍ରଗାଢ଼ ଭକ୍ତିର ସହିତ ତପସ୍ୱିଙ୍କ ଋଷିଙ୍କର ବନ୍ଦନା ଓ ସ୍ତୁତି କରିବାକୁ ଲାଗିଲେ । ଶର୍ଯ୍ୟାତିଙ୍କ ବିନୟରେ ଓ ସୁକନ୍ୟାଙ୍କ ନମ୍ରତାରେ ପ୍ରୀତ ହୋଇ ମହର୍ଷି ଚ୍ୟବନ ରଜାଙ୍କୁ ଡାକି କହିଲେ—"ମହାରାଜ ! ଆପଣଙ୍କର ଏହି କନ୍ୟା ମୋର ଚକ୍ଷୁଦ୍ୱୟକୁ ସମ୍ପୂର୍ଣ୍ଣଭାବେ ନଷ୍ଟ କରି ଦେଇଛି । ଯଦିଓ ସେ ଇଚ୍ଛା କରି ଏପରି ଦୁଷ୍କାର୍ଯ୍ୟ କରିନାହିଁ, ତଥାପି ତପୋମଗ୍ନ ତପସ୍ୱୀଙ୍କର ତପୋଭଙ୍ଗ ଘଟାଇ ଥିବାରୁ ସେ ଗୁରୁତର ପାପ କରିଅଛି । ସେହି ପାପ ଯୋଗୁ ହିଁ ଆପଣଙ୍କ ରାଜ୍ୟରେ ଯାବତୀୟ ଅମଙ୍ଗଳ ଦେଖା ଦେଇଛି । ଯଦି ଆପଣ ଏହି କନ୍ୟାକୁ ମୋତେ ସମ୍ପ୍ରଦାନ କରିବେ, ତେବେ ତା'ପାପର ପ୍ରାୟଶ୍ଚିତ୍ତ ହୋଇ ପାରିବ ।"

, ଜୀର୍ଣ୍ଣ, ଶୀର୍ଣ୍ଣ, ବୃଦ୍ଧ, କଙ୍କାଳସାର ଓ ଦୃଷ୍ଟିଶକ୍ତିହୀନ ତପସ୍ୱୀଙ୍କ ସହିତ କୋମଳାଙ୍ଗୀ, ପରମସୁନ୍ଦରୀ, ଆଦ୍ୟଯୌବନ ପ୍ରାପ୍ତା ତରୁଣୀ କନ୍ୟାର ବିବାହ !! ମହାରାଜା ଶର୍ଯ୍ୟାତି ଶିହରି ଉଠିଲେ । ଏକ ଦିଗରେ ଦୁହିତାର ମୋହ, ଅନ୍ୟ ଦିଗରେ ଶାପଗ୍ରସ୍ତ ପ୍ରଜାପୁଞ୍ଜଙ୍କର ଆକର୍ଷଣ । ଅବଶେଷରେ ବୃହତ୍ତର କଲ୍ୟାଣପାଇଁ ଧାର୍ମିକ ନରପତି ନିଜର କ୍ଷୁଦ୍ର ସ୍ୱାର୍ଥ ବିସର୍ଜନ ଦେବାକୁ ଶ୍ରେୟ ମନେକଲେ । ସେ ଚ୍ୟବନଙ୍କ ହସ୍ତରେ ସୁକନ୍ୟାଙ୍କୁ ସମର୍ପଣ କରି ଆଖିର ପାଣି ଆଖିରେ ପୋଛି ରାଜଧାନୀକୁ ଫେରି ଆସିଲେ ।

ସୁକନ୍ୟା ବର୍ତ୍ତମାନ ତାପସ ରମଣୀ । ଅଙ୍ଗଦ, ବଳୟ, କାଞ୍ଚି ରତ୍ନହାର ଆଉ ତାଙ୍କ ଦେହକୁ ଅଳଂକୃତ କରୁ ନାହିଁ । ବଣର ଫଳମୂଳ ଖାଇ ସେ ଜୀବନଧାରଣ କରୁଛନ୍ତି, ଦୁଗ୍ଧଫେନନିଭ ଶଯ୍ୟା ପରିବର୍ତ୍ତେରେ ତୃଣାସ୍ତରଣରେ ନିଦ୍ରା ଯାଉଛନ୍ତି । ତଥାପି ତାଙ୍କ ମନରେ ତିଳେ ହେଲେ ଖେଦ ନାହିଁ । ଦିନ ରାତି ସବୁବେଳେ ସେ ଦେହ, ମନ, ପ୍ରାଣ ଦେଇ ବୃଦ୍ଧ ଅନ୍ଧ ପତିଙ୍କର ସେବା କରି ଚାଲିଛନ୍ତି । ମହର୍ଷି ଚ୍ୟବନ ମଧ୍ୟ ସତୀ ସାଧ୍ୱୀ ଯୁବତୀ ପତ୍ନୀର ନିଷ୍ଠା ଓ ପରିଚର୍ଯ୍ୟାରେ ଖୁବ୍ ସନ୍ତୁଷ୍ଟ । ଏହିପରି ଭାବରେ ରେବା ତଟର ଅରଣ୍ୟ-ଗୃହରେ ଚ୍ୟବନ ସୁକନ୍ୟାଙ୍କର ନିସ୍ପୃହ, ତପୋନିଷ୍ଠ, ଶାନ୍ତିମୟ ଜୀବନ ବେଶ୍ ସୁରୁଚିରୂପେ ଅତିବାହିତ ହେଲା ।

ଥରେ ସ୍ୱର୍ଗର ବୈଦ୍ୟ ଅଶ୍ୱିନୀକୁମାରଦ୍ୱୟ ଚ୍ୟବନ ମୁନିଙ୍କ ଆଶ୍ରମକୁ ବୁଲିବାକୁ ଆସିଥିଲେ । ସୁକନ୍ୟା ସେମାନଙ୍କ ପରମ ସମାଦରରେ ପାଦ୍ୟ ଅର୍ଘ୍ୟ ଦେଇ ଅଭ୍ୟର୍ଥନା ଜଣାଇଲେ । ଅଶ୍ୱିନୀକୁମାରଦ୍ୱୟ ସୁକନ୍ୟାଙ୍କ ଭକ୍ତିରେ ପ୍ରସନ୍ନ ହୋଇ ତାଙ୍କୁ ବର ମାଗିବାକୁ କହିଲେ । ସୁକନ୍ୟା କହିଲେ—"ଆପଣମାନେ ହେଉଛନ୍ତି ସୂର୍ଯ୍ୟଙ୍କ ପୁତ୍ର ଓ ସ୍ୱର୍ଗର ବୈଦ୍ୟ । ଚିକିତ୍ସା ବିଦ୍ୟା ଓ ଦୈହିକ ସୌନ୍ଦର୍ଯ୍ୟ ବର୍ଦ୍ଧନରେ ଆପଣମାନେ ଅଦ୍ଭୁତ ପାରଦର୍ଶୀ । ଏପରିକି ଅସମ୍ଭବକୁ ସମ୍ଭବ କରିବା ମଧ୍ୟ ଆପଣଙ୍କ ପାଖରେ କିଛି ନୁହେ । କୃପାକରି ମୋ ସ୍ୱାମୀଙ୍କର ଦୃଷ୍ଟିଶକ୍ତି ଫେରାଇ ଦିଅନ୍ତୁ ।"

ଅଶ୍ୱିନୀକୁମାରଦ୍ୱୟ କହିଲେ—"ଆମେ ବୈଦ୍ୟ ବୋଲି ସ୍ୱର୍ଗରେ ଦେବତାମାନେ ଆମକୁ ଏକ ପଂକ୍ତିରେ ନେଇ ଖାଆନ୍ତି ନାହିଁ । ଅନ୍ୟ ସମସ୍ତ ଦେବତାଙ୍କ ପରି ଆମେ ଯେପରି ଉପଯୁକ୍ତ ମର୍ଯ୍ୟାଦା ପାଇ ପାରିବୁ, ମହର୍ଷି ଚ୍ୟବନ ଯଦି ଏହି ବ୍ୟବସ୍ଥା କରିପାରିବେ, ତେବେ ଆମେ ତାଙ୍କର ଲୁପ୍ତ ଦୃଷ୍ଟିଶକ୍ତି ଫେରାଇ ଆଣିବୁ ।"

ମହର୍ଷି ଚ୍ୟବନ ଅଶ୍ୱିନୀକୁମାରଙ୍କର ସର୍ତ୍ତ ସ୍ୱୀକାର କଲେ ।

ଅଗତ୍ୟା ଅଶ୍ୱିନୀକୁମାରଦ୍ୱୟ ମହର୍ଷିଙ୍କୁ ନେଇ ଆଶ୍ରମ-ସନ୍ନିହିତ ଏକ ହ୍ରଦ ନିକଟରେ ଉପସ୍ଥିତ ହେଲେ ଏବଂ ବୁଡ଼ ପକାଇବାପାଇଁ ତିନିଜଣଯାକ ହ୍ରଦ ଜଳରେ

ପ୍ରବେଶ କଲେ । ବୁଡ଼ ପକାଇ ତିନିଜଣ ଯାକ ଯେତେବେଳେ ହ୍ରଦ ଜଳରୁ ଉପରକୁ ଉଠି ଆସିଲେ ସେତେବେଳେ ସୁକନ୍ୟା ଦେଖିଲେ, ତାଙ୍କ ସମ୍ମୁଖରେ ଏକାପରି ଦିଶୁଥିବା ତିନିଜଣ ସୁନ୍ଦର ଯୁବକ ଛିଡ଼ା ହୋଇଛନ୍ତି । ସେମାନଙ୍କ ମଧ୍ୟରୁ କିଏ ପ୍ରକୃତରେ ତାଙ୍କର ସ୍ୱାମୀ, ତାହା ନିର୍ଦ୍ଧାରଣ କରିବାପାଇଁ ସେମାନେ ସୁକନ୍ୟାଙ୍କୁ ଆହ୍ୱାନ କଲେ । ସୁକନ୍ୟା ଦେଖିଲେ, ତାଙ୍କ ସମ୍ମୁଖରେ ଯେଉଁ ତିନିଜଣ ସୁନ୍ଦର ଯୁବକ ଛିଡ଼ା ହୋଇଛନ୍ତି, ସେମାନଙ୍କ କଣ୍ଠରେ ସୁବର୍ଣ୍ଣ ନିର୍ମିତ ମାଳା, କର୍ଣ୍ଣରେ କୁଣ୍ଡଳ, ପରିଧାନରେ ମନୋହର ବସ୍ତ୍ର; ସମସ୍ତେ ହିଁ ସୂର୍ଯ୍ୟସମ ତେଜସ୍ୱୀ । ତଥାପି ସତୀ, ସାଧ୍ୱୀ, ପତିବ୍ରତା ସୁକନ୍ୟା ନିଜ ସ୍ୱାମୀଙ୍କୁ ଚିହ୍ନିବାରେ କୌଣସି ଭୁଲ କରି ନ ଥିଲେ । ସେ ନିଜ ସ୍ୱାମୀଙ୍କର ଯୌବନପ୍ରାପ୍ତ ମନୋହର ରୂପ ଦେଖି ତାଙ୍କ ପାଦତଳେ ପ୍ରଣାମ କରିଥିଲେ । ମହର୍ଷି ଚ୍ୟବନ ଭବିଷ୍ୟତରେ ସେମାନଙ୍କୁ ଅନ୍ୟାନ୍ୟ ଦେବତାଙ୍କ ଭଳି ଯଜ୍ଞଭାଗ ଗ୍ରହଣର ଅଧିକାରୀ କରିବେ, ଏହି ଆଶ୍ୱାସନା ଲାଭ କରି ଅଶ୍ୱିନୀକୁମାରଦ୍ୱୟ ସ୍ୱର୍ଗକୁ ପ୍ରସ୍ଥାନ କଲେ ।

ମହର୍ଷି ଚ୍ୟବନ ରୂପବାନ ବଳିଷ୍ଠ ଯୁବକରେ ପରିଣତ ହେଲେ ମଧ୍ୟ ମନରେ କୌଣସି ଅହଙ୍କାର ବା ଉଚ୍ଛୃଙ୍ଖଳାକୁ ସ୍ଥାନ ଦେଇ ନ ଥିଲେ । ସେ ପୂର୍ବେ ଯେପରି ତପସ୍ୟାରେ ନିମଗ୍ନ ରହୁଥିଲେ, ବର୍ତ୍ତମାନ ମଧ୍ୟ ସେହିପରି ତପସ୍ୟାରେ ନିମଗ୍ନ ରହିଲେ । ସୁକନ୍ୟା ମଧ୍ୟ ପୂର୍ବଭଳି ଭକ୍ତି ଓ ଏକାଗ୍ରତାର ସହିତ ପତିସେବା କରିବାକୁ ଲାଗିଲେ । ଦିନେ ଚ୍ୟବନ ସୁକନ୍ୟାଙ୍କୁ ଡାକି କହିଲେ—"ସାଧ୍ୱୀ ! ତୁମେ ମୋର ଶୁଶ୍ରୂଷାପାଇଁ ସଂସାରର ଯାବତୀୟ ସୁଖରୁ ନିଜକୁ ବଞ୍ଚିତ ରଖିଛ, ରାଜକନ୍ୟା ହୋଇ ମଧ୍ୟ ବନବାସର ଦୁଃଖକଷ୍ଟ ହସି ହସି ବରଣ କରିଛ । ତୁମର ଏହି ଏକନିଷ୍ଠ ପରିଚର୍ଯ୍ୟାରେ ମୁଁ ଅତ୍ୟନ୍ତ ପ୍ରୀତ ହୋଇଛି । ଦାନ ବ୍ରତ ଯଜ୍ଞାଦି ଅନୁଷ୍ଠାନ କରି ଲୋକେ ଯେଉଁ ଶୁଭ ଫଳ ପ୍ରାପ୍ତ ହୁଅନ୍ତି, ତୁମେ କେବଳ ପତିସେବା ଦ୍ୱାରା ହିଁ ତାହାର ଅଧିକାରଣୀ ହୋଇଛ । ତା'ଛଡ଼ା ମୁଁ ଆଶୀର୍ବାଦ କରୁଛି, ମୁଁ ଦୀର୍ଘକାଳ ତପସ୍ୟା କରି ଯେଉଁ ତତ୍ତ୍ୱଜ୍ଞାନ ଲାଭ କରିଛି, ତୁମେ ମଧ୍ୟ ସେହି ଜ୍ଞାନ ପ୍ରାପ୍ତ ହୁଅ ।"

ପରମ ତପସ୍ୱୀ ଚ୍ୟବନଙ୍କ ମୁଖରୁ ଏହି ଆଶୀର୍ବାଣୀ ଶୁଣି ସୁକନ୍ୟାଙ୍କ ଅନ୍ତର ଅପୂର୍ବ ପରିତୃପ୍ତିରେ ଭରି ଉଠିଲା । ସେ ଚ୍ୟବନଙ୍କ ପଦଧୂଳି ନେଇ ମୃଦୁ ସ୍ୱରରେ କହିଲେ—"ପ୍ରଭୋ ! ମୁଁ ପରମ ଭାଗ୍ୟବତୀ ଯେ ଆପଣଙ୍କ ଭଳି ସିଦ୍ଧ ମହାପୁରୁଷଙ୍କୁ ସ୍ୱାମୀ ରୂପରେ ପାଇଛି ଏବଂ ଆପଣଙ୍କର ସେବା କରିବାର ସୁଯୋଗ ଲାଭ କରିଛି । ବର୍ତ୍ତମାନ ମୋର ଗୋଟିଏ ପ୍ରାର୍ଥନା ଆପଣଙ୍କୁ ପୂରଣ କରିବାକୁ ହେବ ।"

ଚ୍ୟବନ କହିଲେ—"କି ପ୍ରାର୍ଥନା କୁହ ।"

ସୁକନ୍ୟା କହିଲେ—"ଦେବ ! ଆପଣ ତ ଆବାଲ୍ୟ ତପସ୍ୱୀ । ପୃଥିବୀର କୌଣସି ସୁଖ ଆପଣ କେବେହେଲେ ଭୋଗ କରି ନାହାନ୍ତି । ଅଶ୍ୱିନୀକୁମାରଦ୍ୱୟଙ୍କ

କୃପାରୁ ଆପଣ ବର୍ତ୍ତମାନ ନବ ଯୌବନ ଲାଭ କରିଛନ୍ତି । ମୋର ଏକାନ୍ତ ଇଚ୍ଛା, ଆମେ ଦୁହେଁ କିଛିକାଳ ଜଗତର ନାନା ଆନନ୍ଦ ଉପଭୋଗ କରିବା ।

ଚ୍ୟବନ ହସି ହସି କହିଲେ—"ଦେବି ! ତପସ୍ୟା ଦ୍ୱାରା ଭଗବାନଙ୍କୁ ଲାଭ କରିବା ପରେ ମନୁଷ୍ୟର ଆଉ କ'ଣ ପାଇବାକୁ ବାକି ଥାଏ କି ? ଐଶ୍ୱରୀୟ ଆନନ୍ଦ ପାଖରେ ଜଗତର ସକଳ ଆନନ୍ଦ ତୁଚ୍ଛ ନୁହେଁ କି ?"

ସୁକନ୍ୟା ଉତ୍ତର ଦେଲେ—"ପ୍ରଭୋ ! ସଂସାରର କୌଣସି ଭୋଗ ବାସନା ଆପଣଙ୍କ ମନରେ ଯେ ରହିପାରେ ନା ତାହା ମୁଁ ଜାଣେ । କିନ୍ତୁ ମୋର ଇଚ୍ଛା, ଆପଣଙ୍କୁ ନାନା ଐଶ୍ୱର୍ଯ୍ୟ-ବିଭବ ମଧ୍ୟରେ ରାଜାଧିରାଜଙ୍କ ଭଳି କିଛି ଦିନପାଇଁ ଦେଖିବି । ମୋର ଏହି ମିନତି ଆପଣଙ୍କୁ ରଖିବାକୁ ହେବ । ପଦ୍ମପତ୍ରରେ ଜଳ ଯେପରି ଲିପ୍ତ ହୁଏ ନାହିଁ, ସେହିପରି ଜଗତର କୌଣସି ବସ୍ତୁ ଆପଣଙ୍କ ହୃଦୟକୁ ମଳିନ କରି ପାରିବ ନାହିଁ । ଆପଣଙ୍କ ମନ ତ ଶିଶୁ ଭଳି ନିଷ୍ପାପ ।"

ମହର୍ଷି ଚ୍ୟବନ ଆନନ୍ଦିତ ହୋଇ କହିଲେ—"ତୁମେ ଠିକ୍ କହୁଛ ସୁକନ୍ୟା ! ସିଦ୍ଧ ପୁରୁଷ ଯେ କୌଣସି ଅବସ୍ଥାରେ ରହିଲେ ମଧ୍ୟ ତାଙ୍କର କୌଣସି କ୍ଷତି ହୁଏନା । ମୁଁ ତୁମ ଉପରେ ଖୁବ୍ ପ୍ରୀତ ହୋଇଛି । ତେଣୁ ତୁମେ ଯେଉଁଥିରେ ସନ୍ତୁଷ୍ଟ ହେବ, ମୁଁ ତାହା ହିଁ କରିବି । ତୁମର ମନୋବାସନା ନିଶ୍ଚୟ ପୂର୍ଣ୍ଣ ହେବ ।"

ଏହାପରେ ଦିନେ ମହର୍ଷି ଚ୍ୟବନ ଯୋଗବଳରେ ନାନାରତ୍ନ ବିଭୂଷିତ ଏକ ସୁବୃହତ୍ ବିମାନ ସୃଷ୍ଟି କଲେ । ସେହି ଦିବ୍ୟ ବିମାନଟି ଏକ ବିରାଟ ଅଟ୍ଟାଳିକା ଭଳି ଦେଖା ଯାଉଥିଲା ଏବଂ ସେଥିରେ ଅନେକ ଗୁଡ଼ିଏ ମହଲା ଥିଲା । ପ୍ରତି ମହଲାରେ ନାନା ଆସବାବପତ୍ରରେ ସୁସଜ୍ଜିତ ବହୁ କକ୍ଷ ମଧ୍ୟ ଥିଲା । ମହର୍ଷି ଚ୍ୟବନ ସୁକନ୍ୟାଙ୍କୁ ଆହ୍ୱାନ କରି ନିକଟବର୍ତ୍ତୀ ସରୋବରରେ ସ୍ନାନ ସାରି ଆସିବାକୁ ନିର୍ଦ୍ଦେଶ ଦେଲେ । ସୁକନ୍ୟା ସ୍ନାନସାରି ଚ୍ୟବନଙ୍କ ନିକଟରେ ପହଞ୍ଚିବା ମାତ୍ରେ ବହୁ କିଶୋରୀ କନ୍ୟା ହାତରେ ପ୍ରସାଧନ ଦ୍ରବ୍ୟ, ବସ୍ତ୍ର ଓ ଅଳଙ୍କାର ଧରି ପୂର୍ବୋକ୍ତ ବିମାନ ଭିତରୁ ବାହାରକୁ ବାହାରି ଆସିଲେ । ସେମାନଙ୍କର ରୂପ ଥିଲା ଅତ୍ୟନ୍ତ କମନୀୟ; ସେମାନଙ୍କ ଶରୀରରୁ ପଦ୍ମ-ଗନ୍ଧ ନିର୍ଗତ ହେଉଥିଲା । ସେମାନେ କୃତାଞ୍ଜଳି ପୂର୍ବକ ସୁକନ୍ୟାଙ୍କ ନିକଟକୁ ଆସି କହିଲେ—"ଦେବି ! ଆମେ ସବୁ ଆପଣଙ୍କର ସେବିକା ।" ଏହା କହି ସେମାନେ ସୁକନ୍ୟାଙ୍କ ଦେହରେ ବହୁ ଯତ୍ନରେ ନାନା ପ୍ରକାର ସ୍ନାନୋପକରଣ ଲେପନ କରି ତାଙ୍କୁ ନିର୍ମଳ ଜଳରେ ସ୍ନାନ କରାଇ ଦେଲେ ଏବଂ ଚମତ୍କାର ବେଶଭୂଷା ଓ ଅଳଙ୍କାରରେ ସଜାଇ ଦେଲେ । ସେ ଯେଉଁ ବେଶଭୂଷା ଓ ଅଳଙ୍କାରରେ ସଜ୍ଜିତ ହେଲେ ତାହାର ସାମାନ୍ୟ ଅଂଶ ମଧ୍ୟ ପୂର୍ବରୁ କେବେ ଦେଖି ନ ଥିଲେ ।

ଏହାପରେ ମହର୍ଷି ଚ୍ୟବନ ନିଜେ ଆସି ତାଙ୍କ ହାତ ଧରି ତାଙ୍କୁ ଦିବ୍ୟ ବିମାନ ଭିତରକୁ ନେଇଗଲେ । ଭିତରର ସାଜସଜ୍ଜା ଦେଖି ସୁକନ୍ୟା ସ୍ତମ୍ଭୀଭୂତ ହୋଇଗଲେ । ସ୍ୱାମୀଙ୍କର ତପୋ ମହିମା ଦେଖି ତାଙ୍କର ବାକ୍‌ରୁଦ୍ଧ ହେଲା । ଚ୍ୟବନ ହସି ହସି କହିଲେ—"ଦେବି ! ଏଇ ବିମାନରେ ବସି ଆମେ ଦେଶ ଦେଶାନ୍ତରରେ ଭ୍ରମଣ କରିବା । ସଂସାରର ଯାବତୀୟ ଭୋଗୋପକରଣ ତୁମପାଇଁ ଏହି ବିମାନରେ ସଞ୍ଚିତ ଅଛି । ତୁମେ ଯେତେବେଳେ ଯାହା ଚାହିଁବ ତାହା ଅବିଳମ୍ବେ ପ୍ରାପ୍ତ ହେବ ।"

ଚ୍ୟବନ ଓ ସୁକନ୍ୟା ସେହି ଦିବ୍ୟ ବିମାନରେ ବସି ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣରେ କେତେ ପର୍ବତ, କେତେ ବିହାର ଭୂମି, କେତେ ଦେବୋଦ୍ୟାନ, ସିଦ୍ଧ ବିଦ୍ୟାଧର କିନ୍ନରମାନଙ୍କର ଆବାସସ୍ଥଳୀ, କେତେ କେତେ ଆଶ୍ଚର୍ଯ୍ୟ ସୁରମ୍ୟ ସ୍ଥାନରେ ମହାନନ୍ଦରେ ଭ୍ରମଣ କରିବାକୁ ଲାଗିଲେ । ଏହିପରି ବହୁବର୍ଷ ଅତୀତ ହେବା ପରେ ସୁକନ୍ୟାଙ୍କ ପ୍ରାଣର ଆକାଙ୍‌କ୍ଷା ପରିପୂର୍ଣ୍ଣ ହେଲା । ତାହା ବୁଝିପାରି ଦିନେ ଚ୍ୟବନ ତାଙ୍କୁ କହିଲେ—"ଦେବି ! ଏଥର ଚାଲ ଆଶ୍ରମକୁ ଫେରିଯିବା ।"

ପତି ପତ୍ନୀ ଉଭୟେ ନର୍ମଦା ତୀରର ସେହି ମନୋହର ତପୋବନର ଶାନ୍ତିମୟ କୋଳକୁ ପ୍ରତ୍ୟାଗମନ କଲେ । ପୁଣି ଥରେ ସେମାନଙ୍କର ପୂର୍ବର ସେହି ଅନାଡ଼ମ୍ବର ଆଶ୍ରମ ଜୀବନ ଆରମ୍ଭ ହେଲା ।

କିଛି ଦିନ ପରେ ମହାରାଜା ଶର୍ଯ୍ୟାତି ଏକ ସୋମ ଯଜ୍ଞର ଆୟୋଜନ କଲେ । ସେହି ଯଜ୍ଞରେ ଯୋଗ ଦେବାପାଇଁ ସେ କେତେଜଣ ଭୃତ୍ୟଙ୍କ ଦ୍ୱାରା ଚ୍ୟବନ ସୁକନ୍ୟାଙ୍କ ନିକଟକୁ ନିମନ୍ତ୍ରଣ ପଠାଇଲେ । ସୁକନ୍ୟା ବହୁବର୍ଷ ପରେ ସ୍ୱାମୀଙ୍କ ସହିତ ପିତୃ ଗୃହକୁ ଆଗମନ କଲେ । କିନ୍ତୁ କନ୍ୟା ସହିତ ଜଣେ କମନୀୟ-କାନ୍ତି ଯୁବା ପୁରୁଷଙ୍କୁ ଦେଖି ରଜା ଓ ରାଣୀ ଅତ୍ୟନ୍ତ ବିସ୍ମିତ ହେଲେ । ଏହା ଜାଣି ସୁକନ୍ୟା ଅଶ୍ୱିନୀକୁମାରଙ୍କର ଆଶ୍ରମକୁ ଆସିବା କଥା, ସେମାନଙ୍କ ଦୟାରୁ ସ୍ୱାମୀଙ୍କର ଅନ୍ଧତ୍ୱ ଓ ଜରା ଦୂର ହୋଇ ଯିବାର କାହାଣୀ, ତପଃସିଦ୍ଧ ସ୍ୱାମୀଙ୍କର ଯୋଗ ବିଭୂତି କଥା, ସେହି ଆଶ୍ଚର୍ଯ୍ୟ ଦିବ୍ୟ ବିମାନ, ଅକଳନୀୟ ଐଶ୍ୱର୍ଯ୍ୟ ସମ୍ଭାର ଓ ଦେଶେ ଦେଶେ ଭ୍ରମଣ କରିବା କଥା ଆଦି ଅତି ସଂକ୍ଷେପରେ ବର୍ଣ୍ଣନା କଲେ । ସକଳ କଥା ଶୁଣି ରାଜା ରାଣୀ ଦୁହେଁ ସୁକନ୍ୟାଙ୍କୁ ପରମ ସ୍ନେହରେ ବକ୍ଷରେ ଭିଡ଼ି ଧରିଲେ ଏବଂ ଭକ୍ତିଭରେ ବାରମ୍ବାର ମହର୍ଷି ଚ୍ୟବନଙ୍କର ପଦଧୂଳି ମସ୍ତକରେ ଧାରଣ କଲେ ।

ଯଥା ସମୟରେ ସୋମଯଜ୍ଞ ଆରମ୍ଭ ହେଲା । ଯଜ୍ଞର ପ୍ରଧାନ ଆଚାର୍ଯ୍ୟ ସ୍ୱୟଂ ମହାମୁନି ଚ୍ୟବନ । ସକଳ ଦେବତାଙ୍କ ଉଦ୍ଦେଶ୍ୟରେ ଆହୁତି ଅର୍ପଣ କରି ସେ ଅଶ୍ୱିନୀକୁମାର ଦ୍ୱୟଙ୍କପାଇଁ ଦୁଇଭାଗ ଆହୂତ ଦ୍ରବ୍ୟ ଅଲଗା କରି ରଖିଲେ । ଆଜ୍ଞ

ନିଜର ପ୍ରତିଶ୍ରୁତି ପାଳନ କରିବେ, ଅଶ୍ୱିନୀକୁମାର ଦ୍ୱୟଙ୍କ ନାମରେ ଆହୂତି ଦେଇ ସେମାନଙ୍କୁ ଦେବ ପଂକ୍ତିରେ ବସାଇବେ ।

ସ୍ୱର୍ଗରୁ ଦେବରାଜ ଇନ୍ଦ୍ର ମହର୍ଷିଙ୍କ କାର୍ଯ୍ୟକଳାପ ଲକ୍ଷ୍ୟ କରୁଥିଲେ । ସ୍ୱର୍ଗର ଚିରାଚରିତ ବିଧାନକୁ ଅମାନ୍ୟ କରି ଦେବ ବୈଦ୍ୟ ଯୁଗଳଙ୍କୁ ଅନ୍ୟ ସମସ୍ତ ଦେବତାଙ୍କ ସହିତ ସମାନ ଅଧିକାର ଦେବାପାଇଁ ମହର୍ଷି ଯେଉଁ ଚେଷ୍ଟା କରୁଛନ୍ତି, ତାହା ତାଙ୍କର ଅସହ୍ୟ ହେଲା । ସେ ମହର୍ଷିଙ୍କ ମସ୍ତକ ଛିନ୍ନ କରିବାପାଇଁ ବଜ୍ର ପ୍ରହାର କରିବାକୁ ଉଦ୍ୟତ ହେଲେ; କିନ୍ତୁ ଦୀପ୍ତ ହୋମାନଳ ସମ୍ମୁଖରେ ଉପବିଷ୍ଟ ଅଗ୍ନିତେଜା ମହର୍ଷିଙ୍କ ଯୋଗାଗ୍ନି ଆଗରେ ବଜ୍ରର ଶକ୍ତି କ୍ଷୀଣ ହୋଇ ପଡ଼ିଲା; ତାଙ୍କର ବାହୁ ଅବଶ ହୋଇଗଲା । ସେ ଯେତେ ଚେଷ୍ଟା କଲେ ମଧ୍ୟ ହାତ ଉପରକୁ ଉଠାଇ ପାରିଲେ ନାହିଁ । ଏଣେ ମହର୍ଷି ଚ୍ୟବନ ନିର୍ଭୀକ ଚିତ୍ତରେ 'ଅଶ୍ୱିନୀଭ୍ୟାଂ ସ୍ୱାହା' ମନ୍ତ୍ର ଉଦାତ୍ତ କଣ୍ଠରେ ଉଚ୍ଚାରଣ କରି ଅଗ୍ନିରେ ସ୍ୱର୍ଗ ବୈଦ୍ୟ ଦ୍ୱୟଙ୍କୁ ଆହୂତି ନିବେଦନ କରି ଚାଲିଛନ୍ତି । ତାଙ୍କର ଅମୋଘ ସଂକଳ୍ପରେ ବାଧା ଦେବ କିଏ ? ଶେଷରେ ଇନ୍ଦ୍ର ନିଜର ଭୁଲ୍ ବୁଝି ପାରିଲେ । ସେ ମହର୍ଷିଙ୍କ ନିକଟକୁ ଆସି ବିନୀତଭାବରେ କହିଲେ—"ମହାଭାଗ ! ଆପଣଙ୍କ ତପଃ ଶକ୍ତିର ଜୟ ହେଉ । ମୋର ଅପରାଧ ମାର୍ଜନା କରନ୍ତୁ । ମୁଁ ଆପଣଙ୍କ କାର୍ଯ୍ୟରେ ଆଉ ବାଧା ଦେବି ନାହିଁ । ଆଜିଠାରୁ ଅଶ୍ୱିନୀକୁମାର ଦ୍ୱୟଙ୍କୁ ଆମେ ସାନନ୍ଦରେ ଦେବ ପଂକ୍ତିରେ ଗ୍ରହଣ କରିବୁ ।"

ଚ୍ୟବନ ଅନୁତପ୍ତ ଇନ୍ଦ୍ରଙ୍କୁ କ୍ଷମା କଲେ । ଦେବରାଜଙ୍କ ଅଚଳ ବାହୁ ପୁଣି ଥରେ ସ୍ୱାଭାବିକ ଅବସ୍ଥା ପ୍ରାପ୍ତ ହେଲା । ମହାରାଜା ଶର୍ଯ୍ୟାତି ସୋମଯଜ୍ଞ ସମାପ୍ତ କରି ଯୋଗ୍ୟ ବ୍ୟକ୍ତିଗଣଙ୍କୁ ପ୍ରଚୁର ଧନ ଦାନ କଲେ । ନଗରର ମହୋତ୍ସବ ପୂର୍ଣ୍ଣ ହେଲା । ଯଥା ସମୟରେ ମହର୍ଷି ଚ୍ୟବନ ସୁକନ୍ୟାଙ୍କ ସହିତ ରାଜା, ରାଣୀ ଓ ରାଜଧାନୀର ଆବାଲବୃଦ୍ଧବନିତା ସମସ୍ତଙ୍କଠାରୁ ବିଦାୟ ନେଇ ନର୍ମଦା ତୀରର ନିଭୃତ ତପୋବନକୁ ଫେରି ଆସିଲେ ।

ଏହିପରି ମହନୀୟ ଅଲୌକିକ ଶକ୍ତିର ଅଧିକାରୀ ଥିଲେ ପରମ ତପସ୍ୱୀ ମହର୍ଷି ଚ୍ୟବନ ।

# ମହର୍ଷି ବାସୁଦେବ

ମହର୍ଷି ବାସୁଦେବ ଥିଲେ ମହର୍ଷି ରୈବତକଙ୍କ ଶିଷ୍ୟ । ଯେଉଁଦିନ ତାଙ୍କ ହୃଦୟରେ ତତ୍ତ୍ୱ ଜିଜ୍ଞାସାପାଇଁ ତୀବ୍ର ଉତ୍କଣ୍ଠା ଜାଗ୍ରତ ହେଲା, ସେଦିନ ସେ ଘର, ଦ୍ୱାର, ବନ୍ଧୁ, ବାନ୍ଧବଙ୍କୁ ପରିତ୍ୟାଗ କରି ସଦ୍‌ଗୁରୁ ଅନ୍ୱେଷଣରେ ବହିର୍ଗତ ହୋଇଥିଲେ । ତାଙ୍କର ଅନ୍ତଃକରଣ ଥିଲା ଅତ୍ୟନ୍ତ ଶୁଦ୍ଧ । ପରମାତ୍ମାଙ୍କ ସାକ୍ଷାତ୍‌କାରପାଇଁ ତାଙ୍କର ମନ ଉତ୍ସୁକ ହୋଇ ରହିଥିଲା ।

ସର୍ବାନ୍ତର୍ଯ୍ୟାମୀ ଭଗବାନ ସମସ୍ତଙ୍କ ହୃଦୟରେ ଅବସ୍ଥାନ କରନ୍ତି । ଭଗବାନଙ୍କ ପ୍ରେରଣା କ୍ରମେ ମହର୍ଷି ରୈବତକ ବାସୁଦେବଙ୍କ ସମ୍ମୁଖରେ ପ୍ରକଟ ହେଲେ । ବାସୁଦେବ ରୈବତକଙ୍କଠାରୁ ମନ୍ତ୍ର ଓ ସାଧନୋପଦେଶ ପ୍ରାପ୍ତ ହୋଇ କଠୋର ତପସ୍ୟା ଆଚରଣ କଲେ ଏବଂ ଖୁବ୍ ଶୀଘ୍ର ଭଗବାନଙ୍କର ସାକ୍ଷାତ୍‌କାର ଲାଭ କଲେ । "ମୁଁ ବ୍ରହ୍ମଙ୍କଠାରୁ ଅଭିନ୍ନ"—ଏପରି ବୋଧ ତାଙ୍କ ହୃଦୟରେ ନିରନ୍ତର ଜାଗରିତ ହେଲା । ପରେ ସେ ଏହାଠାରୁ ମଧ୍ୟ ଊର୍ଦ୍ଧ୍ୱକୁ ଉଠିଗଲେ । ଶେଷରେ ସେ ଜୀବନ୍ମୁକ୍ତ ହୋଇ କୈବଲ୍ୟ ଧାମକୁ ପ୍ରସ୍ଥାନ କଲେ ।



# ମହାମୁନି ଶ୍ୱେତ

ମହାମୁନି ଶ୍ୱେତ ଥିଲେ ଭଗବାନ ଶିବଙ୍କର ଜଣେ ପରମ ଭକ୍ତ । ଦିବ୍ୟଦୃଷ୍ଟି ବଳରେ ସେ ନିଜର ମୃତ୍ୟୁ ସମୟ ପୂର୍ବରୁ ଅବଗତ ହୋଇଥିଲେ । ଯେତେବେଳେ ତାଙ୍କର ମୃତ୍ୟୁ ସମୟ ଆସି ଉପସ୍ଥିତ ହେଲା, ସେତେବେଳେ ସେ ଏକ ପର୍ବତର ନିର୍ଜନ ଗୁହାରେ ବସି ଭଗବାନ ଶିବଙ୍କୁ ଧ୍ୟାନ କରିବାକୁ ଲାଗିଲେ । "ମୁଁ ତ ମୃତ୍ୟୁଞ୍ଜୟ ଶିବଙ୍କର ଶରଣ ପଶିଛି; ମୃତ୍ୟୁ ମୋର କ'ଣ ଅବା କରିବ ? ଏପରି ଆତ୍ମବିଶ୍ୱାସର ସହିତ ସେ ଭଗବାନ ଶିବଙ୍କର ଧ୍ୟାନରେ ନିମଗ୍ନ ରହିଲେ ।

ପର୍ବତର ନିର୍ଜନ ଗୁହା ଥିଲା ଅତ୍ୟନ୍ତ ଶାନ୍ତ । ସେହି ଶାନ୍ତ ବାତାବରଣକୁ ମୁନିଙ୍କର ତପସ୍ୟା ଅଧିକ ଦିବ୍ୟ ଓ ପବିତ୍ର କରୁଥିଲା । ସେ ନିର୍ଭୟ ହୋଇ ରୁଦ୍ରାଧ୍ୟାୟ ପାଠ କରୁଥିଲେ । ତାଙ୍କ ମୁଖର ତ୍ର୍ୟମ୍ବକ-ସ୍ତବ ତାଙ୍କର ପ୍ରତି ଲୋମକୂପରେ ପ୍ରତିଧ୍ୱନିତ ହେଉଥିଲା ।

ହଠାତ୍ ଚମକି ଉଠିଲେ ମହାମୁନି ଶ୍ୱେତ । ସେ ଦେଖିଲେ, ତାଙ୍କ ସମ୍ମୁଖରେ ଏକ ବିକରାଳ ଆକୃତିର ଭୟଙ୍କର ଜୀବ ଛିଡ଼ା ହୋଇଛି । ତାହାର ଶରୀର କୃଷ୍ଣ ବର୍ଣ୍ଣ ଓ ସେ କୃଷ୍ଣ ବର୍ଣ୍ଣର ବସ୍ତ୍ର ପରିଧାନ କରିଛି ।

'ଓଁ ନମଃ ଶିବାୟ' ମନ୍ତ୍ର ଉଚ୍ଚାରଣ କରି ଶ୍ୱେତମୁନି ଅତ୍ୟନ୍ତ କରୁଣଭାବରେ ଶିବଲିଙ୍ଗ ଆଡ଼କୁ ଦୃଷ୍ଟି ନିକ୍ଷେପ କଲେ । ତତ୍ପରେ ସେ ଶିବଲିଙ୍ଗକୁ ସ୍ପର୍ଶ କରି ଦୃଢ଼ ବିଶ୍ୱାସର ସହିତ ସେହି ଅପରିଚିତ ଭୟଙ୍କର ଜୀବକୁ କହିଲେ—"ତୁମେ ମୋ ଆଶ୍ରମକୁ ଅପବିତ୍ର କରିବାର ଦୁଃସାହସ କିପରି କଲ ? ଭଗବାନ ଶିବଙ୍କ ଅନୁଗ୍ରହରୁ ଏ ଆଶ୍ରମ ତ ସର୍ବଦା ଅଭୟ ।" ଏହା କହି ଶ୍ୱେତ ମୁନି ପୁନଶ୍ଚ ଶିବଲିଙ୍ଗଙ୍କୁ ସ୍ପର୍ଶ କଲେ ।

ସେହି ଭୟଙ୍କର ଜୀବ କହିଲା—"ଆପଣ ଆଉ ବେଶି କ୍ଷଣ ଏ ପୃଥିବୀରେ ରହି ପାରିବେ ନାହିଁ । ଆପଣଙ୍କର ସମୟ ପୂରି ଯାଇଛି । ଆପଣଙ୍କୁ ଯମଲୋକକୁ ଯିବାକୁ ହେବ ।"

ଶ୍ୱେତମୁନି ଶିବଲିଙ୍ଗଙ୍କୁ ନିଜ ଅଙ୍କ ଉପରେ ସ୍ଥାପନ କରି ନିର୍ଭୟଚିତ୍ତ ସହିତ କହିଲେ—"ଅଧମ ! ନୀଚ ! ତୁ ମୋ ଶିବଲିଙ୍ଗଙ୍କୁ ଅବଜ୍ଞା କରୁଛୁ ? ତୁ କ'ଣ ଜାଣି-ନାହୁଁ, ଭଗବାନ ଶିବ କାଳର ମଧ୍ୟ କାଳ ?"

ସେହି ଭୟଙ୍କର ଜୀବଟି ଥିଲା କାଳ ପୁରୁଷ । ସେ ଶ୍ୱେତମୁନିଙ୍କୁ କାଳ ପାଶରେ ବାନ୍ଧି କହିଲା—"ଶିବଲିଙ୍ଗ ସର୍ବଦା ଅଚେତନ ଓ ଶକ୍ତିଶୂନ୍ୟ । ପାଷାଣ ମଧ୍ୟରେ ସର୍ବେଶ୍ୱର ମହାଦେବଙ୍କୁ କଳ୍ପନା କରିବା ଏକ ମହାଭ୍ରମ ।"

ଶ୍ୱେତମୁନି କାଳ ପୁରୁଷକୁ ଭର୍ତ୍ସନା କରି କହିଲେ—"ତୋତେ ଧିକ୍‌କାର ! ତୁ ପରମ ଚିନ୍ମୟ ମାହେଶ୍ୱର ଲିଙ୍ଗଙ୍କର ଶକ୍ତିମତ୍ତାକୁ ନିନ୍ଦା କରୁଛୁ ! ଭଗବାନ ଶିବ ତ ବିଶ୍ୱ ବ୍ରହ୍ମାଣ୍ଡର ପ୍ରତି ଅଣୁ ପରମାଣୁରେ ପରିବ୍ୟାପ୍ତ !"

ଠିକ୍ ସେହି ସମୟରେ ଉମା ସହିତ ଭଗବାନ ଚନ୍ଦ୍ରଶେଖର ଶିବଲିଙ୍ଗ ମଧ୍ୟରୁ ପ୍ରକଟ ହେଲେ । ତାଙ୍କ ଜଟା ଭିତରେ ପତିତପାବନୀ ଗଙ୍ଗାର ପ୍ରବାହ, ବାହୁରେ ସର୍ପ ବଳୟ ଓ ବକ୍ଷଦେଶରେ ସର୍ପର ମାଳା ତାଙ୍କ ବେଶକୁ ଖୁବ୍ ଆକର୍ଷଣୀୟ କରିଥିଲା । ହିମାଳୟର ଧବଳ ଶିଖର ଉପରେ ଶ୍ୟାମଘନର ସଞ୍ଚାରଣ ଯେପରି ମନୋମୁଗ୍ଧକର, ସେହିପରି ତାଙ୍କର ଗୌର ଶରୀରରେ ଭସ୍ମର ଶୃଙ୍ଗାର ନେଣ୍ହୃଦୟସ୍ପର୍ଶୀ ହୋଇଥିଲା । କାଳପୁରୁଷ ଭଗବାନ ଶିବଙ୍କର ସମୁଜ୍ଜ୍ୱଳ ଦିବ୍ୟ ଶରୀର ଦର୍ଶନ କରି ନିଷ୍ପ୍ରାଣ ହୋଇ ପଡ଼ିଲା । ଶ୍ୱେତମୁନି ଭଗବାନଙ୍କ ଚରଣରେ ପ୍ରଣାମ କରି ସ୍ତୁତି କରିବାକୁ ଲାଗିଲେ ।

ଭଗବାନ ଶିବ ଶ୍ୱେତମୁନିଙ୍କ ପିଠିରେ ହସ୍ତ ରଖି କହିଲେ—"ଭକ୍ତରାଜ ! ତୁମର ଲିଙ୍ଗୋପାସନା ଧନ୍ୟ । ତୁମ ବିଶ୍ୱାସର ବିଜୟ ହୋଇଛି; ତୁମେ ଅମରତ୍ୱ ଲାଭ କରିଛ ।"

ଭଗବାନଙ୍କର କରୁଣା ଲାଭ କରି ମୁନିଶ୍ରେଷ୍ଠ କୃତକୃତ୍ୟ ହୋଇଗଲେ । କ୍ରମେ ସେ ଭଗବାନଙ୍କର ନାମ ଗାନ କରି ଉନ୍ମତ୍ତ ହେବାକୁ ଲାଗିଲେ ।

ସୃଷ୍ଟିର ସୁରକ୍ଷାପାଇଁ କାଳପୁରୁଷ ଜୀବିତ ରହିବା ଉଚିତ ବୋଲି ନନ୍ଦୀ ମତ ବ୍ୟକ୍ତ କରିବାରୁ ଭଗବାନ ମୃତ୍ୟୁଞ୍ଜୟ କାଳକୁ ଜୀବିତ କରି ସେଠାରୁ ଅନ୍ତର୍ଦ୍ଧାନ ହୋଇଗଲେ ।

●

# ରାଜର୍ଷି ପୃଥୁ

ଭକ୍ତଶ୍ରେଷ୍ଠ ଧ୍ରୁବଙ୍କ ବଂଶରେ ବେନ ନାମକ ଜଣେ ଦୁରାଚାରୀ ଓ ଦୁଷ୍ଟ ରାଜା ଉତ୍ପନ୍ନ ହୋଇଥିଲେ । ତାଙ୍କର ଅତ୍ୟାଚାର କ୍ରମଶଃ ବୃଦ୍ଧି ପାଇବାରୁ ମୁନିଋଷିଗଣ ତାଙ୍କୁ ଅଭିଶାପ ଦେଇ ଦଗ୍ଧ କରିଦେଲେ । କିନ୍ତୁ ତାଙ୍କର କୌଣସି ସନ୍ତାନ ନ ଥିବାରୁ ମୁନିଋଷିଗଣ ତାଙ୍କ ଶରୀରକୁ ମନ୍ଥନ କରିବାକୁ ଲାଗିଲେ । ଫଳରେ ତାଙ୍କ ଶରୀରରୁ ଜଣେ ପୁରୁଷ ଓ ଜଣେ ସ୍ତ୍ରୀ ଉତ୍ପନ୍ନ ହେଲେ । ଋଷିଗଣ କହିଲେ—"ଏହି ପୁରୁଷ ଜଣକ ଭଗବାନ ବିଷ୍ଣୁଙ୍କର ଅବତାର ପୃଥୁ ଓ ସ୍ତ୍ରୀ ଜଣକ ଲକ୍ଷ୍ମୀଙ୍କର ଅବତାର ଅଛି ।" ପୃଥୁଙ୍କର ଆବିର୍ଭାବରେ ହର୍ଷିତ ହୋଇ ଗନ୍ଧର୍ବଗଣ ଗାନ କରିବାକୁ ଲାଗିଲେ, ସିଦ୍ଧଗଣ ପୁଷ୍ପ ବୃଷ୍ଟି କଲେ ଏବଂ ଅପ୍ସରାଗଣ ନୃତ୍ୟରତ ହେଲେ । ଦେବତା, ଋଷି ଓ ପିତୃ-ପୁରୁଷଗଣ ପୃଥୁଙ୍କୁ ଦର୍ଶନ କରିବାପାଇଁ ତାଙ୍କ ନଗରୀକୁ ଆଗମନ କଲେ । ଜଗଦ୍‌ଗୁରୁ ବ୍ରହ୍ମା ଇନ୍ଦ୍ରାଦି ଲୋକପାଳଙ୍କ ସହିତ ସେଠାକୁ ଆଗମନ ପୂର୍ବକ ପୃଥୁଙ୍କର ଦକ୍ଷିଣ ହସ୍ତ ଓ ଚରଣରେ ଗଦା, କମଳାଦି ଚିହ୍ନ ଦର୍ଶନ କରି ସେ ଯେ ଶ୍ରୀହରିଙ୍କର ପ୍ରକୃତ ଅବତାର ତାହା ନିର୍ଦ୍ଧାରଣ କଲେ । ବ୍ରହ୍ମବାଦୀ ଋଷିଗଣ ତାଙ୍କର ଅଭିଷେକ-ପାଇଁ ଆୟୋଜନ କରି ନିଜ ନିଜର ଯୋଗ୍ୟତା ଅନୁସାରେ ଉପହାରମାନ ପ୍ରଦାନ କଲେ । ତତ୍ପରେ ସୂତ, ମାଗଧ ଓ ବନ୍ଦୀଗଣ ଅନେକ ପ୍ରକାରେ ତାଙ୍କର ସ୍ତୁତିଗାନ କଲେ । ଏ ସବୁ ଦେଖି ପୃଥୁ କହିଲେ—"ଭ୍ରାତୃଗଣ ! ଏ ପର୍ଯ୍ୟନ୍ତ ତ ମୁଁ ଏପରି କୌଣସି କର୍ମ କରି ନାହିଁ, ଯାହାପାଇଁ କି ଆପଣମାନେ ମୋର ସ୍ତୁତିଗାନ କରିବେ । ଏଣୁ ଆପଣମାନେ ନିଜ ନିଜର ବାଣୀକୁ ସାର୍ଥକ କରିବାପାଇଁ ଭଗବାନ ନାରାୟଣଙ୍କର ସ୍ତୁତିଗାନ କରନ୍ତୁ । ଭଗବାନଙ୍କର ଗୁଣ ତ ସଂସାରରେ ବିଖ୍ୟାତ ।"

ମହାରାଜା ପୃଥୁ ଏହା କହିବା ସତ୍ତ୍ୱେ ମଧ୍ୟ ସୂତଗଣ ତାଙ୍କର ଗୁଣଗାନ କରି ସ୍ତୁତି କରିବାକୁ ଲାଗିଲେ । ପୃଥୁ ଏଥିରେ ସନ୍ତୁଷ୍ଟ ହୋଇ ସେମାନଙ୍କୁ ଉଚିତ ପୁରସ୍କାର ପ୍ରଦାନ ପୂର୍ବକ ବିଦାୟ କରିଦେଲେ ।

ରାଜା ବେନଙ୍କର ଅତ୍ୟାଚାରରେ ଉତ୍ପୀଡ଼ିତା ହୋଇ ପୃଥିବୀ ଅନ୍ନରହିତ ହୋଇଥିଲି । ସେଥିପାଇଁ ପ୍ରଜାଗଣ ଅତି ଦୁଃଖରେ ଜୀବନ ଅତିବାହିତ କରୁଥିଲେ । ପୃଥୁଙ୍କ ପରି ଧର୍ମାତ୍ମା ରାଜାଙ୍କୁ ସିଂହାସନାରୂଢ଼ ଦେଖି ପ୍ରଜାଗଣ ତାଙ୍କ ନିକଟକୁ ଆସି ନିଜର କରୁଣ କାହାଣୀ ଶୁଣାଇଲେ । ପ୍ରଜାଙ୍କ ଦୁଃଖ କଥା ଶୁଣି ପୃଥୁ ଅତ୍ୟନ୍ତ ଦୁଃଖିତ

ହେଲେ ଏବଂ ପୃଥିବୀ ଅନ୍ନ ଓ ଔଷଧ ରହିତ ହୋଇଥିବାରୁ କ୍ରୋଧାନ୍ୱିତ ହୋଇ ଧନୁରେ ଶର ସନ୍ଯୋଜନା କଲେ । ଏହା ଦେଖି ପୃଥିବୀ ଭୟଭୀତା ହୋଇ ଗୋରୂପ ଧାରଣ କରି ପଳାୟନ କଲେ; କିନ୍ତୁ ପରେ ସାହସ ସଞ୍ଚୟ କରି କହିଲେ—"ରାଜନ୍ ! ଆପଣ ଦୋହନରୂପ ଉପାୟ ଅବଲମ୍ବନ କରନ୍ତୁ । ଏହା କଲେ ପୁନଶ୍ଚ ଅନ୍ନ ଓ ଔଷଧ ଉପଲବ୍‌ଧ ହେବ ।"

ପୃଥୁ ଅନୁରୂପ ଉପାୟ ଅବଲମ୍ବନ କରିବାରୁ ପୃଥିବୀରେ ଅନ୍ନ ଓ ଔଷଧ ପୁନଶ୍ଚ ଉପଲବ୍‌ଧ ହେଲା । ପୃଥିବୀ ପ୍ରଜାମାନଙ୍କର ସକଳ ମନୋରଥ ପୂର୍ଣ୍ଣ କରିବାରୁ ପୃଥୁ ତାହାକୁ ପୁତ୍ରୀ ରୂପରେ ଦେଖିଲେ ଏବଂ ସେହିଦିନଠାରୁ ତାହା "ପୃଥିବୀ" ନାମରେ ବିଖ୍ୟାତ ହେଲା । ଏହାପରେ ସେହି ସର୍ବସମର୍ଥ ରାଜା ପୃଥୁ ଧନୁର ଅଗ୍ରଭାଗରେ ପର୍ବତ ଶ୍ରେଣୀର ଶିଖର ଦେଶକୁ ଚୂର୍ଣ୍ଣ କରି ପୃଥିବୀକୁ ସମତଳ କରି ଦେଲେ ଏବଂ ଲୋକମାନଙ୍କର ରହିବାପାଇଁ ଯଥୋଚିତ ସ୍ଥଳରେ ଗ୍ରାମ, ପୁର, ନଗର, ଦୁର୍ଗ, ଶବର ପଲ୍ଲୀ, ଗୋଚର ଭୂମି, ସୈନିକସ୍ଥଳୀ, କୃଷକ ପଲ୍ଲୀ ଆଦି ବସାଇଲେ । ଏହା ଫଳରେ ପ୍ରଜାଗଣ ନିର୍ଭୟ ହୋଇ ସୁଖ ପୂର୍ବକ ଅବସ୍ଥାନ କଲେ ।

ମହାରାଜା ପୃଥୁ ଭଗବାନ ବିଷ୍ଣୁଙ୍କର ଅବତାର ହୋଇ ମଧ୍ୟ ଜଣେ ଶ୍ରେଷ୍ଠ ଭକ୍ତ ଥିଲେ । ସେ ସରସ୍ୱତୀ ନଦୀ ପ୍ରବାହିତ ହେଉଥିବା ବ୍ରହ୍ମାବର୍ତ୍ତ କ୍ଷେତ୍ରରେ ଏକଶହ ଅଶ୍ୱମେଧ ଯଜ୍ଞ କରିବାପାଇଁ ଦୀକ୍ଷା ଗ୍ରହଣ କରିଥିଲେ । କିନ୍ତୁ ତାଙ୍କର ଏପରି ପ୍ରଯତ୍ନ ଦେଖି ଇନ୍ଦ୍ରପଦ ଚ୍ୟୁତ ହେବା ଆଶଙ୍କାରେ ଇନ୍ଦ୍ର ଭୟଭୀତ ହୋଇପଡ଼ିଲେ । ଏହି ଭୟରେ ସେ ଅନେକ ଥର ଯଜ୍ଞ କାର୍ଯ୍ୟରେ ବିଘ୍ନ ପକାଇ ଥିଲେ । ଯେତେବେଳେ ରାଜାଙ୍କର ଅନେଶୋତ ଯଜ୍ଞ ସମାପ୍ତ ହେଲା ଏବଂ ସେ ଶତତମ ଯଜ୍ଞ ସମ୍ପୂର୍ଣ୍ଣ କରିବା-ପାଇଁ ଉଦ୍ୟତ ହେଲେ ସେତେବେଳେ ଇନ୍ଦ୍ର ପୁନଶ୍ଚ ଯଜ୍ଞ କାର୍ଯ୍ୟରେ ବିଘ୍ନ ଘଟାଇବାକୁ ଆରମ୍ଭ କଲେ । ଏହା ଦେଖି ଋତ୍ୱିକଗଣ ମନ୍ତ୍ର ବଳରେ ଇନ୍ଦ୍ରଙ୍କୁ ହୋମାଗ୍ନିରେ ହବିଷ ଦେବାପାଇଁ ଆହ୍ୱାନ କଲେ । କିନ୍ତୁ ବ୍ରହ୍ମା ସେମାନଙ୍କୁ ଏହି କାର୍ଯ୍ୟରୁ ନିବାରଣ କରି ପୃଥୁଙ୍କୁ ଅନେଶତ ଯଜ୍ଞରେ ହିଁ ସନ୍ତୁଷ୍ଟ ରହିବାପାଇଁ କହିଲେ । ବ୍ରହ୍ମାଙ୍କର ଆଜ୍ଞାକୁ ଶିରୋଧାର୍ଯ୍ୟ କରି ପୃଥୁ ଶତତମ ଯଜ୍ଞ ସମ୍ପୂର୍ଣ୍ଣ କରିବାରୁ କ୍ଷାନ୍ତ ହେଲେ ଏବଂ ଇନ୍ଦ୍ରଙ୍କ ସହିତ ସନ୍ଧି ସ୍ଥାପନ କଲେ । ଏହି ସମୟରେ ଦେବତାମାନଙ୍କ ସହିତ ଯଜ୍ଞାଧିପତି ଯଜ୍ଞଭୋକ୍ତା ସାକ୍ଷାତ୍ ଭଗବାନ ବିଷ୍ଣୁ ସେଠାରେ ଆବିର୍ଭୂତ ହୋଇ କହିଲେ—"ହେ ରାଜନ୍ ! ମୁଁ ତୁମର ଶାନ୍ତ ସ୍ୱଭାବ ଓ ନିର୍ମତ୍ସରତା ଆଦି ଗୁଣ ତଥା ଶୀଳ ସଦ୍‌ଭାବ ଦେଖି ତୁମ ଉପରେ ବହୁତ ପ୍ରସନ୍ନ ହୋଇଛି । ସୁଖ ଦୁଃଖ ଆଦି ଦ୍ୱନ୍ଦ୍ୱରେ ସମବୁଦ୍ଧି ରଖୁଥିବା ପୁରୁଷକୁ ମୁଁ ଯେପରି ସୁଲଭତାରେ ପ୍ରାପ୍ତ ହୁଏ, ଯଜ୍ଞ, ତପ, ଯୋଗାଭ୍ୟାସ ଦ୍ୱାରା ସେପରି ପ୍ରାପ୍ତ ହୁଏନାହିଁ ।"

ଭଗବାନଙ୍କର ଏପରି ପ୍ରେମଯୁକ୍ତ ବଚନ ଶ୍ରବଣ କରି ରାଜା ପୃଥୁ କୃତକୃତ୍ୟ ହୋଇଗଲେ। ଆନନ୍ଦାଶ୍ରୁର ବେଗକୁ ରୋଧ କରି ସେ କହିଲେ—"ପ୍ରଭୋ ! ଆପଣ ବ୍ରହ୍ମାଦି ବରଦାତାମାନଙ୍କୁ ମଧ୍ୟ ବର ପ୍ରଦାନ କରିଥାନ୍ତି। ତେଣୁ କୌଣସି ବୁଦ୍ଧିମାନ୍ ପୁରୁଷ କେବେହେଲେ ସାଂସାରିକ କୌଣସି ବସ୍ତୁ ଆପଣଙ୍କୁ ବର ମାଗିବ ନାହିଁ। ଆପଣଙ୍କର ଚରଣାରବିନ୍ଦ ମକରନ୍ଦକୁ ରହିତ ମୋକ୍ଷପଦ ମଧ୍ୟ ମୁଁ ଇଚ୍ଛା କରେ ନାହିଁ। ଆପଣ ମୋତେ କେବଳ ଏହି ବର ଦିଅନ୍ତୁ ଯେ ଆପଣଙ୍କର ଯଶ ଶ୍ରବଣ କରିବାପାଇଁ ମୋତେ ଦଶ ସହସ୍ର କର୍ଣ୍ଣ ପ୍ରାପ୍ତ ହେଉ। ଇଚ୍ଛାରହିତ ସାଧୁପୁରୁଷ ଜ୍ଞାନ ପ୍ରାପ୍ତି ପରେ ମଧ୍ୟ ଆପଣଙ୍କୁ ଭକ୍ତି କରିଥାନ୍ତି। ନିରନ୍ତର ଆପଣଙ୍କ ଚରଣ-ସ୍ମରଣ ଅତିରିକ୍ତ ତାଙ୍କର ଅନ୍ୟ କୌଣସି ଦ୍ୱିତୀୟ ପ୍ରୟୋଜନ ନ ଥାଏ। ଆପଣ ମୋତେ 'ବରମାଗ' ବୋଲି ଯାହା କହୁଛନ୍ତି, ଆପଣଙ୍କର ଏହି ବାଣୀ ସମଗ୍ର ଜଗତକୁ ମୋହିତ କରିଦିଏ। କେବଳ ସେତିକି ନୁହେଁ, ଆପଣଙ୍କର ବେଦରୂପ ବାଣୀ ମଧ୍ୟ ଲୋକମାନଙ୍କୁ ମୋହିତ କରି ବନ୍ଧନରେ ପକାଇ ଦିଏ। ସେଥିପାଇଁ ମନୁଷ୍ୟ ବାରମ୍ବାର ଫଳ କାମନା କରି କର୍ମ କରିଥାଏ। ହେ ଈଶ୍ୱର ! ଏହି ମୂର୍ଖ ମନୁଷ୍ୟ ସ୍ତ୍ରୀ ପୁତ୍ରାଦି କାମନା କରିଥାଏ, ସେଥିପାଇଁ ଆପଣଙ୍କର ମାୟା ସତ୍ୟ ସ୍ୱରୂପ ଆପଣଙ୍କଠାରୁ ତାକୁ ଅଲଗା କରିଦିଏ। ତେଣୁ ଆପଣଙ୍କ ନିକଟରେ ମୋର ଏତିକି ପ୍ରାର୍ଥନା, ମାୟାଜାଲରେ ବନ୍ଧା ହୋଇଥିବା ଜୀବକୁ ଆପଣ ଆଉ ଅଧିକ ବନ୍ଧନରେ ପକାନ୍ତୁ ନାହିଁ। ଯେପରି ପିତା ସବୁ ପ୍ରକାରେ ନିଜ ପୁତ୍ରର ହିତ କରିଥାଏ, ସେହିପରି ଆପଣ ମଧ୍ୟ ଆମ୍ଭମାନଙ୍କର ହିତ ସାଧନ କରନ୍ତୁ।"

ପୃଥୁଙ୍କର ଏପରି କଥା ଶ୍ରବଣ କରି ଭଗବାନ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ପୃଥୁଙ୍କୁ ପ୍ରଶଂସା କରି ସ୍ୱଧାମକୁ ପ୍ରସ୍ଥାନ କଲେ। ଅନନ୍ତର ରାଜା ପୃଥୁ ନିଜ ନଗରୀକୁ ପ୍ରତ୍ୟାବର୍ତ୍ତନ କରି ନ୍ୟାୟପୂର୍ବକ ପ୍ରଜାପାଳନ କରିବାକୁ ଲାଗିଲେ। ସେ କେବଳ ନିଜର ପ୍ରାରବ୍ଧ କର୍ମ ଅନୁସାରେ ପ୍ରାପ୍ତ ଭୋଗ ସମୂହକୁ ଉପଭୋଗ କରୁଥିଲେ; କିନ୍ତୁ ଭୋଗର ଇଚ୍ଛା କରି କୌଣସି ନୂତନ କର୍ମ କରୁ ନ ଥିଲେ। ବସ୍ତୁତଃ ସେ ଥିଲେ ଅନାସକ୍ତ। ଥରେ ସେ ଏକ ମହାସତ୍ର ଅନୁଷ୍ଠାନ କରିବାପାଇଁ ଦୀକ୍ଷା ଗ୍ରହଣ କଲେ। ସେଥିପାଇଁ ଦେବତା, ବ୍ରହ୍ମର୍ଷି ଓ ରାଜର୍ଷିଗଣ ନିମନ୍ତ୍ରିତ ହୋଇ ତାଙ୍କ ରାଜ୍ୟରେ ଏକତ୍ରିତ ହେଲେ। ସମସ୍ତଙ୍କୁ ଯଥାଯୋଗ୍ୟ ପୂଜା ଅର୍ଚ୍ଚନା କରି ରାଜା ପୃଥୁ ଉପସ୍ଥିତ ସମାଜକୁ ଧର୍ମୋପଦେଶ ପ୍ରଦାନ କଲେ। ତାହା ଶୁଣି ସମସ୍ତେ ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ରାଜାଙ୍କର ଭୂରି ଭୂରି ପ୍ରଶଂସା କରିବାକୁ ଲାଗିଲେ। ଏହି ସମୟରେ ସୂର୍ଯ୍ୟଙ୍କ ପରି ତେଜସ୍ୱୀ ସନକାଦି ସିଦ୍ଧ ମହର୍ଷିଗଣ ଆକାଶମାର୍ଗରେ ଆସି ପହଞ୍ଚିଲେ। ସେମାନଙ୍କୁ ଦୂରରୁ ଦେଖି ରାଜା ନିଜର ସେବକ ଓ ସମାଜ ସହିତ ଉଠି ଛିଡ଼ା ହୋଇଗଲେ ଏବଂ ନମ୍ରତାର ସହିତ ବିଧିବତ୍ ସେମାନଙ୍କର ପୂଜା କରିବାକୁ

ଲାଗିଲେ ତଥା ସେମାନଙ୍କର ଚରଣୋଦକ ନେଇ ନିଜ ଶିରରେ ଚଢ଼ାଇଲେ । ସନକାଦି ସିଦ୍ଧ ମହର୍ଷିଗଣ ରାଜାଙ୍କ ପ୍ରଶ୍ନାନୁସାରେ ଭଗବତ୍ ତତ୍ତ୍ୱ ସମ୍ବନ୍ଧୀୟ ନାନା-ଉପଦେଶ ପ୍ରଦାନ କରି ତଥା ଆଶୀର୍ବାଦ କରି ସେଠାରୁ ପ୍ରସ୍ଥାନ କଲେ । ଅନନ୍ତର ରାଜା ପୃଥୁ ଲୋକ ବ୍ୟବହାର ନିମିତ୍ତ ଦେଶ, କାଳ, ଧନ ଓ ବଳର ଯୋଗ୍ୟତା ଅନୁସାରେ ସମସ୍ତ କର୍ମ ଯଥୋଚିତ ଭାବରେ ବ୍ରହ୍ମାର୍ପଣ ବୁଦ୍ଧିରେ ସମ୍ପନ୍ନ କରିବାକୁ ଲାଗିଲେ । ଅଖଣ୍ଡ ଭୂମଣ୍ଡଳର ଚକ୍ରବର୍ତ୍ତୀ ସମ୍ରାଟ ଓ ଗୃହସ୍ଥ ହୋଇ ମଧ୍ୟ ସେ କେବେହେଲେ ଇନ୍ଦ୍ରିୟାସକ୍ତ ହେଉ ନ ଥିଲେ । ସେ ଥିଲେ ଇନ୍ଦ୍ରଙ୍କ ପରି ଅଜେୟ, ପୃଥିବୀ ପରି କ୍ଷମାଶୀଳ, ସମୁଦ୍ର ପରି ଗମ୍ଭୀର, ମେରୁ ପରି ଧୈର୍ଯ୍ୟବାନ୍, ସିଂହପରି ନିର୍ଭୟ, ମନୁଙ୍କ ପରି ପ୍ରଜାବତ୍ସଳ ଓ ବୃହସ୍ପତିଙ୍କ ପରି ବ୍ରହ୍ମବେତ୍ତା ।

ଏହିପରି ବହୁକାଳ ରାଜ୍ୟ ଶାସନ କରିବା ପରେ ଶେଷରେ ସେ ବନକୁ ଯାଇ ତପସ୍ୟା କରିବାକୁ ନିଷ୍ପତ୍ତି କଲେ ଏବଂ ପୁତ୍ରମାନଙ୍କ ହସ୍ତରେ ରାଜ୍ୟଭାର ଅର୍ପଣ କରି ସସ୍ତ୍ରୀକ ବନକୁ ଗମନ କଲେ । ବନକୁ ଯାଇ ସେ କ୍ଷୁଧା ତୃଷାଦି କଷ୍ଟ ସହ୍ୟ କରି, ମୌନବ୍ରତ ଧାରଣ କରି, ଇନ୍ଦ୍ରିୟଗଣଙ୍କୁ ସଂଯମ କରି, ସ୍ତ୍ରୀ ସହିତ ଅବସ୍ଥାନ କଲେ ମଧ୍ୟ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ତଥା ପ୍ରାଣବାୟୁକୁ ଜୟକରି କେବଳ ପରମେଶ୍ୱରଙ୍କ ପ୍ରୀତି ଉଦ୍ଦେଶ୍ୟରେ ଉତ୍ତମ ତପ ଆଚରଣ କରିବାକୁ ଲାଗିଲେ । ସେହି ତପର ପ୍ରଭାବରେ ପ୍ରାକ୍ତନ କର୍ମ ନଷ୍ଟ ହୋଇଯିବାରୁ ତାଙ୍କର ଅନ୍ତଃକରଣ ନିର୍ମଳ ହୋଇଗଲା । ପ୍ରାଣାୟାମ ଦ୍ୱାରା ଇନ୍ଦ୍ରିୟ ଓ ମନ ବଶୀଭୂତ ହେବାରୁ ତଥା ବାସନାରୂପ ବନ୍ଧନ ଛିନ୍ନ ହୋଇ ଯିବାରୁ ସେ ସନକାଦି ମହର୍ଷିଙ୍କ ଦ୍ୱାରା ଉପଦିଷ୍ଟ ଭକ୍ତିଯୋଗର ଆଚରଣ ପ୍ରାରମ୍ଭ କଲେ । ଭଗବାନଙ୍କୁ ସକଳ କର୍ମ ଅର୍ପଣ କରି ଶୁଦ୍ଧ ଚିତ୍ତ ଓ ବିଶ୍ୱାସର ସହିତ ନିରନ୍ତର ଭଗବାନଙ୍କର ସେବା କରିବା ଦ୍ୱାରା ତାଙ୍କ ହୃଦୟରେ ବ୍ରହ୍ମରୂପ ଭଗବାନଙ୍କ ପ୍ରତି ଏକନିଷ୍ଠ ଭକ୍ତି ଉତ୍ପନ୍ନ ହେଲା ଏବଂ ଭକ୍ତି ଓ ବୈରାଗ୍ୟ ସହିତ ସେ ପୂର୍ଣ୍ଣ ଜ୍ଞାନର ଅଧିକାରୀ ହେଲେ । ଏହାଫଳରେ ତାଙ୍କ ହୃଦୟର ସମସ୍ତ ଗ୍ରନ୍ଥି ଛିନ୍ନ ହୋଇଗଲା । ଏହାପରେ ସେ ସେହି ଜ୍ଞାନକୁ ମଧ୍ୟ ପରିତ୍ୟାଗ କରିଦେଲେ ଏବଂ ନିଜର ମନକୁ ପରମାତ୍ମାଙ୍କଠାରେ ସ୍ଥିର କରି ପୂର୍ଣ୍ଣ ବ୍ରହ୍ମ ତତ୍ତ୍ୱ ପ୍ରାପ୍ତି ପୂର୍ବକ ଭଗବାନଙ୍କଠାରେ ଲୀନ ହୋଇଗଲେ ।

●

କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ-୭୫୩୦୦୧

ଘରଣପୁ ଆସ୍ଥାର ପୁସ୍ତକ

## ମହାତ୍ମା ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀଙ୍କ ଅମର କୃତୀ

ଆପଣଙ୍କ ପାଇଁ ଆପଣଙ୍କ ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ପାଇଁ ପୁରୁଷୋତ୍ତମ ଲୀଳାମୟ ଭଗବାନ ଶ୍ରୀକୃଷ୍ଣଙ୍କ ଅମର ଜୀବନୀର ମନୋଜ୍ଞ କଥାର ଅମୃତମୟ ଜାହ୍ନବୀଧାରା, ବର୍ତ୍ତମାନ ସୁଦ୍ଧା ୩୦ ଖଣ୍ଡ ପ୍ରକାଶିତ ।

କଥା ଆକାରରେ ମୂଳ ସଂସ୍କୃତ ଶ୍ଳୋକ ସହ ବିଭିନ୍ନ ଅନୁବାଦକଙ୍କ ଦ୍ୱାରା ଅନୁଦିତ ।

# ଭାଗବତ କଥା

| | | |
|---|---|---|
| ପ୍ରଥମ ଓ ଦ୍ୱିତୀୟ | ପ୍ରତ୍ୟେକ | ଟ ୧୫-୦୦ |
| ତୃତୀୟ ଓ ଚତୁର୍ଥ | ପ୍ରତ୍ୟେକ | ଟ ୨୬-୦୦ |
| ପଞ୍ଚମରୁ ବିଂଶ | ପ୍ରତ୍ୟେକ | ଟ ୧୫-୦୦ |
| ଏକବିଂଶରୁ ତ୍ରିଂଶ | ପ୍ରତ୍ୟେକ | ଟ ୧୮-୦୦ |

ଏକତ୍ର କିଣିଲେ ରିହାତି ମିଳେ ।

---

ଚକ୍ରବର୍ତ୍ତୀ ରାଜଗୋପାଳାଚାରୀଙ୍କ ଆଉ ଦୁଇଟି ଅମର କୃତି ।

# ରାମାୟଣ

ମୂଲ୍ୟ ଟ ୫୦-୦୦

# ମହାଭାରତ

ମୂଲ୍ୟ ଟ ୪୦-୦୦

---

# ଅବଶ୍ୟ ପଠନୀୟ

ହିନ୍ଦି ଭାଷାର କଥା ସମ୍ରାଟ ଶ୍ରୀ ମନୁ ଶର୍ମାଙ୍କ ପ୍ରଣୀତ

ମହାଭାରତର ଦୁଇଜଣ ଅସାଧାରଣ ପୁରୁଷଙ୍କ ଚରିତୋପନ୍ୟାସ

## ଦ୍ରୋଣାଚାର୍ଯ୍ୟଙ୍କ ଆତ୍ମକଥା

ମୂଲ୍ୟ ଟ ୩୫-୦୦

## କର୍ଣ୍ଣଙ୍କ ଆତ୍ମକଥା

ମୂଲ୍ୟ ଟ ୨୦- ୦

---

ଏହି ଲେଖକଙ୍କ ମହାଭାରତର ମହୀୟସୀ ମହିଳାଙ୍କ ଅନ୍ୟଏକ ଚରିତୋପନ୍ୟାସ —

## ଦ୍ରୌପଦୀଙ୍କ ଆତ୍ମକଥା

ମୂଲ୍ୟ ଟ ୩୦-୦୦

ଓଡ଼ିଆ ରୂପାନ୍ତର କ ଛନ୍ତି—ଶ୍ରୀରଘୁନାଥ ମହାପାତ୍ର

---

କେ. ଏମ୍. ମୁନ୍‌ସୀଙ୍କ ପ୍ରସିଦ୍ଧ

—ଉପନ୍ୟାସ—

## ଭଗବାନ ପରଶୁରାମ

ପ୍ରଥମଖଣ୍ଡ—ଟ ୨୫-୦୦

ଦ୍ୱିତୀୟ ଖଣ୍ଡ—ଟ ୨୫-୦୦

ଅନୁବାଦକ—ପଣ୍ଡିତ ରଘୁନାଥ ମିଶ୍ର

---